# ଟିକି ମାଆର ଟିକି ପୁଅଟି

ପ୍ରଫେସର ଗୋକୁଳାନନ୍ଦ ଦାସ



# ଟିକି ମା'ର ଟିକି ପୁଅଟି

(ଏକ ଅମୃତମୟ ଆଧ୍ୟାତ୍ମିକ ଚିନ୍ତନ)

ପ୍ରଫେସର ଗୋକୁଳାନନ୍ଦ ଦାସ



ଦି ବୁକ୍ ପଏଣ୍ଟ
ଭୁବନେଶ୍ୱର

ଟିକି ମା'ର ଟିକି ପୁଅଟି

(ଏକ ଅମୃତମୟ ଆଧ୍ୟାତ୍ମିକ ଚିନ୍ତନ)

ଲେଖକ : ପ୍ରଫେସର ଗୋକୁଳାନନ୍ଦ ଦାସ

ପ୍ରକାଶକ : ଦି ବୁକ୍ ପଏଣ୍ଟ୍
ପଠାଣି ସାମନ୍ତ ପ୍ଲାନେଟୋରିୟମ୍ ପରିସର,
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର- ୧୩

ମୁଦ୍ରଣ : ଶିକ୍ଷା ପ୍ରକାଶନୀ
ଭି.ଆଇ.ପି ଏରିଆ, ଆଇଆର୍‌ସି ଭିଲେଜ, ଭୁବନେଶ୍ୱର

ଲିପି ବିନ୍ୟାସ ଓ
ପ୍ରଚ୍ଛଦ : ବିପିନ ବିହାରୀ ପଣ୍ଡା

ପ୍ରଥମ ପ୍ରକାଶନ : ଜାନୁଆରୀ, ସରସ୍ୱତୀ ପୂଜା, ୨୦୨୦

ମୂଲ୍ୟ : ଟ.୧୬୦.୦୦ (ଏକ ଶହ ଷାଠିଏ ଟଙ୍କା ମାତ୍ର)

**TIKI MAARA TIKI PUATI**

**(Eka Amrutamaya Adhyatmika Chintan)**

**Author : Professor Gkulananda Das**

**Publisher : The Book Point**
Pathani Samanta Planetarium Complex,
Acharya Vihar, Bhubaneswar-751013

**Printed at: Siksha Prakashani**
VIP Area, IRC Village
Bhubaneswar

**Type Setting &**
**Cover Design :** Bipin Bihari Panda

**First Edition : January, Saraswati Puja, 2020**

**Price : Rs.160/-**
(Rupees One Hundred Sixty Only)

ଗଜପତି ମହାରାଜା ଦିବ୍ୟସିଂହ ଦେବ

ମାର୍ଗଶିର କୃଷ୍ଣପକ୍ଷ ଦ୍ବିତୀୟା, ଶୁକ୍ରବାର
ତା-୧୫.୧୧.୨୦୧୯ରିଖ

# ବାର୍ତ୍ତା



ପ୍ରାକ୍ତନ କୁଳପତି ପ୍ରଫେସର ଗୋକୁଳାନନ୍ଦ ଦାସଙ୍କ ରଚିତ "ଟିକି ମାଆର ଟିକି ପୁଅଟି" ଗଳ୍ପ ସଂକଳନଟି ପାଠକଲେ ଡଃ. ଦାସଙ୍କର ଆନ୍ତରିକ ଈଶ୍ବର ବିଶ୍ୱାସ, ମହାପ୍ରଭୁଙ୍କ ନିକଟରେ ସଂପୂର୍ଣ୍ଣ ସମର୍ପଣ ଭାବ ତଥା ଆଧ୍ୟାତ୍ମିକ ଭାବଧାରାର ହେଉଛି ଏହା ପରିପ୍ରକାଶ ।

ଜଣେ ସମର୍ପିତ ଭକ୍ତ ଭାବରେ ସେ ବନ୍ଧାହୋଇ ଯାଇଛନ୍ତି ମହାପ୍ରଭୁଙ୍କ ଡୋରିରେ । ନିଜ ରଚିତ ଗଳ୍ପଗୁଚ୍ଛ ମୁଖବନ୍ଧରେ ସ୍ୱଅନ୍ତରର ଭାବ ପ୍ରକାଶ ଛଳରେ ଉଲ୍ଲେଖ କରିଛନ୍ତି "ମହାପ୍ରଭୁ ଶ୍ରୀଜଗନ୍ନାଥ ସମସ୍ତଙ୍କର ନିଜର, ମୋ ମନର, ମୋ ପ୍ରାଣର, ମୋ ହୃଦୟର ବନ୍ଧୁ ସଖା ସହଚର, ଅତି ଆପଣାର" ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଲୀଳା ଓ ମହିମା ଅନନ୍ତ ତଥା ସର୍ବବ୍ୟାପକ । ଶ୍ରୀଜଗନ୍ନାଥ ମହାପ୍ରଭୁ ସାକ୍ଷାତ ପରମବ୍ରହ୍ମ, ପରମାତ୍ମା ଓ ପରମେଶ୍ୱର । ଏହା ବେଦ ବେଦାନ୍ତ ପ୍ରତିପାଦିତ ତଥା ଯୋଗୀ, ଋଷି, ସିଦ୍ଧ ମହାତ୍ମା ଓ ଦାର୍ଶନିକମାନଙ୍କ ଦ୍ୱାରା ଅଙ୍ଗୀକୃତ, ସ୍ୱୀକୃତ । ଏହି ମହାନ ତତ୍ତ୍ୱ ଓ ଭାବଧାରାରେ ଡଃ. ଦାସ ସମ୍ପୂର୍ଣ୍ଣ ଭାବରେ ନିଜକୁ ସାମିଲ କରି ଦେଇଛନ୍ତି ।

ଶ୍ରୀମଦ୍ ଭଗବତ୍ ଗୀତାର ଶ୍ରେଷ୍ଠତ୍ୱ ଉପଲବ୍ଧିକରି ପ୍ରଫେସର ଦାସ ଉଲ୍ଲେଖ କରିଛନ୍ତି ଯେ ଏହି ମହାନ ଗ୍ରନ୍ଥର ସିଦ୍ଧାନ୍ତ ହେଉଛି ସମସ୍ତ ଶାସ୍ତ୍ରର ସାର ନିର୍ଯ୍ୟାସ ଓ ମାନବୀୟ କର୍ମମୟ ଜୀବନ ପାଇଁ ସର୍ବୋତ୍ତଭାବେ ଦିଗ୍‌ଦର୍ଶନ ପ୍ରଦାନ କରୁଥିବା ଏକ ଉପଯୋଗୀ ଗ୍ରନ୍ଥ ।

ପ୍ରଫେସର ଦାସ ଜଣେ ସ୍ୱନାମଧନ୍ୟ ଗଣିତଜ୍ଞ ଓ ଗଣିତ ପ୍ରେମୀ । ଗଣିତ ବିଦ୍ୟାର ଉତ୍କର୍ଷତା, ବୈଶିଷ୍ଟ୍ୟ ଓ ଆବଶ୍ୟକତା ରହିଥିବା ତଥ୍ୟକୁ ପ୍ରତିପାଦନ କରିବା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି ଯେ ଗଣିତ ଶାସ୍ତ୍ର ସମସ୍ତ ବିଦ୍ୟାର ଆଧାର ଓ ଏହାର

ପ୍ରୟୋଗ ବ୍ୟାପକ । ସଙ୍ଗୀତର ସୁମଧୁର ସୁର ପରି ମଧ୍ୟ ଗଣିତ ମଧୁର । ଡଃ. ଦାସଙ୍କ ରଚିତ ଗଳ୍ପଗୁଚ୍ଛ ମଧ୍ୟରେ ଗୋଟିଏ ଗଳ୍ପ "ଗଣିତ ବିଶେଷଜ୍ଞ ଶ୍ରୀ ଗଣେଶ" ଓ ଅନ୍ୟଟି "ସଙ୍ଗୀତ ବିଶେଷଜ୍ଞା ମାତା ସରସ୍ୱତୀ" ଉଲ୍ଲେଖ ଯୋଗ୍ୟ । ଡଃ. ଦାସ ନିଜର ମତ ପୋଷଣ ପୂର୍ବକ ଉଲ୍ଲେଖ କରିଛନ୍ତି ଯେ ଆମର ଶିକ୍ଷା ବ୍ୟବସ୍ଥା ସାଧାରଣତ ବିଜ୍ଞାନ ଓ କାରିଗରୀ ବିଦ୍ୟା ଉପରେ ପର୍ଯ୍ୟବେଶିତ । କିନ୍ତୁ ଏହା ସହିତ ଆଧ୍ୟାତ୍ମିକ ଶିକ୍ଷା ଅତ୍ୟନ୍ତ ଜରୁରୀ ।

ସାମଗ୍ରୀକ ଭାବେ ଗଳ୍ପଗୁଚ୍ଛ ଅଧ୍ୟୟନରୁ ଏହା ସ୍ପଷ୍ଟ ଅନୁମିତ ଯେ ଏକ ସୁସ୍ଥ ସମାଜ ଗଠନ ନିମନ୍ତେ ଶ୍ରୀମଦ୍ ଭଗବତ୍ ଗୀତା ତଥା ବିଭିନ୍ନ ଗ୍ରନ୍ଥମାନଙ୍କରେ ସନ୍ନିହିତ ଉପଦେଶାବଳୀ ଓ ବିଶିଷ୍ଟ ସନ୍ଥ ଓ ଯୋଗୀ ଋଷିମାନଙ୍କ ପ୍ରଦତ୍ତ ମାର୍ଗଦର୍ଶିକା ସର୍ବୋପରି ଉପାଦେୟ ଏହା ପ୍ରଫେସର ଦାସ ତାଙ୍କ ରଚିତ ଗଳ୍ପ ମାଧ୍ୟମରେ ଦର୍ଶାଇବା ନିମନ୍ତେ ପ୍ରଚେଷ୍ଟା କରିଛନ୍ତି ।

ଗଳ୍ପ ସଙ୍କଳନ "ଟିକି ମାଆର ଟିକି ପୁଅଟି" ପାଠକ ଉପଯୋଗୀ ଓ ଭବିଷ୍ୟତ ପିଢ଼ିର ବ୍ୟକ୍ତିମାନଙ୍କ ପାଇଁ ବିଶେଷ ଉପାଦେୟ ହେବ ବୋଲି ମୋର ବିଶ୍ୱାସ । ପ୍ରଫେସର ଦାସଙ୍କ ରଚିତ ଉକ୍ତ ଗଳ୍ପ ସଙ୍କଳନଟି ପାଠକମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହେଉ ଏହାହିଁ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣାରବିନ୍ଦରେ ବିନମ୍ର ନିବେଦନ ।

ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାନୁରତ

ଦିବ୍ୟସିଂହ ଦେବ

ଦିବ୍ୟସିଂହ ଦେବ

# ଉତ୍ସର୍ଗ

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ

ମୋର ପରମପୂଜ୍ୟ ପିତା ଓ ଜୀବନର ଆଦି ଗୁରୁ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ଦାସ (1900-1960, ନଭେମ୍ବର 14), ମାତା ଶ୍ରୀମତୀ ସାରଙ୍ଗ ଦେବୀ (ମଉଁଆ) (1910-1998, ଅକ୍ଟୋବର 23) ଓ ସମସ୍ତଙ୍କୁ ଟପି ଆମକୁ ତା'ର ବାତ୍ସଲ୍ୟ ସ୍ନେହରେ ଉବୁଟୁବୁ କରାଉଥିବା ବୋଉ (ବଡ) ମାନୀଦେଈ (ଦେହାନ୍ତ 1966 ମସିହା ଡିସେମ୍ବର): ଏହି ତିନିଜଣ ବିରଳ ବ୍ୟକ୍ତିତ୍ୱ ମୋତେ ସୁରକ୍ଷା ପ୍ରଦାନ କରି ମୋ ଜୀବନକୁ ସରସ, ସୁନ୍ଦର ଓ ମଧୁମୟ କରି ଗଢ଼ି ତୋଳିଥିଲେ, ସେମାନେ ଆଜି କେହି ମୋ ନିକଟରେ ନାହାନ୍ତି; କାଳର କରାଳ ଚକ୍ରରେ ସେମାନେ ଲୀନ ହୋଇ ଯାଇଛନ୍ତି । କିନ୍ତୁ ମୋ ପାଖରେ ରହିଛି ସେମାନଙ୍କର ସ୍ନେହବୋଳା ମଧୁର ସ୍ମୃତି, ଦିଗ୍‌ଦର୍ଶନ ଓ ଆଶୀର୍ବାଦ ।

ଏହି ପବିତ୍ର ପୂଣ୍ୟାତ୍ମାମାନଙ୍କ ଉଦ୍ଦେଶ୍ୟରେ ମୋର ଏହି କ୍ଷୁଦ୍ର ପୁସ୍ତକଟି ଉତ୍ସର୍ଗୀକୃତ ।

ଗୋକୁଳାନନ୍ଦ

# କୃତଜ୍ଞତା

ଶ୍ରୀ ଦିବ୍ୟସିଂହ ଦେବ, ଗଜପତି ମହାରାଜ ଶ୍ରୀଜଗନ୍ନାଥଙ୍କ ପ୍ରଥମ ସେବକ, ଏହି ପୁସ୍ତକ ପାଇଁ ତାଙ୍କର ବହୁମୂଲ୍ୟ ସମୟ ଅପଚୟ କରି ଏକ ଶୁଭେଚ୍ଛାବାର୍ତ୍ତା ଦେଇ ମୋତେ ଧନ୍ୟ କରିଥିବାରୁ ତାଙ୍କ ନିକଟରେ ମୋର ଅନ୍ତରର ଅଜସ୍ର କୃତଜ୍ଞତା ଜଣାଉଛି ।

ଭୁବନେଶ୍ୱରର ଶ୍ରୀଜଗନ୍ନାଥ ଗବେଷଣା ପ୍ରତିଷ୍ଠାନର ସଂପାଦକ ପ୍ରଫେସର ଡକ୍ଟର ସୁରେନ୍ଦ୍ରନାଥ ଦାଶ, ଏହି ପୁସ୍ତକର ପାଣ୍ଡୁଲିପି ଆମୂଳଚୂଳ ପାଠକରି ନିଜର ମତାମତ ରଖିଛନ୍ତି । ତାଙ୍କୁ ଅଶେଷ ଧନ୍ୟବାଦ ।

ପୁସ୍ତକଟିର ଶେଷ ଅଧ୍ୟାୟ ହେଉଛି "ବିଶ୍ୱରୂପ ଦର୍ଶନ ଯୋଗ" । ଏହାକୁ ଲେଖିବା ନିମନ୍ତେ ମୋ ମନରେ ଅନେକ ପ୍ରଶ୍ନ ଉଙ୍କିମାରିବା ଅବସରରେ ମୋର ପରମବନ୍ଧୁ ଓ ସହପାଠୀ ପ୍ରଫେସର ଗୋପବନ୍ଧୁ ବେହେରା, (ରସାୟନ ବିଭାଗ), ବନ୍ଧୁ ପ୍ରଫେସର ମଧୁସୂଦନ ପତି (ଇଂରାଜୀ), ପ୍ରଫେସର ନିରଞ୍ଜନ ବାରିକ (ପଦାର୍ଥ ବିଜ୍ଞାନ)ଙ୍କର ମତାମତ ନେଇଛି । ସମସ୍ତଙ୍କୁ ମୋର ଗଭୀର ଶ୍ରଦ୍ଧା ଓ ଧନ୍ୟବାଦ । ଶେଷରେ ଏ ପୁସ୍ତକଟିର ପ୍ରତ୍ୟେକ ଲେଖାରେ ନିନିର ପରାମର୍ଶ ଓ ସହଯୋଗ ପୁସ୍ତକଟିକୁ ଋଦ୍ଧିମନ୍ତ କରିଛି ।

ଗୋକୁଳାନନ୍ଦ

# ମୁଖବନ୍ଧ

ଭାବନାକୁ ବିଶ୍ଳେଷଣ କରି ପୁସ୍ତକଟିର ନାମ "ଟିକି ମା'ର ଟିକି ପୁଅଟି" ରଖିବାକୁ ମନସ୍ଥ କଲି । ଏହି ନାମଟିର ତାତ୍ପର୍ଯ୍ୟ ପ୍ରଚ୍ଛଦପଟ ଚିତ୍ରରେ ପରିସ୍ଫୁଟ । ଅଧିକାଂଶ ରଚନା ପ୍ରଭୁ ଜଗନ୍ନାଥଙ୍କୁ କେନ୍ଦ୍ରକରି । ଏହା ମଧ୍ୟରୁ କିଛି ପ୍ରକାଶିତ ମଧ୍ୟ ହୋଇସାରିଛି 'ଶ୍ରୀ ଜଗନ୍ନାଥ' ପତ୍ରିକାରେ । ଏହି ପୁସ୍ତକ ମୋର ଆଧ୍ୟାତ୍ମିକ ଚିନ୍ତାଧାରାର ଏକ କ୍ଷୁଦ୍ର ସଂସ୍କରଣ ମାତ୍ର ।

ଆଧ୍ୟାତ୍ମିକତା ମୋତେ ଉତ୍ତରାଧିକାରୀ ସୂତ୍ରରେ ମିଳିଛି ମୋ ବୋଉ ଓ ମଇଁଆ (ମୋର ପ୍ରକୃତ ମାଆ)ଙ୍କ ଠାରୁ । ଭଗବତ୍ ଚିନ୍ତନ୍ ମୋର ବାଲ୍ୟ ଜୀବନକୁ ପ୍ରଭାବିତ କରି ମନ ମଧ୍ୟରେ ଈଶ୍ୱର ବିଶ୍ୱାସ ସ୍ୱତଃ ଉଦ୍ରେକ କରାଇଛି । ପତ୍ନୀ ନିନି ମଧ୍ୟ ଆଧ୍ୟାତ୍ମିକ ବାତାବରଣ ସୃଷ୍ଟି କରିଛି ଆମ କ୍ଷୁଦ୍ର ନୀଡ଼ଟିରେ ।

ମୋ ବୋଉ ଈଶ୍ୱରଙ୍କ ନିକଟରେ ସଂପୂର୍ଣ୍ଣ ରୂପେ ନିଜକୁ ଉତ୍ସର୍ଗ କରିଦେଇଥିଲା । ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ କରିବା ପରଠାରୁ ରାତିରେ ବିଛଣା ଧରିବା ପର୍ଯ୍ୟନ୍ତ କେବଳ ଠାକୁରଙ୍କ ଚିନ୍ତା; ତାଙ୍କରି କାମ, ଭାଗବତ ଶୁଣିବା, ବାତୀ ପ୍ରସ୍ତୁତ କରିବା, ଫୁଲ ତୋଳିବା, ଠାକୁର ବାସନ ମାଜିବା, ଠାକୁରଘର ସଫା କରିବା ଇତ୍ୟାଦି କାର୍ଯ୍ୟରେ ବ୍ୟସ୍ତ ଥାଇ ସେ ଭୁଲିଯାଏ ନିଜକୁ । ବୋଉର ଦେହାନ୍ତ ପରେ ମଇଁଆ ଏ ଦାୟିତ୍ୱକୁ ନିର୍ବାହ କଲା ଓ ତତ୍ପରେ ଏ ଦାୟିତ୍ୱ ଉତ୍ତରାଧିକାରୀ ସୂତ୍ରରେ ସଂପୂର୍ଣ୍ଣରୂପେ ନିନିର ହୋଇଗଲା ।

ବଡ଼ପୁଅ ରାଜା ସଂପୂର୍ଣ୍ଣ ରୂପେ ଶ୍ରୀଜଗନ୍ନାଥ ମନସ୍କ ଓ ଏହି କଳାଠାକୁରଙ୍କ ପ୍ରେମରେ ପାଗଳ । ବିଦେଶରୁ ଫେରିବା ମାତ୍ରେ ସେ ପ୍ରଥମେ ପୁରୀ ଯାଏ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଲାଗି । ରାଜାର ଆଗ୍ରହ ଓ ଉଦ୍ୟୋଗରେ ଦକ୍ଷିଣ କାଲିଫର୍ଣ୍ଣିଆରେ ପ୍ରବାସୀ ଉତ୍କଳୀୟଙ୍କ ସହଯୋଗରେ ରଥଯାତ୍ରା ଆରମ୍ଭ ହୋଇଛି ୨୦୧୨ ମସିହାରୁ ।

ଜଗା କ'ଣ ସତରେ ଠାକୁର !

ସେ ତ ଆମପରି ଖାଉଛି, ପିଉଛି, ଖେଳୁଛି, ବୁଲୁଛି; ଗରା ଗରା ପାଣିରେ

ସ୍ନାନ କରି ଜରରେ ପଡୁଛି; ପଥି ପାଞ୍ଚଣ ଖାଇ ଆରୋଗ୍ୟ ହେଉଛି; ପାରିଧିରେ ବାହାରି ପଡୁଛି; ସଭିଙ୍କ ପାଖରୁ ଗାଳିମନ୍ଦ ଖାଉଛି; ତଥାପି ସେ ସମସ୍ତଙ୍କର ନିଜର ବୋଲି ତା' ପାଖରେ ସମସ୍ତଙ୍କର ମନ ନଇଁଯାଏ; ସମସ୍ତଙ୍କ ଠାରୁ ଶତ ଶତ ଜୁହାର ପାଏ । ସେ ମୋ ମନର, ମୋ ପ୍ରାଣର, ମୋ ହୃଦୟର ବନ୍ଧୁ-ସଖା-ସହଚର; ଅତି ଆପଣାର ।

ମୋ ବୋଉ ମୋତେ ଶ୍ରୀଜଗନ୍ନାଥଙ୍କ ପାଦ ତଳେ ଉତ୍ସର୍ଗକରି ଦେଇଯାଇଛି । ମୁକୁଳାଇ ପାରିନାହିଁ ବନ୍ଧନରୁ । ଜୀବନସାରା ପ୍ରଭୁଙ୍କର ସେବକ ମୁଁ । ସପତ୍ନିକ ତାଙ୍କ ନିକଟରେ ଚିରଦିନ ବନ୍ଧା ।

ମନେପଡ଼େ, ଅନେକ ଦିନ ପୂର୍ବେ ମୁଁ ଓ ମୋର ସହକର୍ମୀ ଅଧ୍ୟାପକ ବନମାଳୀ ମିଶ୍ର ପୁରୀ ଯାଇଥିଲୁ ବାହୁଡା ଦଶମୀରେ । ଠାକୁରଙ୍କ ଦର୍ଶନରେ ଏତେ ବିହ୍ୱଳିତ ହୋଇଯାଇଥିଲି ଯେ ପରମ ଆବେଗରେ ତାଙ୍କ ମୁଖମଣ୍ଡଳକୁ ଆଉଁଶିଦେଇ ଅତି ସ୍ନେହରେ ନାକକୁ ଚିପି ଦେଇଥିଲି ।

ଶ୍ରୀମନ୍ଦିର ସାମ୍ନାରେ ବଡ଼ଦାଣ୍ଡରେ ଅନ୍ୟ ଏକ ବାହୁଡ଼ାରେ ତିନିଠାକୁର ରଥ ଉପରେ ଥକ୍କାହୋଇ ବସିଥିବା ସମୟରେ ପତ୍ନୀ ସହିତ ଯାଇ ଶ୍ରୀଜଗନ୍ନାଥଙ୍କୁ ଆଲିଙ୍ଗନ କରିଥିଲୁ ହୃଦୟରେ ସାଇତା ସ୍ନେହତକ ଅଜାଡ଼ିଦେଇ । ସେ ଯାଦୁକାରୀ ସ୍ପର୍ଶରେ ମୁହୂର୍ତ୍ତକ ପାଇଁ ଦେହରେ ଖେଳିଯାଇଥିଲା ତଡ଼ିତ୍ ପ୍ରବାହ । ଅପୂର୍ବ ଅପାଶୋରା ଶିହରଣ ! ଏବେ ଭାବିଲେ ଲୋମ ଟାଙ୍କୁରି ଉଠେ କେଉଁ ଏକ ଅବ୍ୟକ୍ତ ଆନନ୍ଦରେ ।

ମୋ ଜୀବନର ନିୟନ୍ତକ ସେହି ନିଳାଦ୍ରି ବିହାରୀଙ୍କ ପାଦତଳେ ମୋର ଏହି କ୍ଷୁଦ୍ର ପୁସ୍ତକଟିକୁ ସମର୍ପି ଦେଇଛି ।

ଗୋକୁଳାନନ୍ଦ

ଶୁଭମୁକ୍ତି : ଜାନୁଆରୀ, ସରସ୍ୱତୀ ପୂଜା, ୨୦୨୦

୧୭୭, ଧର୍ମବିହାର, ଖଣ୍ଡଗିରି, ଭୁବନେଶ୍ୱର

ମୋ : ୯୪୩୭୦୩୫୧୨୧

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ଟିକି ମା'ର ଟିକି ପୁଅଟି | ୧୫ |
| ଭିନ୍ନ ଏକ ପ୍ରତିବିମ୍ବ | ୨୧ |
| ଏକ ଅମୃତମୟ ମୁହୂର୍ତ୍ତ | ୨୯ |
| ଟଙ୍କା ଆଖିରେ ଲୁହ | ୩୪ |
| ସମର୍ପଣ | ୪୩ |
| ଅନନ୍ତ ଲିଳା :ଏକ ଆଧ୍ୟାତ୍ମିକ ସମୀକରଣ | ୫୩ |
| ଭାଗବତ ଗୋସାଇଁ | ୫୫ |
| କାଳିଆ ଆସୁଛି | ୬୭ |
| ଶ୍ରୀଜଗନ୍ନାଥ - ଶୂନ୍ୟ ପୁରୁଷ | ୮୦ |
| ଗଣିତ ବିଶେଷଜ୍ଞ : ଶ୍ରୀ ଗଣେଶ | ୯୬ |
| ସଂଗୀତ ବିଶେଷଜ୍ଞା : ମାତା ସରସ୍ୱତୀ | ୧୦୧ |
| ବିରଜା ଓ ଜଗନ୍ନାଥ ପାଞ୍ଜିକା ଅଭ୍ୟୁଦୟ | ୧୦୫ |
| ମହାବାହୁ - ମହାବାତ୍ୟା | ୧୦୭ |
| କାଲିଫର୍ଣ୍ଣିଆରେ ଘୋଷଯାତ୍ରା | ୧୧୫ |
| ମେଳଣ | ୧୨୨ |
| ଓଁ | ୧୨୭ |
| ନବମ ଅବତାର | ୧୩୪ |
| ବିଶ୍ୱରୂପ ଦର୍ଶନ ଯୋଗ | ୧୫୧ |




ପ୍ରଫେସର ସୁରେନ୍ଦ୍ରନାଥ ଦାଶ,

ପ୍ରାକ୍ତନ ଓଡ଼ିଆ ପ୍ରଫେସର, ଉତ୍କଳ ବିଶ୍ୱବିଦ୍ୟାଳୟ ଓ

ସେକ୍ରେଟାରୀ, ଶ୍ରୀଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର

# ଅଗ୍ରଲେଖ

ସାହିତ୍ୟିକ, ଡ. ଗୋକୁଳାନନ୍ଦ ଦାସଙ୍କର 'ଟିକି ମା'ର ଟିକି ପୁଅଟି' ଏକ ଅମୃତମୟ ଆଧ୍ୟାତ୍ମିକ ଚିନ୍ତନ । ଏହି ସଂକଳନଟିକୁ ଆମୂଳଚୂଳ ଏକ ନିଶ୍ୱାସରେ ପାଠ କଲେ ଅଭିଭୂତ ହେବାକୁ ପଡ଼େ । ସତରେ ଏହା ଏକ ଅଦ୍ଭୂତ ଓ ଅମୃତ ଅନୁଭବ ଯାହା ପାଠକ ହୃଦ୍‌ବୋଧ କରିପାରିଥାଏ । ପ୍ରଥମତଃ ଡ. ଦାସ ଜଣେ ଆଧ୍ୟାତ୍ମିକବାଦୀ, ଈଶ୍ୱର ବିଶ୍ୱାସୀ ଜୀବନ ବାଦୀ ଓ ଈଶ୍ୱରଙ୍କୁ ସମର୍ପିତ ବ୍ୟକ୍ତି ସତ୍ତାଟିଏ; କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱଳ୍ପଭାଷୀ, ବିଦ୍ୱାନ, ଗଣିତଜ୍ଞ, ଜଣେ ସ୍ନେହୀ ଦରଦୀ, ଈଶ୍ୱରୀୟ ପ୍ରେମରେ ଉବୁଟୁବୁ ହେଉଥିବା ମଣିଷଟିଏ । ଯିଏ ପ୍ରତି ମୁହୂର୍ତ୍ତରେ ଭଗବତ୍ ରସ ପାନକରି ନିଜେ ନିମଜ୍ଜିତ ହେବା ସହ ପ୍ରତିଟି ପଦକ୍ଷେପରେ ଈଶ୍ୱରୀୟ ସତ୍ତାର ପ୍ରମାଣ୍ୟ ଓ ସିଦ୍ଧାନ୍ତକୁ ପ୍ରତିପାଦିତ କରିଛନ୍ତି ତାଙ୍କର ସମସ୍ତ ଗଳ୍ପ ଭିତରେ ।

ପୁସ୍ତକର ଅଠରଟି ଗଳ୍ପ ପ୍ରେମ, ପ୍ରଣୟ, ପରିବାର, କର୍ମଜୀବନ, ପଦବୀ, ସମ୍ପତ୍ତି, ସହଯୋଗ, ସମାଜ, ଦେଶ, ବିଦେଶ ସର୍ବୋପରି ଚକାଆଖିର ମାଦକତା ବର୍ଣ୍ଣନା କରିବାରେ ନିପୁଣ ଓ ଧୂରନ୍ଧର ପାଲଟିଛନ୍ତି ।

ପ୍ରଥମ ଗଳ୍ପ 'ଟିକି ମା'ର ଟିକି ପୁଅଟି' ଗଳ୍ପରେ ଭକ୍ତ । ବିକର୍ଷଣ କ'ଣ ଆକର୍ଷଣକୁ ବହୁ ଗୁଣିତ କରିଦିଏ । ଏହି ଧାଡ଼ି ଭିତରେ ଯେଉଁ ଜୀବନତତ୍ତ୍ୱ ସନ୍ନିବେଶିତ ତାହା ପାଠକଲେ ବୁଝିହୁଏ । ଗାଳ୍ପିକଙ୍କ ଅନେକ ଗଳ୍ପରେ ମୁଖ୍ୟ କେନ୍ଦ୍ରବିନ୍ଦୁ ସେହି ଚକାଡୋଳା, ବଳିଆର ଭୁଜ, କାଳିଆ ଠାକୁର; ଆଉ ଜନ୍ମଦାତ୍ରୀ ମା' ଯାହାଙ୍କୁ ସେ ଜୀବନର ପ୍ରତି ମୁହୂର୍ତ୍ତରେ ପ୍ରତିଟି ସଂଘର୍ଷରେ, ପ୍ରତିଟି ହୃଦୟରେ ଆଉ ପ୍ରତିଟି ପ୍ରଣିପାତରେ ମୋହିଛନ୍ତି । ବ୍ୟାକୁଳ ହୋଇଛନ୍ତି ଏବଂ ମାତୃତ୍ୱର ଅମୃତଧାରାକୁ ହୃଦତଳେ ସାଇତି ରଖି ଗୁମୁରି ଉଠିଛନ୍ତି । ସେହି ମାତୃଶକ୍ତି ଗାଳ୍ପିକଙ୍କ ଜୀବନରେ

ପ୍ରାଣ ଶକ୍ତି ପାଲଟିଛନ୍ତି । ଏତତ୍ ବ୍ୟତୀତ ପ୍ରାଣପ୍ରିୟା ପତ୍ନୀ ଏବଂ ପରିବାରଗୁଡ଼ିକର ସହୃଦୟତା, ନିଜର ବହୁ କୁଟୁମ୍ବୀ ପରିବାର ଗାଁ, ଗାଁ ମେଳଣ, ଗାଁ ଭାଗବତ ଟୁଙ୍ଗୀ, ଗାଁର ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଏସବୁ ବର୍ଣ୍ଣନା ଭିତରେ ଗାଳ୍ପିକଙ୍କର ଗ୍ରାମ୍ୟ ପ୍ରୀତି, ସରଳଜୀବନ ଶୈଳୀରେ ବିଷୟଟି ବାରି ହୋଇପଡ଼େ । ଶ୍ରୀଜଗନ୍ନାଥ ଦର୍ଶନକୁ ଯାଉଥିବା ମା' ଜଣଙ୍କ ଯେମିତି ଶ୍ରୀଜଗନ୍ନାଥଙ୍କର ଭିନ୍ନ ଏକ ପ୍ରତିବିମ୍ବ ମନେ ହୋଇଛନ୍ତି ଗାଳ୍ପିକଙ୍କୁ । ବାଣୀ ବିହାର କୁଳପତି ଭାବରେ ଶ୍ରୀଜଗନ୍ନାଥଙ୍କର ଆଦ୍ୟ ସେବକ ହୋଇ ଛେରାପହଁରା କରିବାର ଅପୂର୍ବ ମହକଭରା ମୁହୂର୍ତ୍ତକୁ ଝୁରି ହୋଇଛନ୍ତି ଗାଳ୍ପିକ । ସମର୍ପିତ ଲେଖକ ସତ୍ତା ଏତେ ମାତ୍ରାରେ ଚକାଆଖିକୁ ନିଜର କରିନେଇଛନ୍ତି ଯେ ପତ୍ନୀଙ୍କର ଡାକ୍ତରଖାନାରେ ମୃତ୍ୟୁ ସହ ଲଢ଼ି ପୁଣି ସୁସ୍ଥ ହୋଇ ଫେରିଆସିବା ଘଟଣାକୁ 'ଚକାଆଖିରେ ଲୁହ' ଗଳ୍ପରେ ଦର୍ଶାଇଛନ୍ତି, ଯାହାଙ୍କର ଭକ୍ତ ଓ ଭଗବାନଙ୍କର ଅପୂର୍ବ ସଂଯୋଗ; ତାହା ହୃଦୟରେ ଅନୁଭବ କରିଲେ ହିଁ ବୁଝିହୁଏ । ସେହିପରି 'ସମର୍ପଣ', 'ଅନନ୍ତଲୀଳା', 'କାଳିଆ ଆସୁଛି' ଓ 'ଭାଗବତ ଗୋସାଇଁ' ପ୍ରଭୃତି ଗଳ୍ପରେ ଜଗନ୍ନାଥଦାସଙ୍କର ଭାଗବତଚର୍ଚ୍ଚା ଠାରୁ ଶ୍ରୀଜଗନ୍ନାଥ ତତ୍ତ୍ୱ, ଆରାଧନା, ସମର୍ପଣ ଭାବ ଜୀବନ ତତ୍ତ୍ୱକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ପ୍ରଫେସର ଦାସ । 'ଯାହାହେଲା ଠିକ୍ ହେଲା', ଦୁଃଖ କର ନାହିଁ ମୋହ କରନାହିଁ, ନିରାସକ୍ତ ଜୀବନ ଯାପନ କର ମୋକ୍ଷ ସୁନିଶ୍ଚିତ; ଗୀତାର ଏହି ବାଣୀକୁ ଯେପରି ଗାଳ୍ପିକ ଅଙ୍ଗେ ଅଙ୍ଗେ ଲିଭେଇଛନ୍ତି ଆଉ ମଣିଷ ସମାଜକୁ ଉପଦେଶ ଦେବା ଛଳରେ ସଂସାର ସଂପର୍କରେ ଜ୍ଞାନ ପ୍ରଦାନ କରିଛନ୍ତି । ନିଜେ ହିଁ ନିଜର ରକ୍ଷା କର୍ତ୍ତା ପ୍ରଭୁ ଶ୍ରୀଜଗନ୍ନାଥ । ନିଜ ଗାଁରେ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠା, କାର୍ଲିଫର୍ଣ୍ଣିଆରେ ମହାପ୍ରଭୁଙ୍କ ମନ୍ଦିର ପ୍ରତିଷ୍ଠା ଓ ରଥଯାତ୍ରା ପ୍ରସଙ୍ଗରେ ଅଟୋ-ଚାଳକ ମାନସର ଉଦାହରଣ ଅତି ଉଚ୍ଚକୋଟିର । ବାସ୍ତବିକ କାଳିଆ ଯାହା ଚାହେଁ, ତାହାହିଁ ଘଟିଥାଏ । ତା' ଆଖିର ସମ୍ମୋହନ ଠାଣିରେ ଯିଏ ବାନ୍ଧି ହୋଇଛି, ସେ ବନ୍ଧାପଡ଼ିଛି ଆଉ ମୁକୁଳି ପାରିନି, ଯାହା ହୋଇଛି ଗାଳ୍ପିକଙ୍କ ନିଜସ୍ୱ କ୍ଷେତ୍ରରେ । ତାଙ୍କର ଜନ୍ମଦାତ୍ରୀ ତାଙ୍କୁ ବାନ୍ଧି ଦେଇଛନ୍ତି କାଳିଆର ଡୋରିରେ ଯେଉଁଥିରୁ ତାଙ୍କର ନିସ୍ତାର ନାହିଁ ।

ବିଶ୍ୱରୂପ ଗଳ୍ପ ମହାଭାରତର ପୃଷ୍ଠଭୂମି ଉପରେ ରଚିତ । ମହାଭାରତ ଯୁଦ୍ଧ ଭୂମିରେ ବିଷାଦଗ୍ରସ୍ତ ଅର୍ଜୁନଙ୍କୁ ବିଷାଦ ମୁକ୍ତ କରିବା ଲାଗି ଶ୍ରୀକୃଷ୍ଣ ଜ୍ଞାନଯୋଗ,

କର୍ମଯୋଗ, ଧ୍ୟାନଯୋଗ, କ୍ରିୟାଯୋଗ ଓ ଭକ୍ତିଯୋଗ ସମ୍ପର୍କରେ ସୂଚନାଦେଇ ଶେଷରେ ଅର୍ଜ୍ଜୁନଙ୍କୁ ଦିବ୍ୟ ଦୃଷ୍ଟି ପ୍ରଦାନ କରି ବିଶ୍ୱରୂପ ଦର୍ଶନ କରାଇଥିଲେ । ଏହି ବିଶ୍ୱରୂପ ଦର୍ଶନକରି ଭାବବିହ୍ୱଳ ହୋଇ ଅର୍ଜୁନ କହିଛନ୍ତି, "ହେ ବିଶ୍ୱରୂପ, ମୁଁ ଆପଣଙ୍କୁ ଅନେକ ବାହୁ, ଉଦର, ମୁଖ ଓ ନେତ୍ର ଥିବାର ଚତୁର୍ଦ୍ଦିଗରେ ଅନନ୍ତରୂପ ଥିବାର ଦେଖିପାରୁଛି । ଯେଉଁଠି ଆଦିଅନ୍ତ କିଛି ହେଲେ ମୋର ଦୃଷ୍ଟି ପଥାରୂଢ଼ ହେଉନାହିଁ । ଗାଳ୍ପିକ ପ୍ରଫେସର ଦାସ ଏହାକୁ ବୁଝାଇବାକୁ ଯାଇ କହିଛନ୍ତି, "ପରମ ସତ୍ୟକୁ ନିର୍ଗୁଣ ବ୍ରହ୍ମନ ଓ ସଗୁଣ ବ୍ରହ୍ମନ ରୂପରେ ବର୍ଣ୍ଣନା କରାଯାଇଛି । ନିର୍ଗୁଣ ବ୍ରହ୍ମନ ହେଉଛି ଅନନ୍ତ, ଅଦୃଷ୍ଟ, ଅଜନ୍ମ, ଅନାଦି, ନିରାକାର ଯାହା କେବଳ ଯୋଗ ମାଧ୍ୟମରେ ଉପଲବ୍ଧ ହୋଇପାରିବ । କେବଳ ଦୃଶ୍ୟମାନ ଜଗତ ବା ସଗୁଣ ବ୍ରହ୍ମନ ଯାହା ମଧ୍ୟ ଅନନ୍ତ ଆକାରଯୁକ୍ତ ତାହା ହେଉଛି ମାୟା । ଏହି ମାୟାକୁ ଭେଦ କରିବା ପାଇଁ ଯୋଗୀ ଋଷିମାନେ ଓ ବୈଜ୍ଞାନିକମାନେ ସର୍ବଦା ତତ୍ପର । ସୀମା ମଧ୍ୟରେ ଅସୀମକୁ ଦର୍ଶନ କରି ଓ ଏହିପରି ଭାବରେ ଅନ୍ତ ଭିତରେ ଅନନ୍ତକୁ ଦର୍ଶନ କରି, ଅର୍ଜ୍ଜୁନ ବିଶ୍ୱରୂପ ଦର୍ଶନରେ ବିଷାଦ ମୁକ୍ତ ହେଲେ ।

ଗାଳ୍ପିକ ପ୍ରଫେସର ଦାସ ଜଣେ ବିଖ୍ୟାତ ଆନ୍ତର୍ଜାତୀୟ ଗଣିତଜ୍ଞ, ଗଣିତପ୍ରେମୀ, ଏଣୁ ଆତ୍ମାର ନିର୍ଦ୍ଦେଶ ପରି ଶ୍ରୀଜଗନ୍ନାଥ ଶୂନ୍ୟ ପୁରୁଷ, ଗଣିତ ବିଶେଷଜ୍ଞ, ଶ୍ରୀ ଗଣେଶ, ବିଦ୍ୟା ସଂଗୀତର ଦେବୀ ମା' ସରସ୍ୱତୀ ବିଷୟ ଉପସ୍ଥାପନ କରିଛନ୍ତି । ଈଶ୍ୱର ବିଶ୍ୱାସ ଭିତରେ, ମୂର୍ତ୍ତିତତ୍ତ୍ୱ ଭିତରେ, ତଥା ସଂସାରର ସମସ୍ତ ଛାତ୍ରଛାତ୍ରୀଙ୍କ ଭିତରେ ମୂଲ୍ୟବୋଧ ଜାଗ୍ରତ ନିମନ୍ତେ ଶିକ୍ଷା ଭିତରେ ଯେଉଁ ଆକର୍ଷଣ ସୃଷ୍ଟି କରିଛନ୍ତି ତାହା ବାସ୍ତବିକ ପ୍ରଶଂସା ଯୋଗ୍ୟ ଏବଂ ପରିଶେଷରେ ଓଁ, ମେଲଣ, ଜଗନ୍ନାଥ ପଞ୍ଜିକା ଓ ବିରଜା ପଞ୍ଜିକା ପ୍ରଭୃତି ଗଳ୍ପ ମାଧ୍ୟମରେ ନିଜ ଜୀବନର ଅନୁଭବକୁ ସଂସାରର ହିତାର୍ଥେ ବିଭିନ୍ନ ତତ୍ତ୍ୱ ଓ ତଥ୍ୟ ଅନୁଭବକୁ ସଂସାରର ହିତାର୍ଥେ ବିଭିନ୍ନ ତତ୍ତ୍ୱ ଓ ତଥ୍ୟ ମାଧ୍ୟମରେ ଉପସ୍ଥାପନ କରିଛନ୍ତି । ବାସ୍ତବିକ ଗଳ୍ପ ଗୁଡ଼ିକର ଲେଖନଶୈଳୀ ଓ ଗଳ୍ପର ମାଦକତା ଭିତରେ କେତେ ଆନନ୍ଦ ଯେ ସମ୍ପୂର୍ଣ୍ଣ ପୁସ୍ତକଟି ପଢୁ ପଢୁ ଶେଷ ହୋଇଯାଏ; ତାହା ଜଣାପଡ଼େ ନାହିଁ ।

ବାସ୍ତବିକ ଏହି ପୁସ୍ତକଟି ପାଠକୋପଯୋଗୀ ଓ ହୃଦୟସ୍ପର୍ଶୀ ହୋଇ ପାରିଛି । ଶ୍ରୀଜଗନ୍ନାଥଙ୍କ ଆଖିର ମାୟାରେ ହଜିଗଲାପରି ଏହି ଅମୃତ ଅନୁଭବ ଭିତରେ ଅମୃତ

ସ୍ୱାଦ ଯେ ପୂରା ଆବୋରି ରହିଛି ଏହା ଏକାନ୍ତ ସତ୍ୟ ଓ ପ୍ରମାଣସିଦ୍ଧ । ଗାଳ୍ପିକଙ୍କର ଭାବସତ୍ତା ଓ ପ୍ରାଣସତ୍ତାର ଅପୂର୍ବ ସମନ୍ୱୟ ।

ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ପ୍ରଫେସର ଗୋକୁଳାନନ୍ଦ ଦାସଙ୍କ ରଚିତ 'ଟିକି ମାଆର ଟିକି ପୁଅଟି' ଗଳ୍ପ ସଂକଳନର ପାଣ୍ଡୁଲିପିକୁ ଆମୂଳଚୂଳ ପାଠକରି ଏହାର 'ଅଗ୍ରଲେଖ' ଲେଖିବାର ସୁଯୋଗ ମିଳିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଅଛି । ପୁସ୍ତକଟି ଜନମାନସରେ ବିଶେଷ ଭାବରେ ଆଦୃତ ହେବ ଏହି ଆଶା ରଖି ପ୍ରଫେସର ଦାସଙ୍କର ସରଳ ନିରାଡମ୍ବରମୟ ଜୀବନଯାପନ ଲାଗି ଶ୍ରୀଜଗନ୍ନାଥଙ୍କ ନିକଟରେ ମୁଁ ପ୍ରାର୍ଥନା କରୁଅଛି ।

ଶ୍ରୀ ଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ,
ଡି.ଏଲ୍.ଏ., ୪୩ ବୀର ସୁରେନ୍ଦ୍ରସାଏ ନଗର,
ଭୁବନେଶ୍ୱର - ୭୫୧୦୦୭
ଫୋନ୍:୦୬୭୪-୨୫୮୧୧୨୫,
୯୪୩୭୦୧୧୧୨୫

# ଟିକି ମା'ର ଟିକି ପୁଅଟି

ମୁଁ ଇଂଲଣ୍ଡରୁ ଫେରିଲା ବେଳକୁ ମିତା ଦେଢ଼ ବର୍ଷର ହୋଇସାରିଥାଏ । ଆମ ଗାଆଁ ଆମ୍ବତୋଟାରେ ତା' ସହିତ ମୋର ପ୍ରଥମ ଦେଖା । ସେ ଦେଖିବାକୁ କେମିତି ହୋଇଥିବ, ଏଇ କଳ୍ପନାରେ ମସ୍‌ଗୁଲ ହୋଇ ମୁଁ ଅନେକ ଉତ୍କଣ୍ଠା ନେଇ ଘରକୁ ଫେରିଥିଲି । ତା'ର ଜନ୍ମ ହେବାର ଖବର ପାଇଥିଲି ସିନା ତା'ର ଫଟୋଟିଏ ବି ଦେଖିବାର ସୌଭାଗ୍ୟ ପାଇନଥିଲି । ମୋ' କଳ୍ପନାର ସାତରଙ୍ଗରେ ଉବୁଟୁବୁ ହେଉଥିବା ଅତି ଆଦରର ମାଆ ମୋର ମୋ' ସାମ୍ନାରେ । ମଇଁଆ କାଖରେ ବସି ମୋତେ କଣେଇଁ କଣେଇଁ ଚାହିଁ ହସୁଥାଏ । ବେଶ୍ ସୁସ୍ଥ ସବଳ । ଗୋଲିଆ ମୁହଁରେ କଳା ମୁଚୁ ମୁଚୁ ଝାମ୍ପୁରା ବାଳ ତଳୁ କଥାକୁହା ଆଖି ଯୋଡ଼ିକ ଚିକ୍‌ଚିକ୍ କରୁଥାଏ । ତା'ର ପୁଟୁକା ଗାଲରେ ହସର ଭଉଁରୀ ଚମତ୍କାର ମାନୁଥାଏ ।

ନୂଆ ହୋଇ ବାପା ହେବାର ମାଦକତାରେ ଆତ୍ମହରା ହୋଇଗଲି । ପ୍ରକୃତିସ୍ଥ ହୋଇ ଦୁଇ ହାତ ବଢ଼ାଇ ଡାକିଲି - ଆସିଲା ନାହିଁ - ମୁହଁ ବୁଲାଇ ନେଲା ।

ମଇଁଆ କହିଲା- "ଇଏ ପରା ତୋ' ବାପା, ଯାଆ - ପାଖକୁ ଯାଆ"-

ନା - ସେ ମୁହଁ ବୁଲାଇ ନେଲା ପୁଣି ଥରେ । ଚାହିଁଲା ନାହିଁ । ଜନ୍ମରୁ ଯାହାକୁ ଆଦୌ ଦେଖିନାହିଁ ତାକୁ ବାପା ବୋଲି ଭାବିବ ବା କେମିତି ? ଛାତିତଳେ କେଉଁଠି ଯେମିତି ଟିକିଏ ଖଟ୍‌କା ଲାଗିଲା । ତା'ର ଆଗମନକୁ ଉପେକ୍ଷା କରି ଚାଲିଯାଇଥିବାରୁ ନିଜକୁ କେମିତି ଦୋଷୀ, ଦୋଷୀ ମନେହେଲା । ତଥାପି ତାକୁ ଆପଣେଇ ନେବାର ଜିଦ୍ ବଳବତ୍ତର ହେଲା ମନ ଭିତରେ । ବିକର୍ଷଣ କ'ଣ ଆକର୍ଷଣକୁ ବହୁଗୁଣିତ କରିଦିଏ ?

ଗ୍ରୀଷ୍ମଛୁଟି ପରେ ମୁଁ ଗଙ୍ଗାଧର ମେହେର କଲେଜରେ ଯୋଗଦେବାକୁ ସମ୍ବଲପୁର ଗଲି । ସାଙ୍ଗରେ ନିନି ଆଉ ମିତା । ପ୍ରଥମେ ନିନି ଘରେ ପୋଲିସ୍ ଲାଇନ୍‌ରେ କିଛିଦିନ ରହି ଗୁହା ଲେନ୍‌ରେ ଭଡ଼ା ଘରଟିଏ ନେଇ ରହିଲୁ ।

ନିନିର ପ୍ରଥମ ଘର କରଣା । ତା'ର ଅନଭ୍ୟସ୍ତ ହାତରେ ଘର ସଜାଡ଼ିବା ସହ ମିତାର ଓ ମୋର ଯତ୍ନ ନେବାର ପ୍ରବଳ ପ୍ରଚେଷ୍ଟା ମୋତେ ଅଭିଭୂତ କରିପକାଏ ଅନେକ ସମୟରେ । ମୋ ସହ ମିତାକୁ ପରିଚିତ କରାଇବାର ମୁଖ୍ୟ ଭୂମିକା ନିନିର ।

ଚାରିମାସ ବିତିଗଲା ପରେ ବି ମୋତେ ବାପା ବୋଲି ଗ୍ରହଣ କରିବାକୁ ମିତା ନାରାଜ । ନିନି ରନ୍ଧାଘରେ ଥାଇ ତାକୁ କହେ- 'ବାପାଙ୍କୁ ଡାକ୍' - ସେ ଲାଜେଇ ଲାଜେଇ ଆସେ । କବାଟ ସେପାଖରେ ଅଳ୍ପ ମୁହଁ ଦେଖାଇ ଫିକ୍ କିନା ହସିଦେଇ ଦଉଡ଼ି ପଳାଇଯାଏ - କେବେ କେବେ ଚୁପ୍‌ଚୁପ୍ ଆସି ଦୂରେଇ ଠିଆହୋଇ କହେ- "ଲୋକ - ଏ ଲୋକ, ତମକୁ ମାଆ ଡାକୁଛନ୍ତି ।"

ଦରୋଟି ଭାଷାରେ ସେ ତା'ର ମାଆକୁ ବୁଝାଇ ଦେବାକୁ ଚାହେଁ - ମୁଁ ତା'ର ବାପା ନୁହେଁ - ଲୋକ - ତା' ପାଇଁ ସଂପୂର୍ଣ୍ଣ ଅଜଣା ଲୋକ ।

ମିତା ଜନ୍ମ ବେଳକୁ ମୁଁ ଲଣ୍ଡନ୍‌ରେ । ମୁଁ ଫେରିଲା ବେଳକୁ ସେ ଲୋକ ଚିହ୍ନିଲାଣି । ଅଳ୍ପ ଅଳ୍ପ କଥା କହିଲାଣି । ବୋଧହୁଏ ତା'ର ଆଗମନରେ ମୋର ଅନୁପସ୍ଥିତି ପାଇଁ ତା'ର ଏ ଅଭିମାନ ଓ ସେଥିପାଇଁ 'ଲୋକ'ରୁ 'ବାପା' ହେବା ପାଇଁ ମୋତେ ଆହୁରି ଚାରି ପାଞ୍ଚ ମାସ ଅପେକ୍ଷା କରିବାକୁ ପଡ଼ିଲା ।

ଚୁପ୍‌ଚାପ୍ ଓ ଚାପା ସ୍ୱଭାବ ମୋ' ଜୀବନର ଏକ ସ୍ୱତନ୍ତ୍ର ଅଂଶ । ଲୋକଙ୍କ ଦୃଷ୍ଟିରୁ ନିଜକୁ ଓହରାଇ ନେବା ମୋ'ର ଆଜନ୍ମ ପ୍ରବୃତ୍ତି । ସେଥିପାଇଁ ମୁଁ ଜୀବନରେ ଗୀତ ବୋଲି ପାରିଲିନି, ସାଇକେଲ୍ ଚଢ଼ି ପାରିଲିନି । ଛାତ୍ର ଜୀବନରେ ବହୁତ ଇଚ୍ଛା ଥିଲେ ବି ଅନ୍ୟମାନଙ୍କ ପରି ଦୋକାନରୁ ଚିନାବାଦାମ କିଣି ଖାଇ ପାରିଲିନି । ବନ୍ଧାକୋବି ତରକାରୀର ବାସ୍ନା ପ୍ରତି ଅହେତୁକ ମୋହ ସତ୍ତ୍ୱେ ସରସ୍ୱତୀ ପୂଜା ବେଳର ସ୍କୁଲ୍ ଭୋଜିକୁ ଯାଇପାରିଲିନି ।

ମୋର ଏଇ ଅସ୍ୱାଭାବିକତା ହେତୁ ବିବାହ ପରେ ମୁଁ ଯେଉଁ ଆଶଙ୍କା କରିଥିଲି, ଅପରପକ୍ଷର ଅସୀମ ସହନଶୀଳତା ଯୋଗୁ ତାହା ଦୂର ହୋଇ ଆସିଛି ଏ ଯାଏଁ । ବରଂ ନିଜ ଲେଖା ରାଶି ରାଶି କବିତାକୁ ସରସ ଶୈଳୀରେ ଆବୃତ୍ତି କରି ମୋ' ଭିତରେ 'କବି' ପ୍ରାଣଟିଏ ସୃଷ୍ଟି କରିବାର ଜିଦ୍‌କୁ ଏଯାବତ୍ ବଜାୟ ରଖି ମୋର ଅନେକ ଶୂନ୍ୟକୋଣକୁ ପୂର୍ଣ୍ଣତାରେ ନିକ୍ୱଣିତ କରି ଦେଇଛି ନିନି । ସଦା ହସ ହସ ମୁହଁ ଓ ହରିଣୀର ଚଞ୍ଚଳତା ନେଇ ମୋର ଟିକି ସଂସାରଟିକୁ ତା'ର କଅଁଳ ଓ ଅନଭ୍ୟସ୍ତ ହାତରେ ସଜାଡ଼ି ନେବାର ଗାଢ଼ ପ୍ରଚେଷ୍ଟା କରିଛି ସେ । ଛଳ ଛଳ ଝରଣାଟିଏ ଭଳି ମୋ' ହୃଦୟ ଚଟାଣରେ ଅବାରିତ ବହି ଚାଲିଛି କୁଳୁକୁଳୁ ଗୀତ ଗାଇ । ତା'ର

ନିରବଚ୍ଛିନ୍ନ ଅଧ୍ୟବସାୟ ମୋର ନିବିଡ଼ ନୀରବତାକୁ ଭଙ୍ଗ କରିଛି । ମୋ' ସଦା ଗମ୍ଭୀର ମୁହଁରେ ହସ ଫୁଟାଇଛି ।

ମୁଦିପଡ଼ାର ଛୋଟ ଭଡ଼ାଘରଟିରେ ନିନି, ମୁଁ ଓ ମୋର ଦୁଇ ଭଉଣୀ ପ୍ରମିଳା, କନକ, ଗାଆଁ ଠାରୁ ଦୂରରେ ରହି ଅନେକ ସମୟରେ ଉଦାସ ହୋଇଯାଉ ସମସ୍ତେ ।

ଥରେ ଏମିତି ଏକ ଉଦାସିଆ ସନ୍ଧ୍ୟାରେ ମୁଁ ଗୀତାନ୍ତ କରିବାର ପ୍ରସ୍ତାବ ଦେଲି । ନିନି ପ୍ରଥମରୁ- 'ଗୀତ ଜାଣିନାହିଁ' କହି ରାଜି ହେଉ ନ ଥିଲା । କିନ୍ତୁ ପ୍ରମିଳା, କନକ ବାଧ୍ୟ କଲାରୁ ସେ ଯୋଗ ଦେଲା । ମୁଁ ଜାଣିଛି ସେ କବିତା ଆବୃତ୍ତିରେ ଧୁରନ୍ଧର । ସମସ୍ତଙ୍କୁ ଟପି ସେ ଗୀତ ବୋଲି ଚାଲିଲା ଅନବରତ । ଶେଷକୁ ତାକୁ ଅଟକାଇବାକୁ ପଡ଼ିଲା ।

ନିନି ସବୁବେଳେ କଳକଳ, ଛଳଛଳ । ସତେ ଅବା ଦୂରଗାମୀ ଦୂରନ୍ତ ଟ୍ରେନ୍‌ଟିଏ । ତା'ର ଚପଳତା ମୋ ଛୋଟ ସଂସାରଟିକୁ ଜୀବନ୍ତ କରି ତୋଳିଥାଏ । ସେ ଚୁପ୍ ହୋଇ ଗଲେ ଝଡ଼ଟିଏ ଘୁମ୍ ମାରି ବସିଗଲା ଭଳି ଲାଗେ । ମୁଁ ସିନା ଚୁପ୍ ରହେ, କିନ୍ତୁ ତା'ର ଏଣୁ ତେଣୁ କଥାବାର୍ତ୍ତା, ରୁଣୁଝୁଣୁ ଶବ୍ଦ ମୋତେ କର୍ମମୁଖର କରି ତୋଳେ ।

ମୋର ଏଇ ସ୍ୱଭାବର ଏକ ଛିଟିକା ହେଉଛି ମିତା । ଆଉ କ୍ରମଶଃ ଏହି ସ୍ୱଭାବ ସହିତ ସ୍ୱତଃସ୍ଫୂର୍ତ୍ତ ଜିଦ୍‌ଖୋର ମନୋବୃତ୍ତି ଓ ଚପଳତା ମିତା ଭିତରେ ଭରିଦେବାର ଅକ୍ଷୟ ଉତ୍ସ ଏଇ ନିନି । କେତେବେଳେ ମିତା ମୋ' ପରି ଭାବନାରେ ମଗ୍ନ ତ କେତେବେଳେ ତା' ମାଆ ପରି ଚିର ସ୍ଫୂର୍ତ୍ତିମୟୀ – ସତେ ଅବା ଚଳଚଞ୍ଚଳ ଝରଣାଟିଏ ।

ମିତାର ଉତ୍ତରଣ ମଧ୍ୟରେ ମୁଁ ଏବେ ଲକ୍ଷ୍ୟ କରୁଛି ଭିନ୍ନ ଏକ ଲକ୍ଷଣ । ତାକୁ ଦେଖିଲେ ମୋ' ଭିତରେ କିମିତି ଏକ ଛୋଟ ଶିଶୁ ମମତା ପାଗଳ ହୋଇଉଠେ ।

ମୁଁ ପଢ଼ା ଘରେ ବସି ପଢ଼ାପଢ଼ି କରୁଥିବି । ନିନି ରନ୍ଧା ଘରେ ରୋଷେଇରେ ବ୍ୟସ୍ତ ଥିବ । ମିତା ତା' ମାଆ ପାଖରୁ ସନ୍ଦେଶ ଆଣି ମୋ' ପାଖକୁ ଲାଜେଇ ଲାଜେଇ ଆସୁଥିବ । ମୁଁ ଅନେଇଲେ କବାଟ ସେପାଖେ ଲୁଚି ଯାଉଥିବ । ମୁହଁରେ ମେଞ୍ଚାଏ ପାଉଡର ବୋଳି ହୋଇ ମୁଣ୍ଡରେ ଟିପା ମାରି ଲୁଚି ଲୁଚି କବାଟ ଫାଙ୍କରେ କଣେଇଁ ଚାହିଁ ହସୁଥିବ ।

ତା'ର ଓଠଚିପା ଲାଜମିଶା ହସ ବେଶ୍ ଭଲଲାଗେ । ଅନେକ ଇଚ୍ଛା ଥିଲେ ବି ନୂଆ କରି ବାପା ହୋଇଥିବାର ସଂକୋଚରେ ମୁଁ ତାକୁ କୋଳେଇ ନେଇ ପାରେନି ।

ଗେଲ କରି ପାରେନି । ଏହି କାରଣରୁ ମୋତେ 'ଲୋକ'ରୁ 'ବାପା' ହେବାପାଇଁ ଅନେକ ସମୟ ଲାଗିଯାଇଥିଲା ।

ମିତା ବଡ଼ ହେଲାପରେ ଥରେ ଅଭିଯୋଗ କରୁଥିଲା- "ବାପା, ତମେ ମତେ କାଖଉ ନ ଥିଲ କି ? ଫଟ ତ ନାହିଁ ?" -ପ୍ରକୃତରେ ତ ତାକୁ କେବେ କାଖେଇବାର ମୋର ମନେ ପଡୁନାହିଁ । ଏ ମଧ୍ୟ ମୋର ଅନେକ ସଂକୋଚ ମଧ୍ୟରୁ ଆଉ ଏକ ସଂକୋଚ ।

ଏହିପରି ଏକ ସନ୍ଧି ସମୟରେ ମୋ' ପରିବାରର ପରିସର ମଧ୍ୟକୁ ଆସେ ମୋର ଘନିଷ୍ଠ ବନ୍ଧୁ ରାମ ନାରାୟଣ । ଏକ ସମୟରେ ଜବଲପୁରରେ ପ୍ରଫେସର ତ୍ରିବିକ୍ରମ ପତିଙ୍କର ଆମେ ଦୁହେଁ ଗବେଷଣା ଛାତ୍ର ଥିଲୁ । ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ସେ ଗଣିତ ଅଧ୍ୟାପକ ଭାବରେ ଯୋଗଦେଲା ଓ କିଛି ଦିନ ମୋ' ସହ କଟାଇ ତା' ପରେ ମୋର ପ୍ରତିବେଶୀ ହେଲା ।

ପୁରୀ ଶାସନୀୟ ବ୍ରାହ୍ମଣ ପରିବାରର ରାମ ନାରାୟଣ ପ୍ରଭୁ ଜଗନ୍ନାଥଙ୍କର ଦେଢ଼ ଚାଖଣ୍ଡ ଉଚ୍ଚ ଏକ ଦାରୁମୂର୍ତ୍ତି ପୂଜା କରୁଥିଲା । ଜଗତର ନାଥ ଜଗନ୍ନାଥଙ୍କର ଏଇ ମୂର୍ତ୍ତି ଦର୍ଶନରେ ଏକ ସ୍ୱର୍ଗୀୟ ଆନନ୍ଦରେ ମୁଁ ମଗ୍ନ ହୋଇଗଲି । ହୋଇଗଲି ପ୍ରଗଲ୍ଭ । ରାମନାରାୟଣ ଠାରୁ ଜଗନ୍ନାଥଙ୍କ ମହିମା ଶୁଣିଲି, ଶୁଣାଇଲି ମଧ୍ୟ । ମନେ ପଡ଼ିଲା - ଦେହସାରା ବସନ୍ତ ହୋଇଯାଇଥିଲା ବେଳେ ବୋଉ ମୋତେ ଏଇ ଜଗନ୍ନାଥଙ୍କ ପାଖରେ ବାବାଜୀ କରିଦେବାର ମାନସିକ କରିଥିଲା । ମୋତେ ତାଙ୍କ ପାଖରେ ବନ୍ଧା ଦେଇ ଆହୁରି କହିଥିଲା - ମୋ' ଜୀବନ ରହିଲେ ବାଇଶି ପାହାଚରେ ମୋତେ ଗଡ଼େଇବ, ବଞ୍ଚି ରହିଲେ ଜଗନ୍ନାଥଙ୍କ ଚରଣ ତଳେ କିଛି ଭେଟି ଦେଇ ମୋତେ ମୁକୁଳାଇ ନେବ । ହେଲେ ବୋଉ ତା' କଥା ରଖି ପାରିଲାନି । ମୋତେ ମୁକୁଳାଇବା ପୂର୍ବରୁ ବୋଉ ମୋର ସଂସାର ଛାଡ଼ି ଚାଲିଗଲା ଓ ମୁଁ ସାରାଜୀବନ ପାଇଁ ଜଗନ୍ନାଥଙ୍କ ଶ୍ରୀଚରଣରେ ବନ୍ଧା ରହିଗଲି ।

ନିନି କହେ - ରାମ ନାରାୟଣ ଆସିବା ପରେ ସେ ମୋତେ ସଂପୂର୍ଣ୍ଣ ଏକ ନୂଆ ମଣିଷ ଭାବରେ ଆବିଷ୍କାର କଲା । ରାମ ନାରାୟଣ ସହିତ ଘଣ୍ଟା ଘଣ୍ଟା ଗପ କରିବାର ଦେଖିଲା । ସଶବ୍ଦରେ ହସିବାର ଶୁଣିଲା । ହୋଇଥିବ । ପ୍ରକୃତରେ ମୁଁ ସମସ୍ତଙ୍କ ସାଙ୍ଗରେ ମିଶିପାରେ ନାହିଁ - ଆଉ ଯାହା ସାଙ୍ଗରେ ମିଶେ ତା' ସହିତ ସମୀକୃତ ହୋଇଯାଏ ।

ମୋତେ ଅନୁକରଣ କରି ମିତା ତା'ର ଦରୋଟି ଭାଷାରେ ରାମନାରାୟଣକୁ ଡାକେ 'ନାମ୍‌ନାନ୍' । ଆଉ ତା'ର ପୂଜା କରୁଥିବା ଜଗନ୍ନାଥଙ୍କୁ ଟେକି ଆଣି ପୁଅ କରି ଖେଳେ ମନ ଇଚ୍ଛା । କାଖେଇ କରି ବୁଲେ ଓ କୋଳରେ ଶୁଆଇ ଗେଲ କରେ - ସତେ ଯେମିତି ସେ ସ୍ନେହରଙ୍କୁଣୀ ମାଆଟିଏ, ଆଉ କଳା ଠାକୁର ତା'ର କୁନିପୁଅ । ଅନେକ ସମୟରେ ନିନି ତାକୁ କହୁଥିବା କଥାରୁ ଉଦ୍ଧୃତ କରି ପୁଅ ଉଦ୍ଦେଶ୍ୟରେ କହେ - ସୁନାପିଲା ଦୁଷ୍ଟ ହୁଅନ୍ତିନି - ମାଆକୁ ହଇରାଣ କରନ୍ତିନି - କଥା ମାନନ୍ତି - ବୋଧହୁଏ ବାପାଙ୍କଠାରୁ ପାଇନଥିବା ସ୍ନେହର ଅଭିମାନରେ ସେ ତା'ର ସମସ୍ତ ସ୍ନେହକୁ ଏକତ୍ରିତ କରି କାଳିଆ ପୁଅ ଉପରେ ଲୋଟାଇ ଦେଇ ମନର ଅରମାନ ମେଣ୍ଟାଇ ଦିଏ ।

ଅନେକ ଦିନ ପରେ ମଇଁଆ ସାଙ୍ଗରେ ମିତା ଗାଆଁକୁ ଯାଇଥାଏ । ସାଙ୍ଗରେ ତା' ପୁଅ କଳା ଠାକୁର । ନିତି ଗାଧୁଆ ପାଧୁଆ ଘଷାଘଷିରେ ଜଗନ୍ନାଥଙ୍କ ରଙ୍ଗ ଛାଡ଼ିଯାଇଥାଏ । ଯାହା ଉପରେ ରାଗେ, ମିତା ତା' ଉପରକୁ ସର୍ବଦା କୋଳରେ ଧରିଥିବା ମୂର୍ତ୍ତି ଫୋପାଡ଼ି ଦିଏ । ଠାକୁରଙ୍କ ସାଙ୍ଗରେ ଏମିତି ଖେଳନ୍ତି ନାହିଁ ଭାବି ମଇଁଆ । ଦିନେ ମୂର୍ତ୍ତି ଲୁଚାଇ ରଖିଦେଲା । ମିତା ତା' ପୁଅକୁ କେତେ ଖୋଜିଥିବ । କଇଁ କଇଁ ହୋଇ କାନ୍ଦିଥିବ ଅନେକ । କ୍ରମେ ଆଖିର ଲୁହ ଶୁଖିଯାଇଥିବ । ଧୀରେ ଧୀରେ ପୁଅ ପାଇଁ ଝୁଙ୍କ କମି ଯାଇଥିବ । ମମତା ଓ କ୍ରୋଧ କ୍ରମଶଃ ମୋହ ଓ କୋହ ହୋଇ ଜମାଟ ବାନ୍ଧି ଯାଇଥିବ ।

ପ୍ରାୟ ବର୍ଷେ ପରେ ଦିଲ୍ଲୀ ଯିବା ରାସ୍ତାରେ ମିତା, ଛୋଟ ପୁଅ ରାଜା, ନିନି ଥାଉ ମୁଁ ପୁରୀ ଯାଇଥାଉ । ରାମନାରାୟଣ ସେତେବେଳେ ପୁରୀରେ ଥାଏ । ସନ୍ଧ୍ୟାବେଳେ ସଭିଏଁ ମିଶି ଦିଅଁ ଦର୍ଶନରେ ବାହାରିଲୁ ।

ରାମନାରାୟଣ ହାତ ଧରି ତା'ର କୁନି କୁନି ଅନଭ୍ୟସ୍ତ ପାଦ ପକେଇ ଡେଇଁ ଡେଇଁ ମନ ଖୁସିରେ ବାଇଶି ପାହାଚ ଗୋଟିକ ପରେ ଗୋଟିଏ ଅତିକ୍ରମ କରିଗଲା ମିତା । ବାଇଶି ପାହାଚରେ ଗଡ଼ାଇବାକୁ ବୋଉ ଜଗନ୍ନାଥଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ସ୍ମରଣ କରୁ କରୁ ଅଶ୍ରୁଳ ଆଖିରେ ମୁଁ ମଧ୍ୟ ପାହାଚ ପରେ ପାହାଚ ଅତିକ୍ରମ କରୁଥିଲି । ମୋ ବୋଉର ଶାନ୍ତ, ସରଳ, ସଦା ହସହସ, ସ୍ନେହଭରା ମୁହଁଟି ମୋ' ଅଜାଣତରେ ଆଖି ଆଗରେ ଭାସିଉଠୁଥିଲା । ଅଦମ୍ୟ କୋହକୁ ବୁକୁତଳେ ଚାପି ରଖି ସମସ୍ତଙ୍କ ଗହଣରେ ଚାଲୁଥିଲି ସିନା ମନ ମୋର କେଉଁ ଅତୀତର ସ୍ମୃତିରେ ହଜି ଯାଇଥିଲା ।

ସତେ ଯେମିତି ବୋଉ ମୋର ମୋ' କାନେ କାନେ କହୁଥିଲା- ଠାକୁରଙ୍କୁ ଦେଇଥିବା କଥା ରଖିପାରିଲିନି ବାପା - ତତେ ସାରାଜୀବନ ପାଇଁ ଠାକୁରଙ୍କ ପାଖରେ

ବନ୍ଧା ଦେଇଗଲି । ସେଇ ତୋ'ର ସାହାଭରସାରେ - ମୁଁ ସିନା ଚାଲିଗଲି - ତୋତେ ଯାହା ପାଖରେ ଛାଡ଼ିଦେଇଗଲି ସେଇ ଚକାଡୋଳା ତୋ' ପାଖେ ପାଖେ ରହି ପ୍ରତି ମୁହୂର୍ତ୍ତରେ ତୋ' ଚଲାପଥର ସହାୟକ ହେବ - ଜୀବନରେ ତାଙ୍କୁ କେବେ ଭୁଲିବୁନୁ ।

ଭାବୁ ଭାବୁ କେତେବେଳେ ପହଞ୍ଚି ଯାଇଛି ବୋଉର ଆରାଧ୍ୟ ଦେବତା ଓ ମିତାର ଗେହ୍ଲାପୁଅ କଳାଠାକୁରଙ୍କ ପାଖରେ । ଅନ୍ୟମନସ୍କ ଭାବେ ନିଜକୁ ଆବିଷ୍କାର କଲି ଜଗନ୍ନାଥଙ୍କ ସାମ୍ନାରେ ।

ଗରୁଡ଼ ଖମ୍ବ ପାଖରେ ରାମନାରାୟଣ କୋଳରେ ଥାଇ ମିତା ରତ୍ନସିଂହାସନ ଉପରେ ଉପବିଷ୍ଟ ବିରାଟକାୟ ଜଗନ୍ନାଥଙ୍କୁ ଆଶ୍ଚର୍ଯ୍ୟ ଚାହାଣିରେ ଚାହିଁ ରହିଥିଲା । ହଠାତ୍ ସମସ୍ତଙ୍କୁ ଚକିତ କରି ସର୍ବଦା ଚୁଚୁମୁଥିବା ଆଙ୍ଗୁଳିକୁ ପାଟିରୁ କାଢ଼ି ମିତା କହି ଉଠିଲା- "ମାଆ, ମୋ' ପୁଅଟା କ'ଣ ଏଠି ? ଏତେ ବଡ଼ ହେଇଗଲାଣି ?"

ତା'ର ଦେଢ଼ ଚାଖଣ୍ଡ ଉଚ୍ଚର କୁନି ପୁଅ ଜଗନ୍ନାଥ ବଢ଼ି ବଢ଼ି ଏତେ ବିରାଟ ଆକାର ଧାରଣ କରିଛନ୍ତି - ତାଙ୍କୁ ହଜାର ହଜାର ଲୋକ ମୁଣ୍ଡିଆ ମାରୁଛନ୍ତି - ଶଙ୍ଖ, ଘଣ୍ଟା ଧ୍ୱନିରେ ଚାରିଆଡ଼ ପ୍ରକମ୍ପିତ ହେଉଛି - ଏ ଦୃଶ୍ୟଥିଲା ତା' ପାଇଁ ଆଶ୍ଚର୍ଯ୍ୟ ଆଉ ମଜାର ବିଷୟ । ହଠାତ୍ ରାମନାରାୟଣ କୋଳରୁ ଖସି ଆସି ସମସ୍ତଙ୍କୁ ଚକିତ କରିଦେଇ ସେ ଅତି ଦୁଃଖରେ ଗୁଣୁଗୁଣେଇ ହେଲା - ପୁଅକୁ ମୋର ଆଉ କାଖେଇ ହେବନି । ଥାଉ - ଏଇଠି ଥାଉ । ଟିକି ମା'ଟି ଜାଣି ନ ଥିଲା ତା' ଟିକି ପୁଅଟି ପାଖରେ ତା'ର ବାପା ବନ୍ଧା ପଡ଼ିଛି ।

ପୁଅର ପୂଜା ଅର୍ଚ୍ଚନା ତା' ପାଇଁ ଯେତିକି ଆନନ୍ଦଦାୟକ ଥିଲା, ତାକୁ ପାଇ ମଧ୍ୟ କୋଳରେ ଧରି ପୂର୍ବ ପରି ଗେହ୍ଲାକରି ନ ପାରିବାର ଦୁଃଖ ସେତିକି ତୀବ୍ର ଥିଲା । ପୁଅକୁ ହାତ ପାଖରେ ପାଇ ମଧ୍ୟ ନ ପାଇପାରିବାର ଦୁଃଖରେ ତା'ର ଆଖି ଯୋଡ଼ିକ ଲୁହରେ ଟଳମଳ ହେଉଥିଲା । ଆନନ୍ଦ ଓ ଦୁଃଖର ସମ୍ମିଶ୍ରଣରେ ମିତାର କଅଁଳିଆ ମୁହଁଟି ସ୍ତିମିତ ଦୀପ ଆଲୁଅରେ କେମିତି କରୁଣ ଦେଖାଯାଉଥିଲା ।

ଶ୍ରୀଜଗନ୍ନାଥ, ରଥସଂଖ୍ୟା, ୧୯୯୯



# ଭିନ୍ନ ଏକ ପ୍ରତିବିମ୍ବ

ଚାନ୍ଦୋଳଗ୍ରୁ ବସ୍‌ରେ ଉଠିଲି । ବସ୍‌ର ଚାରିଆଡ଼କୁ ଆଖି ପକାଇଲି କାଳେ ସିଟ୍‌ଟିଏ ମିଳିଯିବ । ଯାତ୍ରୀମାନେ ଖୁନ୍ଦାକୁନ୍ଦି । ଆଜି ରଥଯାତ୍ରା । ବସିବା ତ ଦୂରର କଥା, ଠିଆ ହେବା ବି ମୁଷ୍କିଲ୍ । ହଠାତ୍ କଣ୍ଡକ୍ଟର ସିଟ୍‌ରୁ ଜଣେ କହିଲା- "ସାର୍ ! ଏଇଠି ବସନ୍ତୁ ।"

ମୁଁ ଆଶ୍ଚର୍ଯ୍ୟ ଚକିତ ହୋଇଗଲି କିଏ ଏହି ଉଦାର ବ୍ୟକ୍ତି ? ଏତେ ଲୋକ ଛିଡ଼ା ହୋଇଥିବା ସତ୍ତ୍ୱେ ମୋତେ କାହିଁକି ବସିବା ଲାଗି ସ୍ଥାନ କରିଦେଉଛି । କ'ଣ ମୋର ଚିହ୍ନା କେହି ? କେବେ ଛାତ୍ର ଥିଲା ନା କ'ଣ ? ନୀରବରେ କିଛି ସମୟ ଚାହିଁ ରହିଲି ତା' ମୁହଁକୁ । ଏତେ ଦରଦ କାହିଁକି ? ମୋ' ପାଖରେ ଯା'ର କିଛି କାମ ଅଛି କି ? ଏଇମିତି ଅନେକ ସମ୍ଭାବ୍ୟ ପ୍ରଶ୍ନ ଭିତରେ ଘାରି ହେଉଥିବା ବେଳେ କଣ୍ଡକ୍ଟର ପାଖରେ ବସିଥିବା ଲୋକଟି ଉଠିଗଲାଣି । ବୋଧହୁଏ ସେ ହେଲ୍‌ପର ହୋଇଥିବ । ଯାହାହେଉ । ସିଟ୍‌ଟାଏ ମିଳିଗଲା । ତା' ପ୍ରତି ମନେ ମନେ କୃତଜ୍ଞତା ଜଣାଇ ସିଟ୍‌ରେ ବସିପଡ଼ିଲି ଆଶ୍ୱସ୍ତ ହୋଇ ।

ବସ୍ ଚାଲିଥାଏ । ସକାଳୁଆ ଥଣ୍ଡା ପବନରେ ଆଖିପତା ନଇଁ ଆସୁଥାଏ । ବସ୍ ରହିଲା ଶୁକରପଡ଼ା ଷ୍ଟପେଜ୍‌ରେ । ଆଖି ମଳି ସିଧା ହୋଇ ବସିଲି । ଠେଲାପେଲା ହୋଇ ଲୋକ ଉଠୁଥାନ୍ତି ବସ୍ ଉପରକୁ । ଆଜି ପରା ଦିନରେ କିଏ ବା କାହାକୁ ମନା କରିବ ବସ୍‌ରେ ଚଢ଼ିବା ପାଇଁ । ବୁଢ଼ୀଟିଏ ଗୋଟିଏ ଗଣ୍ଠିଲି ଧରି ବସ୍ ଉପରକୁ ଉଠିଲା ଓ ବସ୍‌ର ପାହାଚ ପାଖରେ ରାସ୍ତାରେ ବସି ପଡ଼ିଲା । କଣ୍ଡକ୍ଟରର ଭୀମ ଗର୍ଜନ- "ଏ ବୁଢ଼ୀ ! ଉଠ୍, ଉଠ୍, ଆସି ରାସ୍ତାରେ ବସି ପଡ଼ିଲା ।"

ଏ ଭିଡ଼ ଭିତରେ ବୁଢ଼ୀ ଯିବ ବା କୁଆଡ଼େ ? ବୁଢ଼ୀକୁ ଟିକିଏ ନିରୀକ୍ଷଣ କଲି; ବୟସ ପ୍ରାୟ ପଞ୍ଚଷଠିରୁ ସତୁରୀ ହେବ । ଝୋଟ ପରି ସବୁ ବାଳ ପାଚି ଯାଇଛି ବିଧବାର; ମଇଳା ଧଳା ଲୁଗାଟିଏ ଗୁଡ଼ାଇ ତୁଡ଼ାଇ ପିନ୍ଧିଛି; ଚମ ଧୁଡ୍ ଧୁଡୁ ହୋଇ ଆସିଲାଣି । ମନରେ ଦୟା ଆସିଲା କହିଲି- "ମାଉସୀ ! ତମେ ଏଇଠି ବସ, ମୁଁ ପଛକୁ ଯାଉଛି ।"

କ୍ଷଣକ ଆଗରୁ କର୍କଶ ଭାଷାରେ ରଡ଼ି କରୁଥିବା କଣ୍ଡକ୍ଟର ସ୍ୱର ବଦଳାଇ ଖୁବ୍ ନରମ ଗଳାରେ କହିଲା- "ହଉ ତେବେ; ବୁଢ଼ୀ ଏଇଠି ବସୁ ।"

ସିଟ୍ ଛାଡ଼ି କଣ୍ଡକ୍ଟର ଉଠିଲା ବେଳକୁ ବୁଢ଼ୀର କଲ୍ୟାଣ ବର୍ଷି ଯାଉଥାଏ ।

"ତୋ'ର କୋଟି ପରମାୟୁ ହେଉରେ ପୁଅ ।" ବୁଢ଼ୀ ଆଉ ମୁଁ ଗୋଟିଏ ସିଟ୍‌ରେ ପାଖାପାଖି ନିରବରେ ବସିଥାଉ । ବସ୍ ଓ ସମୟ ଗଡ଼ି ଚାଲିଥାଏ । ଜୁଲାଇ ମାସର ମେଘୁଆ ସକାଳ । ଆକାଶରେ ମେଘଭରା ବାଦଲ । ଝିପି ଝିପି ବର୍ଷା ଛୁଇଁ ଭାସି ଆସୁଥିବା ଥଣ୍ଡା ପବନର ସ୍ପର୍ଶରେ ମୁଁ ପୁଣି ଢୋଳେଇବାକୁ ଲାଗିଲି ।

"ଏ ପୁଅ ! ପାନ ଖଣ୍ଡେ ଖାଇଥାନ୍ତି !"

ବୁଢ଼ୀ କଥାରେ ମୋର ଛାଇ ନିଦ ଭାଙ୍ଗିଗଲା ।

"ମାଉସୀ ! ମୋ' ପାଖରେ ପାନ ନାହିଁ, ମୁଁ ପାନ ଖାଏ ନାହିଁ ।"

-"ନା, ନା, ମୋ' ପାଖରେ ପାନ ଅଛି ।"

-"ତେବେ ଖାଉନ ।"

-"ଏଇ ଗଣ୍ଠିଲିଟା ରଖିବାକୁ ତ ଜାଗା ନାହିଁ । ଏଇଟା କେଉଁଠି ରଖିଲେ ସିନା ପାନ ଦି'ଖଣ୍ଡ ଭାଙ୍ଗି ଥାଆନ୍ତି ।"

ମୁଁ ନିରୁତ୍ତର ।

ଟିକେ ସମୟ ଅପେକ୍ଷା କରି ବୁଢ଼ୀ ପୁଣି କହିଲା - "ଏ ଗଣ୍ଠିଲିଟା ଟିକେ ତୋ' କୋଳ ଉପରେ ରଖିବି କି ?"

-"ହଉ ରଖ ।" ନିସ୍ପୃହ ଭାବରେ ମୁଁ ଉତ୍ତର ଦେଲି ।

ମୋ ଇଚ୍ଛା-ଅନିଚ୍ଛାକୁ ଖାତିର୍ ନ କରି ନିଃସଙ୍କୋଚରେ ବୁଢ଼ୀ ମୋ' କୋଳରେ ଗଣ୍ଠିଲିଟି ଥୋଇ ଦେଲା । ତା' ଭିତରୁ ଓଦା କନାରେ ବନ୍ଧା ବିଡ଼ାଏ ପାନ ଓ ଗୁଆ-ଗୁଣ୍ଡି ରଖିଥିବା ବିଭିନ୍ନ ଡବା ସବୁ ବାହାର କଲା ଓ ନିଜ କୋଳ ଉପରେ ପାନ ଭାଙ୍ଗି ବସିଲା । -"ଏ ପୁଅ ! ପାନ ଖଣ୍ଡେ ଖାଆ ।"

-"ନାଇଁ ମାଉସୀ, ମୁଁ ପାନ ଖାଏ ନାହିଁ ।"

-"ନ ଖାଇଲେ କ'ଣ ହେଲା; ଆଜି ଦିନକ ଖାଆ। ଠାକୁର ପାନ ପରା । ଖଣ୍ଡେ ଖାଆ ।"

-"ହଉ, ଦିଅ ।"

ବୁଢ଼ୀର ଏତେ ସ୍ନେହ ଓ ଆଗ୍ରହ ଦେଖି ମୁଁ ଅଗତ୍ୟା ହଁ ଭରିଥିଲି । ମୋ' କୋଳ ଉପରେ ଗୋଟାଏ ପାନ ଚିରା ହୋଇ ଦୁଇଖଣ୍ଡ ହୋଇ ଥୁଆ ହେଲା । ଗୁଆ, ଖଇର ଦେଇସାରି ବୁଢ଼ୀ ପାନ ଖଣ୍ଡିଏ ଭାଙ୍ଗିଲା । କହିଲା- "ଏଇଠା ଠାକୁର ପାନ, ନେ ଖାଇଦେ ।"

ପାନ ଖାଇବି କି ନାହିଁ ଭାବୁ ଭାବୁ ଅଜାଣତରେ ପାନଟିକୁ ଧରିସାରିଥାଏ । ବୁଢ଼ୀ ପୁଣି କହିଲା- "ଭାବୁଛୁ କ'ଣ ବାପା, ଖାଇଦେ । ଠାକୁର ପାନ, ସାଦା, କିଛି ହବ ନାଇଁ । ଭଲ ଲାଗିବ, ଖାଆ ।" ଅନ୍ୟମନସ୍କ ଭାବେ ପାନ କଲରେ ଜାକିଦେଲି । ବୁଢ଼ୀ ତା' ପାନରେ ଗୁଣ୍ଡି ଦେଇ କଲରେ ଗୁଞ୍ଜି ଦେଲା ଓ ଗଣ୍ଠିଲିକୁ ସଜାଡ଼ି ଦେଇ ତା' କୋଳ ଉପରେ ରଖି ଝାଡ଼ିଝୁଡ଼ି ହେଇ ବସିପଡ଼ିଲା । ଗୁଣ୍ଡିପାନ ଖାଇ ବୁଢ଼ୀର ମିଜାସ୍ ଖୁସିଥିଲା । ଇଆଡୁ ସିଆଡୁ କ'ଣ ସବୁ ଗପିଚାଲିଲା । ମୁଁ ଟିକିଏ ଅନ୍ୟମନସ୍କ ଥିଲି । କିଛି କିଛି କଥା କାନରେ ବାଜି ଉଡ଼ି ଯାଉଥିଲା । ସେଥିରୁ ଅନୁମାନ କଲି, ବୁଢ଼ୀ ଲୁଚିକି ଘରୁ ପଳାଇ ଆସିଛି । ମୁଁ ହଠାତ୍ ଚେଙ୍ଗା ହୋଇଗଲି ଓ ବୁଢ଼ୀ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲି । ବୁଢ଼ୀ କହିଚାଲିଛି-

-"ଫି ବରଷ ମୁଁ ଜଗନ୍ନାଥିଆକୁ ରଥରେ ଦେଖିବାକୁ ଯାଏ । ଏସନ ପୁଅ ମନା କରିଦେଲା । କହିଲା "ନ ଯିବାକୁ ।" ଏକା ଏକା କାଳେ ହଇରାଣ ହେବି । ବୋହୂ ବି ମନା କରିଦେଲା । ସେମାନେ ମନା କଲେ କ'ଣ ଯିବିନି ? କାଳିଆକୁ ରଥରେ ଦେଖିଲେ ମୁଁ ପାଟିକି ଅନ୍ନ ନିଏ । କିମିତି ନ ଯିବି ? ମୁଁ କ'ଣ ତାଙ୍କରି କଥା ମାନିବି ? ମୁଁ କ'ଣ ତାଙ୍କ କଥାରେ ଅଛି ?

ମୁଁ ବିସ୍ମିତ ହେଲି : ଏତେ ବୟସରେ ବୁଢ଼ୀର ଏତେ ଜିଦ୍, ଏତେ ଝୁଙ୍କ ଲାଗିଛି ଯେ ଏକା ଏକା ଘରୁ ପୁଣି ଲୁଚିକି ଆସିଛି ।

"ତମ ପୁଅ କ'ଣ କରୁଛି କି ?" ପଚାରିଲି ।

"ସେ କ'ଣ ଗୋଟାଏ ଚାକିରି କରିଛି ରାଉରକେଲାରେ; ବୋହୂ ଘରେ ଅଛି ।"

"ତମ ପୁଅ ତ ଠିକ କହୁଛି; ତମର କ'ଣ ଆଉ ସତରେ ବଳ ବୟସ ଅଛି ଯେ ତମେ ଏକା ଏକା ପୁରୀ ବାହାରିଛ ?" ମୁଁ ଧୀର ଅଥଚ ଦୃଢ଼ କଣ୍ଠରେ କହିଲି । "ପୁଅକୁ ଦଶମାସ ଗର୍ଭରେ ଧରିଛି । ଜନମ ଦେଇଛି । ମୋ ପାଇଁ ସେ ଭାରି ବ୍ୟସ୍ତ ହୁଏ । ବୋହୂ ବି ହୁଏ ଯେ ପରପିଲା, ମିଛ କାଇଁ କହିବି ? ସିଏ ବି ମୋ' ପାଇଁ ବହୁତ କରେ ।"

"ତମର ଏତେ ବୟସ ହେଲାଣି; ଏକା ଏକା ଯାଉଛ, କାହାକୁ ସାଙ୍ଗରେ ଆଣିଲ ନାହିଁ ?"

କାହାକୁ ସାଙ୍ଗରେ ଆଣିଥିଲେ କ'ଣ ମୁଁ ଆସିପାରିଥାଆନ୍ତି ? ବୋହୂ କ'ଣ ମୋତେ ଏକା ଛାଡ଼ିଥାଆନ୍ତା ! ସେଇଥିପାଇଁ ତ ଲୁଚିକି ପଳେଇ ଆସିଛି । ଆଉ କ'ଣ କରିଥାନ୍ତି ଯେ; ଜଗାକୁ ଫିଥର ରଥରେ ଦେଖୁଚି । ବୋହୂ ମନା କରିବ ବୋଲି କ'ଣ ଜଗାକୁ ଏଥର ଦେଖିବିନି ?

ମୁଁ ବାଟରୁ ଆମ ଗାଆଁ ଭୋଳା ଦୋକାନୀ ହାତରେ ଖବର ପଠାଇ ଦେଇ ଆସିଚି ନା; ଆଉ କାହିଁକି ବ୍ୟସ୍ତ ହେବ ?

ଗଣ୍ଠିଲି ଧରି ଆସିଲା ବେଳକୁ କେହି ଦେଖିଲେ ନାହିଁ ? ପଚାରିଲି ।

"ରାତିରେ ବୋହୂ ଶୋଇଯିବା ପରେ ଲୁଗାପଟା ସଜାଡ଼ିକି ବାହାରଘରେ ହାଣ୍ଡି ତଳେ ଲୁଚାଇ ରଖିଥିଲି । ପାହାନ୍ତାରୁ ଉଠି ଚୁପ୍‌ଚାପ୍ ବାହାରି ଆସିଲି । ବୋହୂ ଶୋଇଥିଲା; କେହି ଦେଖି ନାହାନ୍ତି ।" -କହିଲାବେଳେ ବୁଢ଼ୀର ଆଖି ଗଭୀର ଆତ୍ମସନ୍ତୋଷରେ ଚିକ୍ ଚିକ୍ କରୁଥିଲା । କିଛି ସମୟ ଚୁପ୍ ରହି ବୁଢ଼ୀ ପାନକୁ ଏ କଲରୁ ସେ କଲକୁ ନେଉ ନେଉ ପୁଣି କହି ଚାଲିଲା- "ମୁଁ କ'ଣ ତାଙ୍କ ପଇସା ଖର୍ଚ୍ଚ କରୁଚି କି ? ମୁଁ ତ ମୋ' ପଇସା ଆଣିଚି । ଛେଳି ବେପାର କରୁଚି । ସେଇ ଛେଳି ବିକା ଟଙ୍କାକୁ ପୁଅ ଡାକଘରେ ରଖିଦେଇ ଯାଇଚି । ଦରକାର ହେଲେ ମୁଁ ସେଇଥିରୁ ଟଙ୍କା ଉଠାଇ ଖର୍ଚ୍ଚ କରେ ।"

କେତେବେଳୁ କଣ୍ଡକ୍ଟର ଆସି ପାଖରେ ଠିଆ ହେଲାଣି ଟିକେଟ୍ କରିବାକୁ । ପୁଟୁଳି ଖୋଲି ବୁଢ଼ୀ ଗୋଟାଏ କନାମୁଣି ବାହାର କଲା । କନା ମୁଣି ଭିତରେ ଗୋଟିଏ ଡବା; ସେଇ ଡବା ଖୋଲି ତା' ଭିତରୁ ଆଉ ଏକ ଡବା କାଢ଼ିଲା ଓ ସେ ଡବା ଭିତରୁ ଟିକି ଡବାଟିଏ ବାହାର କରି ବୁଢ଼ୀ ମୋ' ହାତରେ ଗୁଞ୍ଜି ଦେଉ ଦେଉ କହିଲା- "ନେ ପୁଅ ! ୟାରି ଭିତରେ ପଇସା ଅଛି । ଏଇଥିରୁ କାଢ଼ି ଗଣିକି ଦେ ।"

ମୁଁ ଡବାଟି ଖୋଲିଲି । ତା' ଭିତରେ କିଛି ଚୂନା ପଇସା ଓ କିଛି ମଇଳା ନୋଟ୍ । ସବୁ ମିଶି ଦଶ, ବାର ଟଙ୍କା ଭିତରେ ହେବ । ଏତିକି ଟଙ୍କାରେ ବୁଢ଼ୀ ପୁରୀ ଯିବ କିପରି ? କ'ଣ ଖାଇବ ? ମୋ' ମନରେ ଅନେକ ସନ୍ଦେହ ଉଙ୍କି ମାରିଲା । ଏ ବୁଢ଼ୀ ନିଶ୍ଚୟ ମୋତେ କିଛି ଟଙ୍କା ମାଗିବ । ସେଇଥିପାଇଁ ପାନ ଲାଞ୍ଚ ଦେଇଛି । ନିଜ ଘର କଥା କହି ଦୁଃଖ ସୁଖ ହୋଇ ପାଖେଇ ଆସିବାକୁ ଚେଷ୍ଟା କରିଛି । ପୁଅ ବୋଲି ଡାକୁଛି । କଥା ଛଳରେ ଆପଣେଇ ନେବାର ପ୍ରୟାସ କରୁଛି । ଏମିତି

ଅନେକ ଆଶଙ୍କାର ହିସାବ ନିକାଶ କରୁ କରୁ ବୁଢ଼ୀ ଲାଗି କଟକ ପର୍ଯ୍ୟନ୍ତ ଟିକେଟ୍‌ର ପଇସା ଗଣିଦେଇ ପୁନରାୟ ବୁଢ଼ୀଙ୍କୁ ଡବାଟି ଫେରାଇଦେଲି ।

ବସ୍ ବାଦାମବାଡ଼ିରେ ରହିଲା । ଲୋକମାନେ ଉଠି ଠିଆ ହେଲେଣି । ବସ୍‌ରୁ ପ୍ରଥମେ ଓହ୍ଲାଇବାକୁ ପରସ୍ପର ମଧ୍ୟରେ ପ୍ରବଳ ପ୍ରତିଯୋଗିତା । ଡେରିହେଲେ ରଥ ଟଣା ଆରମ୍ଭ ହୋଇଯିବ । ଅନୁମେୟ ଅଧିକାଂଶ ପୁରୀଯାତ୍ରୀ ନିଶ୍ଚୟ । ଠେଲାପେଲା ଭିତରେ ମୁଁ ମଧ୍ୟ ଉଠିଲି ଭୁବନେଶ୍ୱର ବସ୍ ସନ୍ଧାନରେ । ବୁଢ଼ୀ ବସିଥିବା ଜାଗାରୁ ଉଠି ଠିଆ ହେଉ ହେଉ ଅନୁନୟ କଣ୍ଠରେ କହିଲା- "ପୁଅ ! ମୋତେ ଟିକେ ପୁରୀ ବସ୍‌ରେ ବସାଇ ଦିଅନ୍ତୁନି ।"

ବୁଢ଼ୀ କଥା ଶୁଣି ମୋ' ମନରେ ଉଙ୍କି ମାରୁଥିବା ସନ୍ଦେହ ଅଧିକ ଘନୀଭୂତ ହେବାକୁ ଲାଗିଲା । ଏ ବୁଢ଼ୀ ନିଶ୍ଚୟ ପଇସା ମାଗିବ କିମ୍ବା ଟିକେଟ୍ କରିଦେବାକୁ କହିବ । ତେବେ ମନର ଭାବକୁ ଲୁଚାଇ ରଖି ପ୍ରକାଶ୍ୟରେ କହିଲି- "ମୁଁ ଭୁବନେଶ୍ୱର ଯିବି ମାଉସୀ । ଏହି ବସ୍‌ର ଅନେକ ଯାତ୍ରୀ ପୁରୀ ଯିବେ । ତମେ ସେମାନଙ୍କ ସାଙ୍ଗରେ ଯାଅ । ପୁରୀ ବସ୍ ପାଇଯିବ । ସୁବିଧା ହେବ ।"

"ନା - ନା'ରେ ପୁଅ, ମୋତେ ପୁରୀ ବସ୍‌ରେ ବସାଇ ଦେଇକି ତୁ ଯୁଆଡ଼େ ଯାଉଚୁ ଯାଆ ।" ବୁଢ଼ୀ ମୋତେ ନ ଛାଡ଼େ ।

ମୁଁ ସ୍ଥିର ନିଶ୍ଚିତ ହୋଇଗଲି ଯେ ବୁଢ଼ୀର ନିଶ୍ଚୟ କିଛି ଟଙ୍କା ଦରକାର । ତେଣୁ ଯେତେ ବୁଝାଇଲେ ବି ବୁଢ଼ୀ ଶୁଣିବାକୁ ନାରାଜ । ସେ ତ ଘରୁ ଏକା ଆସିଛି, ଯିବ ଏକା । ଆଉ କାହା ସାଙ୍ଗରେ କାହିଁକି ଯିବ ? ହେଲେ ବୁଢ଼ୀକୁ କ'ଣ କେବଳ ବସ୍‌ରେ ବସାଇଦେଲେ ହେଲା ? ବୁଢ଼ୀ ଡବାରେ ତ ଟଙ୍କା ନାହିଁ । ଟିକେଟ୍ କିମିତି କରିବ ? ଫେରିବ ବା କେମିତି ? କ୍ଷଣକ ପାଇଁ ମୋ ମନ ଦୟା ଓ କରୁଣାରେ ଛଳ ଛଳ ହୋଇଉଠିଲା । ମନେ ମନେ ସ୍ଥିର କରିନେଲି - ହଉ, ଅସହାୟ ବୁଢ଼ୀଟିଏ ତ, ଯଦି କିଛି ଟଙ୍କା ମାଗେ ଦେଇଦେବି । କଟକରୁ ପୁରୀ ଯିବା ଆସିବା କେତେ ବା ଏମିତି ଖର୍ଚ୍ଚ ହେବ । କେତେ ପଇସା କୁଆଡ଼େ ଯାଉଛି । କେତେ କିଏ ଠକିଠାକି ନେଉଛନ୍ତି । ଏମିତି ଏକ ପୁଣ୍ୟ କାମରେ ଲାଗିଲେ ଭଗବତ୍ ସେବା ସଦୃଶ ହେବ ।

କହିଲି- "ହଉ ଆସ ମାଉସୀ, ବସ୍‌ରେ ବସାଇଦେବି ।"

ବୁଢ଼ୀ ମୋ' ପଛେ ପଛେ ଚାଲିଲା । ପୁରୀ ବସ୍ ପାଖରେ ମୁଁ ପଛକୁ ଚାହିଁଲା ବେଳକୁ ବୁଢ଼ୀ ଅଣ୍ଟା ପାଖରେ କ'ଣ ଖୋଜୁଛି । ଶେଷରେ ଅତି ଯତ୍ନରେ ସାଇତି ଥିବା ଏକ ଲାଲି ରଙ୍ଗର ଛୋଟ କନାମୁଣିଟିଏ ବାହାର କରି ମୋ' ହାତରେ ଗୁଞ୍ଜି ଦେଇ କହିଲା- "ଏଇଥିରେ ଟଙ୍କା ଅଛିରେ ପୁଅ, ଟିକଟ କରିଦେ ।"

ଆଗ୍ରହର ସହିତ ଲାଲି ରଙ୍ଗର କନାମୁଣିଟିକୁ ଭଲ ଭାବରେ ନିରୀକ୍ଷଣ କଲି । କନାଧଡ଼ିରେ ମୁଣିର ମୁହଁ ବନ୍ଧା ହୋଇଛି । ଗଣ୍ଠି ଖୋଲିଲି । ସେଥିରେ ମୋଡ଼ାମୋଡ଼ି ହୋଇ ଅନେକ ଦଶଟଙ୍କିଆ ନୋଟ ରହିଛି । ବୁଢ଼ୀର ଯିବା ଆସିବା, ଖାଇବା ଖର୍ଚ୍ଚ ପରେ ବି ଯଥେଷ୍ଟ ଟଙ୍କା ବଳିବ ।

ମୁଁ ମନେ ମନେ ଅନୁତପ୍ତ ହେଲି । ଅଯଥା ଅବାଞ୍ଛିତ ସନ୍ଦେହ ମୋ' ମନରେ ଗଢ଼ି ଉଠିଥିବାରୁ ନିଜକୁ ନିଜେ ଭର୍ତ୍ସନା କଲି । ଲଜ୍ଜା ଓ ଗ୍ଲାନିରେ ଛଟପଟ ହେଲି । ମୁଁ ଉଚ୍ଚ ଶିକ୍ଷିତ । ଦେଶ ବିଦେଶ ଭ୍ରମଣ କରିଛି । ଅନେକ ଲୋକଙ୍କ ସଂସ୍ପର୍ଶରେ ଆସିଛି । ଲୋକଙ୍କର ଜ୍ଞାନ ଗାରିମା କଳିଛି । ଦାନ, ଧର୍ମ, ଗୀତା, ପୁରାଣ, ବିଜ୍ଞାନ ସମ୍ବନ୍ଧରେ କେତେ କ'ଣ ପଢ଼ିଛି । ହେଲେ ଏଇ ନିପଟ ଅପାଠୋଇ ବୁଢ଼ୀ ପାଖରେ ମୁଁ କେତେ ଛୋଟ, କେତେ ନ୍ୟୁନ ?

ରେଭେନ୍ସା କଲେଜରେ ପଢୁଥିବା ସମୟରେ ସନ୍ଧ୍ୟାବେଳେ ପ୍ରାୟ ପ୍ରତ୍ୟହ ଷ୍ଟେସନ ଆଡ଼େ ବୁଲିଯିବା ଥିଲା ମୋର ଅଭ୍ୟାସ । ଏକଦା ବୁଲୁ ବୁଲୁ ଜଣେ ଅପରିଚିତ ଭଦ୍ରଲୋକ ଷ୍ଟେସନରେ ଦେଖା ହୋଇଗଲେ । ସେ ବହୁତ ବ୍ୟସ୍ତ ଜଣା ପଡୁଥିଲେ । ନିଜର ପର୍ସ ପକେଟ୍‌ମାର୍ ହୋଇଯିବାର ଦର୍ଶାଇ ସେ ପୁରୀ ଯିବା ଲାଗି କିଛି ଟଙ୍କା ସାହାଯ୍ୟ ଚାହୁଁଥିଲେ । ଭଦ୍ରଲୋକଙ୍କର ଅସହାୟତା ମୋତେ ବ୍ୟଥିତ କରିଥିଲା । ପାଖରେ ଥିବା ଟଙ୍କା ତତ୍‌କ୍ଷଣାତ୍ ମୁଁ ଭଦ୍ରଲୋକଙ୍କୁ ଦେଇ ଦେଇଥିଲି । ସେ ମାସ ଖର୍ଚ୍ଚ ପାଇଁ ବାପା ପଠାଇଥିବା ଟଙ୍କା ନିଅଣ୍ଟ ହେଉ ପଛେ, ଭଦ୍ରଲୋକ ହଇରାଣ ନ ହୁଅନ୍ତୁ ।

କିଛି ଦିନ ପରେ ଏମିତି ଏକ ସନ୍ଧ୍ୟାରେ, ଷ୍ଟେସନ୍‌ରେ ମୁଁ ପୁଣି ସେହି ଭଦ୍ରଲୋକଙ୍କୁ ଦେଖିଲି ଆଉ ଏକ ପୋଷାକରେ । ଏଥରକ ପର୍ସ ପକେଟ୍‌ମାର୍ ନୁହେଁ, ତାଙ୍କ ପାଖରେ କିଛି ଟଙ୍କା ଅଛି ଓ ଅଳ୍ପ କିଛି ହେଲେ ସେ ଟ୍ରେନ୍‌ରେ ଯାଇପାରନ୍ତେ ବୋଲି ବୁଲେଇ ବଙ୍କେଇ ଟଙ୍କା ମାଗୁଥିଲେ । ଲୋକଙ୍କଠୁ ଟଙ୍କା ଠକି ନେବାର ଏହି ଅଦ୍ଭୁତ କଳାକୌଶଳ ମୋତେ ଚକିତ କରିଦେଇଥିଲା । ସହରର ଏ ବିଭତ୍ସ ପ୍ରତାରଣା ମୋ' ମନରେ ଘୃଣା ଭରିଦେଇଥିଲା । ସମୟର ତାଳେ ତାଳେ ବହୁ ସ୍ତରରେ ଭିନ୍ନ ପ୍ରକାରର ଠକାମି ଦେଖି ମୁଁ ଆଧୁନିକ ସମାଜର ନୈତିକ ଅଧଃପତନ ଉପରେ ଏକ ବଦ୍ଧ ଧାରଣା ପୋଷଣ କରିସାରିଥାଏ । ଆଧୁନିକ ସ୍ୱାର୍ଥାନ୍ୱେଷୀ ସମାଜର ଭ୍ରଷ୍ଟାଚାର ପୃଷ୍ଠଭୂମିରେ ବୁଢ଼ୀ ପ୍ରତି ମୋର ସନ୍ଦେହ ସୃଷ୍ଟି ଥିଲା ସ୍ୱାଭାବିକ ମାତ୍ର ଅବାସ୍ତବ ।

ଜଣେ ଧର୍ମପ୍ରାଣା-ମାତୃତୁଲ୍ୟା ମହିଳାଙ୍କ ସମ୍ପର୍କରେ ଏପରି ଏକ ନିମ୍ନମାନର ଘୃଣ୍ୟଚିନ୍ତା କରିଥିବାରୁ ମୁଁ ଲଜ୍ଜାରେ ଭାଙ୍ଗି ପଡ଼ିଥିଲି । ମୋ' ସାମ୍ନାରେ ଯେମିତି ଆକାଶ ଛିଣ୍ଡି ପଡୁଥିଲା । ଏହି ପରିପ୍ରେକ୍ଷୀରେ ଆଧୁନିକ ସମାଜରେ ପ୍ରତାରଣାଭରା

ବୋଲି ମନେ ହେଉଥିବା ଏହି ମହୀୟସୀ ମହିଳା ଶ୍ରୀଜଗନ୍ନାଥଙ୍କ ଚରଣ ତଳେ ସମ୍ପୂର୍ଣ୍ଣ ଭାବେ ସମର୍ପିତା ଭିନ୍ନ ଏକ ପ୍ରତିବିମ୍ବ । ଏ ପ୍ରତିବିମ୍ବ ଛଳନା କି ପ୍ରତାରଣାର ନୁହେଁ, ନୁହେଁ ମଧ୍ୟ ପ୍ରତ୍ୟାଶାର ବା ଯନ୍ତ୍ରଣାର । ଏ ଯେ ମମତାର, ପ୍ରତୀତିର, ସାନ୍ତ୍ୱନାର । ଏହାର ଅନୁଭବ ବିନ୍ଦୁପରି କ୍ଷୁଦ୍ର ନୁହେଁ, ସିନ୍ଧୁ ପରି ବିସ୍ତାରିତ ଓ ଗଭୀର । ମାଉସୀର ଏଇ ଶାଶ୍ୱତ ପ୍ରତିବିମ୍ବ ଦେହରେ ମୋର ସନ୍ଦେହ ଆଘାତ ପାଇ ପ୍ରତିହତ ହୋଇଗଲା ।

ବୁଢ଼ୀ ମାଉସୀଙ୍କ ପାଖରୁ ଟଙ୍କା ନ ନେଇ ନିଜ ଟଙ୍କାରେ ଟିକେଟ୍ କରିଦେବି ବୋଲି ଚିନ୍ତା କଲି । କିନ୍ତୁ ତାହା କରିବାକୁ ସାହସ କରିପାରିଲି ନାହିଁ । ଅତି ଛୋଟ ମନେକଲି ନିଜକୁ ସେଇ ପ୍ରତିବିମ୍ବ ପାଖରେ । ଯେଉଁ ବୁଢ଼ୀ କାହାକୁ ନ କହି, କାହାର ଆର୍ଥିକ ସାହାଯ୍ୟ ନ ନେଇ ଛେଳି ବିକା ଟଙ୍କା ସାଇତି ରଖି ପରିବାରକୁ ପଛରେ ପକାଇ ଜଗାକୁ ଦେଖିବାକୁ ଏକା ଏକା ସାହସ ବାନ୍ଧି ଲୁଚିକି ଆସିଛି, ସେ ବୁଢ଼ୀ କ'ଣ କେବେ ନିଜର ପୁଣ୍ୟବୋଧକୁ ଆଘାତ ଦେଇ ପରପଇସା ଗ୍ରହଣ କରି, ପରଦୟାରେ ନିଜର ପ୍ରିୟ ଜଗାକୁ ଦେଖିବାକୁ ଯାଇପାରେ । ନିଜ ତରଫରୁ ଟିକେଟ୍‌ଟା କରିଦେଲେ ବୁଢ଼ୀ ଆଘାତ ପାଇବ ନିଶ୍ଚୟ ।

ଟିକେଟ୍ ପାଇଁ କଣ୍ଡକ୍ଟରକୁ ମୁଣିରୁ ଟଙ୍କା କାଢ଼ି ଉଚିତ୍ ଦାମ୍ ଦେଇ କନାମୁଣିକୁ ପୂର୍ବବତ୍ ବାନ୍ଧି ବୁଢ଼ୀ ହାତକୁ ଫେରାଇ ଦେଲି । ସଯତ୍ନରେ ବାନ୍ଧିବୁନ୍ଧି ବୁଢ଼ୀ କନାମୁଣିଟିକୁ ଅଣ୍ଟାରେ ଗୁଞ୍ଜିଦେଲା । ଟିକେଟ୍ ପାଇଁ କେତେ ଟଙ୍କା ପଡ଼ିଲା, କେତେ ଫେରିଲା, କୌଣସି କଥାରେ ବୁଢ଼ୀ ଆଗ୍ରହ ଦେଖାଇଲାନି । ମୋ' ଉପରେ ଯେପରି ବୁଢ଼ୀର ଅତୁଟ ବିଶ୍ୱାସ ।

ନ୍ୟୂନବୋଧରୁ ମୁକ୍ତି ପାଇବା ପାଇଁ ମୁଁ ଆଉ ଏକ ଉପାୟ ଚିନ୍ତା କଲି । -
"ମାଉସୀ ! ଭୋକ ଲାଗିବଣି ଚାଲ ଖାଇନେବା ।"

'ନା-ନା'ରେ ପୁଅ, ମୁଁ ଆଜି ଜଗାକୁ ନ ଦେଖିଲେ କିଛି ଖାଇବିନି । ପୁରା ନିର୍ଜ୍ଜଳା ଉପବାସ । ଠାକୁର ଦର୍ଶନ କରି ଠାକୁର ଭୋଗ ଖାଇବି । କାଲି ସକାଳୁ ମହୋଦଧିରେ ସିନାନ କରି ଚୁଡ଼ାଗୁଡ଼ ଖାଇ ଘରକୁ ଫେରିବି । ମୁଁ ଘରୁ ଚୁଡ଼ାଗୁଡ଼ ବାନ୍ଧିକି ଆଣିଚି ।"

ମାଉସୀ ଏକାଥରକେ କହି ପକାଇଲା । ତା' ପାଇଁ କିଛି ପଇସା ଖର୍ଚ୍ଚ କରି ପାରିଥିଲେ ମୋର ଆତ୍ମଗ୍ଲାନି କିଛି କମ୍ ହୋଇଯାଇପାରିଥାନ୍ତା । କିନ୍ତୁ ତାହା ହୋଇପାରିଲା ନାହିଁ । ବରଂ ମୋର ସଙ୍କୁଚିତ ବ୍ୟକ୍ତିତ୍ୱ ଏହି ସରଳ, ନିଷ୍କପଟ ବ୍ୟକ୍ତିତ୍ୱର ଅଧିକାରିଣୀ ବୁଢ଼ୀଟି ପାଖରେ ଅଧିକ ସଙ୍କୁଚିତ ହୋଇଗଲା । ଲଜ୍ଜାରେ ଝାଉଁଳି ଯାଇ ମଳିନ ମୁଖରେ ବୁଢ଼ୀଟିର ହାତ ଧରି ନେଇ ବସ୍‌ରେ ବସାଇଦେଲି ।

ବୁଢ଼ୀରୁ ବୁଢ଼ୀ ମାଉସୀ ଓ ବୁଢ଼ୀ ମାଉସୀରୁ ମାଆ ସ୍ଥାନରେ ଅଧିଷ୍ଠିତା ହୋଇସାରିଥିବା ଏହି ମହୀୟସୀ ପ୍ରତିବିମ୍ବ ସମ୍ମୁଖରେ ଦଣ୍ଡାୟମାନ ହୋଇ ଅପରାଧବୋଧର କଳଙ୍କରେ ଜର୍ଜରିତ ହୋଇଯାଉଥିଲି ମୁଁ । ଅସଂଖ୍ୟ ଗ୍ଲାନିବୋଧର କାଳିମାରେ ଉବୁଟୁବୁ ହୋଇ ନିଜକୁ ଦୂରେଇ ନେବା ଲାଗି ବ୍ୟାକୁଳ ହେଉଥିଲି । ମାଉସୀକୁ ଗଭୀର ଶ୍ରଦ୍ଧା ଓ ଭକ୍ତିର ସହ ପ୍ରଣାମ ଜଣାଇଁ ମୁଁ ଫେରି ଆସୁଥିଲି । ପଛରୁ ଡାକ ଶୁଭିଲା-

"ପୁଅ, ଏ ପୁଅ ! ଟିକେ ଶୁଣିଯା ।"

ବାଧ୍ୟ ଶିଶୁଟି ପରି ଫେରି ଜିଜ୍ଞାସୁ ଦୃଷ୍ଟିରେ ଚାହିଁ ରହିଲି ମାଉସୀ ମୁହଁକୁ । ମୋ' ମୁଣ୍ଡ ଉପରେ କରୁଣାର ହାତ ରଖି ମାଉସୀ ଅବାରିତ ଆଶୀର୍ବାଦ ଲହର ଛୁଟାଇ କହିପକାଇଲା-

-"ଜଗା ତତେ ସହାୟ ହେଉରେ ପୁଅ, କୋଟି ପରମାୟୁ ହେଉ ତୋ'ର । ପିଲାଛୁଆ ଧରି ସୁଖରେ ଘର ଦୁଆର କରି ରହ ।"

ବୁଢ଼ୀର କଥା ଶୁଣି ମୋ' ଆଖି ଲୁହରେ ଭରିଗଲା । ଲୁହ ଡବଡବ ଆଖିରେ ମୁଁ ଦୂରକୁ ଚାହିଁ ରହିଥିଲି । ମୁଁ ଅନୁଭବ କରିପାରୁଥିଲି, ମାଉସୀ ମୋର ଜଗତର ନାଥ ଜଗନ୍ନାଥଙ୍କର ଅବିକଳ ପ୍ରତିବିମ୍ବ । ତା' ହାତର ସ୍ପର୍ଶରେ ଆତ୍ମହରା ହୋଇଗଲି ମୁଁ । ତା'ର ସ୍ୱର୍ଗୀୟ ଆଶୀର୍ବାଦରେ ସଂପୂର୍ଣ୍ଣ ଅଭିଭୂତ ହୋଇଗଲି । ଏଇ ମାତୃ ରୂପଟି ତାଙ୍କର କ'ଣ କେବେ ଛଳନା କରିପାରେ ? ତା' ପାଖରେ ମୁଁ ତ ଅବୋଧ ଶିଶୁଟିଏ । ମୋ' ଆଖିରେ ସେ ଚିର ନମସ୍ୟା ମାଆ, ଯେପରି ଚିର ନମସ୍ୟ ଜଗତ୍‌ପିତା ଜଗନ୍ନାଥ । ଏହି ମାଆ-ପୁଅ ବନ୍ଧନରେ ହତବାକ୍ ଓ ହତଜ୍ଞାନ ହୋଇ ମୁଁ ପଥର ମୂର୍ତ୍ତି ଭଳି ଛିଡ଼ା ହୋଇ ରହିଗଲି । କିଛିକ୍ଷଣ ପାଇଁ ।

ପୁରୀ ବସ୍ ଛାଡ଼ି ଦେଲାଣି । ସାମ୍ନା ମୋଡ଼ରେ ଆଖିରୁ ଲୁଚିଗଲା ବସ୍ । ପରମ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଲି । ଗଭୀର ଭକ୍ତିରେ ପ୍ରଣିପାତ ଜଣାଇ ନିଜର ଅଜାଣତରେ ସ୍ୱଗତୋକ୍ତି କରିଥିଲି- "ହେ ପ୍ରଭୁ ଜଗନ୍ନାଥ, ମାଆ ମୋର ଏକା ଯାଉଛି ତୁମକୁ ରଥରେ ଦର୍ଶନ କରିବା ପାଇଁ । ମୋର ଏଇ ଏକାନ୍ତ ଆପଣାର ବୁଢ଼ୀ ମାଆଟିକୁ ଭଲରେ ଭଲରେ ଦର୍ଶନ ଦେଇ ନିରାପଦରେ ଘରକୁ ଫେରାଇ ଦେବୁ ।" ଲୋତକର ବନ୍ୟାରେ ଚାରିଆଡ଼େ ଝାପ୍‌ସା ଦେଖା ଯାଉଥିଲା ମୋତେ ।

ପଦାର୍ଥ ବିଜ୍ଞାନ ପ୍ରଫେସର ନିରଞ୍ଜନ ବାରିକଙ୍କର ଅନୁଭୂତିର ରୂପାନ୍ତର :

ଶ୍ରୀଜଗନ୍ନାଥ, ଜାନୁଆରୀ ୨୦୧୦



# ଏକ ଅମୃତମୟ ମୁହୂର୍ତ୍ତ

ସେଦିନ ଥିଲା ଗୁଣ୍ଡିଚା ଯାତ୍ରା । ୨୦୦୧ ମସିହା । ସ୍ନାନ ପୂର୍ଣ୍ଣମୀରେ ସିଙ୍ଗିବୁଡ଼ା ଦେଇ, ଅଣସର ଘରେ କମ୍ପ ଜ୍ୱରରେ ମାସେ କାଳ ପ୍ରପୀଡ଼ିତ ହୋଇ, ସେବାୟତମାନଙ୍କ ସେବା ଶୁଶ୍ରୂଷାରେ ସଦ୍ୟ ସୁସ୍ଥ ଅବସ୍ଥାପ୍ରାପ୍ତ, ନୂଆ ରଙ୍ଗରେ ରଙ୍ଗାୟିତ, ନୂତନ ପରିଧାନରେ ସୁଶୋଭିତ, ଗଜରା ମାଳରେ ସୁସଜ୍ଜିତ ଓ ଉତ୍‌ଫୁଲ୍ଲ ମନରେ ଉପବିଷ୍ଟ ତିନି ଠାକୁର, ତିନୋଟି ରଥରେ ନୁହେଁ, ମାତ୍ର ଗୋଟିଏ ରଥରେ, ଜାକିଜୁକି ହୋଇ ଦୁଇଭାଇ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ ଓ ମଝିରେ ଅଲିଅଳି ସାନ ଭଉଣୀ ସୁଭଦ୍ରା ।

ଏହି ରଥରେ ଛେରାପହଁରା କରିବାପାଇଁ ପାଟଧୋତି, ଚାଦର ଓ ରାଜା ମୁକୁଟ ପିନ୍ଧି ଠାକୁରଙ୍କ ରଥ ଉପରେ, ଠାକୁରଙ୍କ ସମ୍ମୁଖରେ ଦଣ୍ଡାୟମାନ ଏକ ବ୍ୟକ୍ତି ଅଜଣା, ଅଶୁଣା ଅତି ନଗଣ୍ୟ ସେବକ ରାଜାର ଅଭିନୟ ପୋଷାକରେ - ଏ ବ୍ୟକ୍ତି ଆଉ କେହି ନୁହେଁ - ଖୋଦ୍ ମୁଁ । କେବେ ବିଶ୍ୱାସ କରି ପାରୁନାହିଁ, ସତ ଠାକୁରଙ୍କ ଆଗରେ ଏକ ମିଛ ରାଜା ଭୂମିକାରେ ମୁଁ ଅବତୀର୍ଣ୍ଣ ସହସ୍ର ଭକ୍ତମାନଙ୍କ ଗହଣରେ ।

ହୁଳହୁଳି ଓ ହରିବୋଲ ସହସ୍ର ନାଦରେ ଗଗନ ପବନ ପ୍ରକମ୍ପିତ । ମୋ' ଜୀବନରେ ଭଗବାନ ପୁରୁଷୋତ୍ତମ, ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ସହିତ ଏହି ଭାବମୟ, ଅମୃତମୟ, ମଧୁମୟ ଅମୂର୍ତ୍ତ ମୁହୂର୍ତ୍ତ ଚିରସ୍ମରଣୀୟ ତଥା ଅବିସ୍ମରଣୀୟ । ମୋ' ପାଇଁ ଏହି ଅପୂର୍ବ ସୁଯୋଗ ସଂଗଠିତ ହୋଇଥିଲା ବାଣୀବିହାର ପରିସରରେ । ବାଣୀବିହାର ଦାଣ୍ଡରେ ତିନି ଠାକୁରଙ୍କ ରଥ ଓ ରଥ ଉପରେ ପ୍ରଭୁଙ୍କ ସମ୍ମୁଖରେ ଝାଡୁ ହାତରେ ଧରି, ଛେରାପହଁରା କରିବା ପାଇଁ ପ୍ରଭୁଙ୍କ ଆଜ୍ଞାକୁ ଚାତକଭଳି ଚାହିଁ ରହିଥିବା ମୋ ଭଳି ଏକ ଅକିଞ୍ଚନ ବ୍ୟକ୍ତି ।

ବାଣୀବିହାର - ଶିକ୍ଷକ, କର୍ମଚାରୀ, ସେମାନଙ୍କର ପରିବାର ଓ ଛାତ୍ରଛାତ୍ରୀମାନଙ୍କ ଗହଣରେ ବାଣୀବିହାର ସର୍ବଦା ଭରପୂର, ଜୀବନ୍ତ ଓ କର୍ମ ମୁଖର । ଏହାର ସାଂସ୍କୃତିକ ବାତାବରଣ ସ୍ୱତନ୍ତ୍ର ଓ ବଳିଷ୍ଠ । କ୍ୟାମ୍ପସ୍ ଗଢ଼ିଉଠିବା ଦିନଠାରୁ ଏକ ଅସ୍ଥାୟୀ ଗୃହରେ ପୂଜା ପାଉଥିଲେ ଶ୍ରୀ ବିଶ୍ୱେଶ୍ୱର । ଏହି ମନ୍ଦିରଟି ବିଶ୍ୱେଶ୍ୱର ମନ୍ଦିର ରୂପେ ବିଦିତ ।

ବାଣୀବିହାର କେନ୍ଦ୍ର ସ୍ଥଳରେ ତାଳପଦେଶ୍ୱରୀ ଠାକୁରାଣୀ । ଏହାପରେ ଆଉ ତିନୋଟି ମନ୍ଦିର ନିର୍ମାଣ ହୋଇଛି – ରାମମନ୍ଦିର, ତ୍ରିନାଥ ମନ୍ଦିର ଓ ନୂଆ କଲୋନିରେ କେଦାରେଶ୍ୱର ମନ୍ଦିର । ବିଭିନ୍ନ ମନ୍ଦିରକୁ କେନ୍ଦ୍ରକରି ବିଭିନ୍ନ ପ୍ରକାରର ସାଂସ୍କୃତିକ କାର୍ଯ୍ୟକ୍ରମ ହୁଏ । ମଧ୍ୟସ୍ଥଳରେ ଥିବା ପାଣିଟାଙ୍କି ଏରିଆ ପ୍ରାୟ ବାଣୀବିହାର ସାଂସ୍କୃତିକ କାର୍ଯ୍ୟକ୍ରମର ପେଣ୍ଠସ୍ଥଳୀ । ସେଠାରେ ଦୁର୍ଗାପୂଜା, ଲକ୍ଷ୍ମୀପୂଜା ଓ କାଳୀପୂଜା ହୁଏ । ଗୀତିନାଟ୍ୟ, ଅପେରା, ପାଲା, ଭଜନ ସମାରୋହ ବାଣୀବିହାର ପରିସରକୁ ସରସ, ମଧୁର କରି ତୋଳିଥାଏ । ଅନେକ ଉଚ୍ଚକୋଟିର କଳାକାର ଏହି ପରିବେଶକୁ ଅଧିକ ଆକର୍ଷଣୀୟ କରିଥାଆନ୍ତି ।

ବାଣୀବିହାରରେ ମୁଖ୍ୟ ମନ୍ଦିର ବିଶ୍ୱେଶ୍ୱରଙ୍କର । ଏହି ପରିସରରେ କାଳକ୍ରମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଅଧିଷ୍ଠିତ ହେଲେ । ହଠାତ୍ ଦିନେ ତୋଫାନ୍ ବେଗରେ ପ୍ରବେଶ କଲେ ହନୁମାନ, ବିଶ୍ୱେଶ୍ୱର ମନ୍ଦିର ପରିସର ମଧ୍ୟରେ । ବିଷ୍ଣୁ ଓ ମହେଶ୍ୱରଙ୍କ ସଂପର୍କ ଅତି ନିଗୂଢ଼ ଏବଂ ଭଗବାନ ଓ ହନୁମାନଙ୍କ ସଂପର୍କ ଆହୁରି ନିବିଡ଼ । ବାଣୀବିହାରର ସବୁ ପର୍ବପର୍ବାଣି, ନିର୍ବନ୍ଧ, ସାବିତ୍ରୀପୂଜା ପ୍ରଭୃତି ବିଭିନ୍ନ ପୂଜାର୍ଚ୍ଚନା ଏହି ମନ୍ଦିର ପ୍ରାଙ୍ଗଣରେ ଅନୁଷ୍ଠିତ ହୁଏ । ମନ୍ଦିର ହତା ମଧ୍ୟରେ ଅନେକ ଗୁଡ଼ିଏ ଝଙ୍କାଳିଆ ବୃକ୍ଷର ସମାବେଶ ପରିବେଶକୁ ଅଧିକ ସୁନ୍ଦର କରିଥାଏ । ସନ୍ଧ୍ୟାରେ ଓ ନିଦାଘର ମଧ୍ୟାହ୍ନରେ ଅନେକ ବୟସ୍କ ବ୍ୟକ୍ତି ବୃକ୍ଷର ଘଞ୍ଚ ଛାୟାତଳେ ବସି ଗପସପ ହୁଅନ୍ତି ।

ବିଶ୍ୱେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଏକ ଉଚ୍ଚ ପରିକଳ୍ପନାର ମନ୍ଦିର ନିର୍ମାଣ ପାଇଁ ଶୁଭ ଦେଇଥିଲେ ପୁରୀର ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବ । କିନ୍ତୁ ମନ୍ଦିରର ଅନେକ ଅଗ୍ରଗତି ସତ୍ତ୍ୱେ ମଧ୍ୟ ନିର୍ମାଣ କାର୍ଯ୍ୟ ବର୍ତ୍ତମାନ ସୁଦ୍ଧା ଅସମ୍ପୂର୍ଣ୍ଣ ।

ବାଣୀବିହାରରେ ରଥଯାତ୍ରା ଅନେକ ଦିନରୁ ଆରମ୍ଭ ହେଲାଣି । ଠାକୁରଙ୍କ ଆଗରେ ଛେରାପହଁରା କରନ୍ତି ଭୂଗୋଳ ବିଭାଗର ପ୍ରଫେସର୍ ରାଜବଂଶୀୟ ଡକ୍ଟର ଦିବ୍ୟକିଶୋର ସିଂହ । କିନ୍ତୁ ମୁଁ ଯେଉଁ ଅମଳର କଥା କହୁଛି ସେହି ସମୟରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି । ଦିବ୍ୟ କିଶୋର ବାବୁ ଓ ତାଙ୍କ ସ୍ତ୍ରୀ ବିଜୟ ଲକ୍ଷ୍ମୀ ସିଂହ ଅବସର ପ୍ରାପ୍ତ । ଅବସର ଗ୍ରହଣ ପରେ ମଧ୍ୟ ଦିବ୍ୟକିଶୋର ବାବୁ ପ୍ରଭୁଙ୍କ ରଥରେ ଛେରାପହଁରା କରୁଥିଲେ । ସ୍ତ୍ରୀଙ୍କ ବିୟୋଗର ଏକବର୍ଷ ପୂର୍ଣ୍ଣ ହୋଇନଥିବାରୁ ସେହିବର୍ଷ ଦିବ୍ୟକିଶୋର ବାବୁ ଛେରାପହଁରା ଭଳି ଶୁଭକାର୍ଯ୍ୟ କରିବାକୁ ରାଜି ହେଲେ ନାହିଁ ।

ରଥ ଯାତ୍ରାରେ ଠାକୁରଙ୍କ ଆଗରେ ଛେରାପହଁରା କରିବାପାଇଁ ରାଜାଙ୍କର ଅନ୍ୱେଷଣ ଚାଲିଛି । ଏହି ପରିପ୍ରେକ୍ଷୀରେ ଏକ ପ୍ରସ୍ତାବ କୁଳପତିମାନଙ୍କ ଦ୍ୱାରା

ଛେରାପହଁରା କାର୍ଯ୍ୟ କରାଇବାର ଏକ ପରଂପରା ସୃଷ୍ଟି କରାଇବା । ଏହି ଅନ୍ୱେଷଣରେ ମୁଁ ଧରାପଡ଼ିଗଲି । ପ୍ରଥମରୁ ମୁଁ ଏ କଥାର ବିରୋଧ କରୁଥିଲି । ମୋର ମତ ଥିଲା ପ୍ରତିବର୍ଷ ଭଳି ଦିବ୍ୟସିଂହ ବାବୁ ଛେରାପହଁରା କରନ୍ତୁ । କିନ୍ତୁ ତାଙ୍କର ଛେରାପହଁରା ନ କରି ପାରିବାର ପ୍ରକୃତ କାରଣ ଜାଣିବା ପରେ ମୋତେ ମନା କରିବାର କୌଣସି କାରଣ ଖୋଜି ପାଇଲି ନାହିଁ । ଏହାହିଁ ବୋଧହୁଏ ବିଧିର ନିର୍ଦ୍ଦେଶ ଥିଲା ।

ତଥାପି ପ୍ରଶ୍ନ ଉଠିଥିଲା, କୁଳପତି ଯଦି ମହିଳା ହୋଇଥିବେ କିମ୍ବା ଅନ୍ୟ କେଉଁ ଧର୍ମର କୁଳପତି ନିର୍ବାଚିତ ହେବେ ଛେରାପହଁରା ଦାୟିତ୍ୱ କିଏ ତୁଲାଇବ । ଏ ପ୍ରଶ୍ନର ଉତ୍ତର ଥିଲା ଯଦି ଏ ପ୍ରକାର ପରିସ୍ଥିତି ଉପୁଜେ ଅଧିବାସୀମାନେ ଏକ ସୁଚିନ୍ତିତ ପନ୍ଥା ନିରୂପଣ କରିବେ ।

ଶେଷରେ ମୁଁ ଅତି ସଂଭ୍ରମତା ସହିତ କଳା ଠାକୁରଙ୍କ ଇଚ୍ଛାକୁ ସମ୍ମାନ ଜଣାଇ ଛେରାପହଁରା କରିବାକୁ ରାଜି ହେଲି । ଏଇଥିପାଇଁ ଯେ ଆମ ଘରର ଇଷ୍ଟ ଦେବତା ଭଗବତ ଗୋସାଇଁ ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥ । ଭିନ୍ନ ଏକ ଭୂମିକାରେ ତାଙ୍କର ସେବା, ଆନନ୍ଦିତ ମଧ ହେଲି । ମୋ ଭଳି ତୁଚ୍ଛ, ନଗଣ୍ୟ, ଅକିଞ୍ଚନ ବ୍ୟକ୍ତି ହସ୍ତରେ ଏତେ ବଡ଼ ଶୁଭକାର୍ଯ୍ୟ ସମାପନ ହେବ ଏହା ମୋର କଳ୍ପନାର ବାହାରେ ଥିଲା । ପ୍ରଭୁ ଜଗନ୍ନାଥଙ୍କର ମୋ' ଉପରେ ଅପାର କରୁଣା ଭାବି ତାଙ୍କ ଉଦ୍ଦେଶ୍ୟରେ ମଥା ନୁଆଁଇଲି ଓ ସେହି ପବିତ୍ର ମୁହୂର୍ତ୍ତକୁ ଅତ୍ୟନ୍ତ ଉତ୍କଣ୍ଠାର ସହ ଅପେକ୍ଷା କରି ରହିଲି ।

ମୋ' ମନ ଭିତରେ ପୁରୀରାଜାଙ୍କ ପଟ୍ଟଚିତ୍ର ଆଙ୍କି ହୋଇଗଲା । ତିନି ଠାକୁରଙ୍କ ଆଗରେ ହାତରେ ଝାଡୁଧରି ରାଜା ଛେରାପହଁରା କରୁଥିବା ଦୃଶ୍ୟରେ ମୁଁ ବିମୁଗ୍ଧ ହୋଇଯାଉଥିଲି । ଲକ୍ଷ ଲକ୍ଷ ଭକ୍ତଙ୍କ କରତାଳିରେ ବଡ଼ଦାଣ୍ଡ ଉଛୁଳି ଉଠୁଥିବ । ହୁଳହୁଳି, ହରିବୋଲ ନାଦ ଓ ଭକ୍ତି ସଂଗୀତର ଲହରୀରେ କମ୍ପି ଉଠୁଥିବ ପୁରୀର ବଡ଼ଦାଣ୍ଡ ତଥା ଗଗନ ପବନ । ପ୍ରକୃତ ଭକ୍ତଟିଏ ସେହି ପରିବେଶରେ ଏକ ଆତ୍ମହରା ସମର୍ପିତ ସେବକ ।

ମନେ ପଡ଼ିଗଲା ସଂସ୍କୃତ ବିଶ୍ୱବିଦ୍ୟାଳୟର ଏକ କାର୍ଯ୍ୟକ୍ରମରେ ପୁରୀରାଜାଙ୍କ ସହିତ ମୋର ଭେଟ । ମୁଁ ତାଙ୍କୁ ମୋ ଭାଷଣ ମାଧ୍ୟମରେ ମୋ ମନରେ ଉଙ୍କିମାରୁଥିବା କଥାଟି କହିଲି- "ଆପଣ ତ ଓଡ଼ିଶାବାସୀଙ୍କ ରାଜା - ଜଗନ୍ନାଥ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା । ମୁଁ ଯେଉଁ ପ୍ରଶ୍ନ ଜଗନ୍ନାଥଙ୍କୁ ପଚାରିବାକୁ ମନସ୍ଥ କରିଥିଲି, ଆପଣଙ୍କୁ ସେହି ପ୍ରଶ୍ନ ପଚାରି ପାରେକି ?"

ସେ ଅଳ୍ପହସି କହିଲେ- "ହଁ, ପଚାରନ୍ତୁ ।"

କହିଲି - ମୁଁ ଠାକୁରଙ୍କର ପୃଥିବୀ ପ୍ରସିଦ୍ଧ ପହଣ୍ଡିବିଜେ ଦେଖିନାହିଁ । ଅତ୍ୟନ୍ତ ମନଲୋଭା ଢଳି ଢଳି ଝୁଲି ଝୁଲି ଚାଲିବାର ଭଙ୍ଗୀ ତାଙ୍କର ସ୍ୱତନ୍ତ୍ର । ଲକ୍ଷ ଲକ୍ଷ ଭକ୍ତ ସେହି ଦୃଶ୍ୟକୁ ଦେଖିବାକୁ ଯୋଜନ ଯୋଜନ ଦୂରରୁ ଆସି ଅପେକ୍ଷାରତ । ଯଦିଓ ମୁଁ ବାହୁଡ଼ାବିଜେ ଦେଖିଛି, ଶ୍ରୀଗୁଣ୍ଡିଚା ଦିନ ପହଣ୍ଡିବିଜେ ଦେଖିବାକୁ ଖବରକାଗଜରେ ପ୍ରକାଶିତ ନିର୍ଧାର୍ଯ୍ୟ ସମୟକୁ ଲକ୍ଷ୍ୟରଖି ଭୁବନେଶ୍ୱରରୁ ଠିକ୍ ସମୟରେ ବାହାରିଲୁ । ମୁଁ - ମୋ' ପରିବାର, କୁଳପତିଙ୍କ ଅଫିସ୍‌ର ଈଶ୍ୱର ଓ ଡ୍ରାଇଭର୍ ଗଦା । ଏକ ମୁହାଁ ହୋଇ ବହୁଭିଡ଼ ଅତିକ୍ରମ କରି ସଂରକ୍ଷିତ ଆସନରେ ବସିପଡ଼ିଲୁ । ରଥ ଆଡ଼କୁ ଚାହିଁଲା ବେଳକୁ ଦେଖିଲୁ ତିନି ଠାକୁର ପହଣ୍ଡି ସାରି ନିଜ ନିଜ ରଥରେ ବସି ସାରିଲେଣି । ମନ ଆମର ବହୁତ ଦୁଃଖ ହେଲା । ଜଗନ୍ନାଥଙ୍କ ଉପରେ ବହୁତ ଅଭିମାନ ହେଲା; ରାଗ ବି ହେଲା । କୈଫିୟତ ମାଗିବାକୁ ଇଚ୍ଛା ହେଉଥିଲା । ଭାବିଲୁ, ଘରରୁ ଉଠି ଆସିଛନ୍ତି - ଢଳି ଢଳି, ଚାଲି ଚାଲି ଦେହରେ ବଳ ନ ଥିବ - କେତେ କେତେ ଭକ୍ତଙ୍କର କେତେ କେତେ ପୁଞ୍ଜିଭୂତ ଗୁହାରୀ ଶୁଣି ଚାଲିଥିବେ - ଆମେ କାହିଁକି ଆମର ସ୍ୱାର୍ଥକୁ ଆଖିରେ ରଖି ତାଙ୍କୁ ପ୍ରଶ୍ନ କରିବା ?

"ତାଙ୍କୁ ତ ପ୍ରଶ୍ନ କରିହେଲା ନାହିଁ; ଆପଣ ତ ତାଙ୍କର ଚଳନ୍ତି ପ୍ରତିମା; ଆପଣ କହନ୍ତୁ ।"

ସ୍ମିତ ହସି ସେ ଉତ୍ତର ଦେଲେ- "ହଉ ତାହାହେଲେ ଆପଣଙ୍କ ତରଫରୁ ଠାକୁରଙ୍କୁ ମୁଁ ପଚାରି ଦେବି"-

ବେଶ୍ ଭଲ ଲାଗିଥିଲା ସେଦିନ ଗଜପତିଙ୍କର ସେ ସରଳ ଉତ୍ତର ।

ସୁରେନ୍ଦ୍ର ବାବୁଙ୍କ ଉପସ୍ଥିତିରେ ମୁଁ ପ୍ରକୃତିସ୍ଥ ହେଲି । ସେ ସୂଚାଇ ଦେଲେ ଯେ ଛେରାପହଁରା ସମୟ ଆସନ୍ନ ପ୍ରାୟ । ସୁରେନ୍ଦ୍ର ବାବୁ ବାଣୀବିହାରର Socio Cultural Association ର ସେକ୍ରେଟାରୀ ତାଙ୍କ କାର୍ଯ୍ୟସୂଚୀ ଅନୁସାରେ ମୁଁ ଆମ ଘରେ ପୂଜା ପାଉଥିବା ତିନିଠାକୁରଙ୍କ ସାମ୍ନାରେ ରାଜାବେଶ ହୋଇ ପୂଜା ଅର୍ଚ୍ଚନା କଲି । ଭି.ସି. କୋଠିର ତଳ ମହଲାରେ ଭେରୀତୁରୀ, ମହୁରୀ, ଢୋଲ ଇତ୍ୟାଦି ନାନାଦି ବାଦ୍ୟର ମଧୁର ଝଙ୍କାର । ମୋତେ ଢୋଲ, ମହୁରୀ ଟିକେ ଅଡୁଆ ଲାଗିଲା । ମୋ' ବାହାଘରରେ ତ ମୁଁ ବାଜା ରୋଷଣୀରେ ଯାଇ ପାରିଲି ନାହିଁ - ଏବେ କ'ଣ ଏତେ ଆଡମ୍ବରରେ ଯିବା ଶୋଭା ପାଉଛି । ସୁରେନ୍ଦ୍ରବାବୁ କହିଲେ- "ଏ ଆଡମ୍ବର ଆପଣଙ୍କ ପାଇଁ ନୁହେଁ - ଏହା କଳା ଠାକୁରଙ୍କ ରାଜାଙ୍କ ପାଇଁ"-

ମୁଁ ବାହାରିଲି ପାଲିଙ୍କିରେ ନୁହେଁ, ଭି.ସି.ଙ୍କ ଗାଡ଼ିରେ, ବାଦ୍ୟ ଓ ମନ୍ତ୍ର ଉଚ୍ଚାରଣ ସାଥିରେ । ରଥ ଉପରକୁ ଉଠି ପ୍ରଥମେ ସମବେତ ଜନତାଙ୍କ କଣ୍ଠନିଃସୃତ ହରିବୋଲ ଓ ହୁଳହୁଳି ନାଦର ପ୍ରତିଦାନରେ ଜନତାଙ୍କ ଉଦ୍ଦେଶ୍ୟରେ ନମସ୍କାର ଜଣାଇଲି । ତିନି ଠାକୁରଙ୍କୁ ପୂଜାର୍ଚ୍ଚନା କରି ଛେରାପହଁରା କାର୍ଯ୍ୟ ଆରମ୍ଭ କଲି ।

ଦେହରେ ମୋର ଅପୂର୍ବ ଶିହରଣ, ଅଜଣା କଂପନ । ମୋ' ଭଳି ଜଣେ ତୁଚ୍ଛ ବ୍ୟକ୍ତି ପ୍ରଭୁଙ୍କ ସାମ୍ନାରେ ଛିଡ଼ାହୋଇ ଛେରାପହଁରା କରୁଛି ମୋତେ ସ୍ୱପ୍ନଭଳି ପ୍ରତୀୟମାନ ହେଲା । ଆତ୍ମ ବିସ୍ମୃତିରେ ମଗ୍ନ ହୋଇ ଯାଇଥିଲି ମୁଁ । ଏହି ଅବର୍ଣ୍ଣନୀୟ ମୁହୂର୍ତ୍ତରେ ମୋ ସହିତ ଠାକୁର ଓ ଜନତାର ମଧୁର ସମନ୍ୱୟ - ଭାବପୂର୍ଣ୍ଣ ପରିବେଶ । ଏମିତି ଏକ ଭାବପୂର୍ଣ୍ଣ ମୁହୂର୍ତ୍ତରେ ଛେରାପହଁରା କାର୍ଯ୍ୟ ସମାପନ ହେଲା ।

ମାଉସୀ ମା' ଘରୁ ତିନି ଠାକୁର ଫେରି ନିଶ୍ଚୟ ଆଶ୍ଚର୍ଯ୍ୟ ହୋଇଥିବେ ଯେ ଏହା ମଧ୍ୟରେ ସେ ବାସଚ୍ୟୁତ ହୋଇ ଯାଇଛନ୍ତି । ବିଶ୍ୱେଶ୍ୱର ମହାଯୋଗୀ । ନିରୋଳା ପରିବେଶ ତାଙ୍କର ପସନ୍ଦ । ଜଗନ୍ନାଥ ମହାଭୋଗୀ । ବାରମାସରେ ତେର ପର୍ବ । ଭକ୍ତମାନଙ୍କର ଅହରହ ଭିଡ଼ । ପ୍ରତ୍ୟେକ ରାତ୍ରିର ଗଭୀର ପ୍ରହରରେ ନୃତ୍ୟ ଗୀତର ଆସର । ପୁଣି ଅଣସର ଘରେ ଏକାନ୍ତ ଅବସ୍ଥା । ତେଣୁ ବିଶ୍ୱେଶ୍ୱରଙ୍କ ଠାରୁ ଭାଇଭଉଣୀ ତିନିଜଣଙ୍କୁ ଅଲଗା କରିବାର ଆବଶ୍ୟକତା ବାଣୀବିହାର ଭକ୍ତମାନେ ଅନୁଭବ କରିଥିଲେ । ବଡ଼ ମନ୍ଦିର ଯେବେ ହେଉଛି ହେଉ କିନ୍ତୁ ବର୍ତ୍ତମାନ ତାଙ୍କ ପାଇଁ ନିର୍ଦ୍ଧାରିତ ତଳ ମହଲାକୁ ବାସପୋଯୋଗୀ କରାଯାଇ ତାଙ୍କୁ ସେଇଠିକୁ ନେଇଗଲେ କେମିତି ହୁଅନ୍ତା । ଏକଥା ସମସ୍ତଙ୍କ ମନକୁ ପାଇଲା ଓ ଏହା କାର୍ଯ୍ୟକାରୀ ହେଲା ।

ତିନି ଠାକୁର ତାଙ୍କର ପୁରାତନ ଗୃହରୁ ଘୋଷଯାତ୍ରା ଆରମ୍ଭ କଲେ - ଆଉ ବାହୁଡ଼ିଲେ ତାଙ୍କର ନୂତନ ଗୃହକୁ । ନୂଆଘର ଅସ୍ଥାୟୀ ହେଲେ ମଧ୍ୟ ମୋତେ ବହୁତ ଭଲ ଲାଗୁଥିଲା ଓ ସେଠାରେ ଅନେକ ଭଜନ କାର୍ଯ୍ୟକ୍ରମରେ ଯୋଗ ଦେବାର ସୌଭାଗ୍ୟ ଅର୍ଜ୍ଜନ କରିଥିଲି । ମୋର ବାଣୀବିହାରରୁ ବିଦାୟ ନେବାର ସମୟ ହୋଇ ଯାଇଥିଲା । ସେହି ବର୍ଷ ଅକ୍ଟୋବର ଆଠରେ ମୋର କାର୍ଯ୍ୟକାଳ ସମାପ୍ତ ହେଲା । ଜୀବନରେ ମାତ୍ର ଥରକପାଇଁ ମୋତେ ପ୍ରଭୁମାନଙ୍କର ସେବା କରିବାର ସୁଯୋଗ ମିଳିଥିଲା ଓ ଏହାହିଁ ମୋର ଅବଶିଷ୍ଟ ଜୀବନର ପୁଞ୍ଜି । ପ୍ରଭୁଙ୍କ ସେବାରେ ନିୟୋଜିତ ପ୍ରତ୍ୟେକଟି ମୁହୂର୍ତ୍ତ ମୋର ଶରୀର ଓ ମନକୁ ସଦାସର୍ବଦା ଆଚ୍ଛନ୍ନ କରି ରଖିଛି ଓ ମୋ' ଶରୀରରେ ପ୍ରାଣ ଥିବା ପର୍ଯ୍ୟନ୍ତ ମଧ୍ୟ ରହିଥିବ ।

ଶ୍ରୀଜଗନ୍ନାଥ, ଜାନୁଆରୀ ୨୦୦୬

ଘଘ

# ଚକା ଆଖିରେ ଲୁହ

୨୦୦୦ ମସିହା, ଜୁଲାଇ ମାସର ଏକ ଉଦାସ ସକାଳ, ଆକାଶ ମେଘାଚ୍ଛନ୍ନ । ହଠାତ୍ ଲକ୍ଷ୍ୟକଲି ଜଗା ଆଖିରେ ଲୁହ । ନିଜ ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ବାରମ୍ବାର ଲକ୍ଷ୍ୟ କଲି । ପାଖକୁ ଗଲି । ନିରୀକ୍ଷଣ କଲି । ଲୁହ ଝରିପଡୁଛି ଚିବୁକ ଦେଇ ତଳକୁ । ଏ କି ପ୍ରକାର ଅଘଟଣ । ମନ ସନ୍ତୁଳିତ ହେଲା ଓ ବିଷାଦରେ ଭରିଗଲା । କୌଣସି ଅଘଟଣ ଘଟିବାର ଅହେତୁକ ଭୟ ମୋତେ ଆଚ୍ଛାଦିତ କଲା ।

ଚକା ଆଖିରେ ଲୁହ କାହିଁକି ?

ଏ ପ୍ରଶ୍ନର ଉତ୍ତର ମୁଁ ଖୋଜି ଖୋଜି ନୟାନ୍ତ ହୋଇ ପଡୁଥିଲି । କେଉଁଠି କ'ଣ ତ୍ରୁଟି ରହିଗଲା ? ମୁଁ ସେ ସମୟରେ ବିଶ୍ୱବିଦ୍ୟାଳୟର କୁଳପତି । ଭିସି କୋଠିର ଉପର ମହଲାର ବିରାଟ ଲମ୍ବା ବାରଣ୍ଡାର ଶେଷ ପ୍ରାନ୍ତରେ ତିନି ଠାକୁର ବିରାଜମାନ । ଫୁଲମାଳରେ ସୁସଜ୍ଜିତ । ତାଙ୍କୁ ସାମନା କରି ବାରଣ୍ଡାର ବିପରୀତ କୋଣରେ ମୋ ଟେବୁଲ ଯେଉଁଠି ବିଶ୍ୱବିଦ୍ୟାଳୟର ସମସ୍ତ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ତିନି ଠାକୁରଙ୍କୁ ସାକ୍ଷୀ ରଖି ଗ୍ରହଣ କରେ । ନିନି ପ୍ରତିଦିନ ସକାଳେ ଦିଅଁଙ୍କ ଫୁଲ ଗୁନ୍ଥେ, ନାନା ବର୍ଣ୍ଣ ଫୁଲର ଗଜରା ମାଳରେ ସଜାଇ ଦେଇ ଧୂପ, ଦୀପ ଅର୍ପଣ କରି ମନ ଧ୍ୟାନ ଦେଇ ପୂଜା କରେ । ସଞ୍ଜରେ ଭଜନ ହୁଏ, ଦେବରେଡ୍ଡି, ସୁବାସ, ପ୍ରଦୀପ ଭଜନ ଗାନ କରନ୍ତି । ମୁଁ ବାଜା ବଜାଏ । ତା'ପରେ ଘଣ୍ଟ, ଘଣ୍ଟି, ଝାଞ୍ଜ, ଶଙ୍ଖ ଓ ବାଦ୍ୟର ତାଳେ ତାଳେ ନିନି ଠାକୁରଙ୍କୁ ଆଳତୀ କରେ ନିନି ।

ଆମ ପୂଜା ଅର୍ଚ୍ଚନାରେ କ'ଣ କିଛି ଉଣା ପଡ଼ିଗଲା କି ? ଭବିଷ୍ୟତରେ କିଛି ଅଘଟଣ ଘଟିବ କି ? ମନରେ ଅନେକ ସନ୍ଦେହ ଓ ଶଙ୍କା ଜମା ହୋଇଗଲାଣି । କେଉଁଥିପାଇଁ ଜଗା ଆଖିରେ ଲୁହ ?

କିଛି ଚିନ୍ତା କରି ହେଉ ନାହିଁ ଅଥଚ ଚିତ୍ତ ଅସ୍ଥିର । ପିଲାଟି ଦିନୁ କେବେ ଠାକୁରଙ୍କ ପାଖରେ ମୁଣ୍ଡ ନୁଆଁଇ ମୁଁ ଜୁହାର ହୁଏ ନାହିଁ । ସେଥିପାଇଁ ବୋଉ ମୋତେ କେତେଥର ତାଗିଦ୍ କରି କହିଛି । ଅବଶ୍ୟ ବାଧ କରେ ନାହିଁ କାରଣ ସେ ଜାଣିଛି

ସମସ୍ତଙ୍କର ଅଜାଣତରେ ମୋ ମନ ଠାକୁରଙ୍କ ପାଖରେ ସର୍ବଦା ନଇଁକି ଥାଏ । ଏତେ ଦିନ ପରେ କେଉଁ କାରଣ ପାଇଁ ଠାକୁର ଖପ୍ପା ହେବେ ଓ କାହିଁକି ? ନିନିର ପୂଜା ଅର୍ଚ୍ଚନା ଓ ଭକ୍ତିର ତ ପଟ୍ଟାନ୍ତର ନାହିଁ । ସେ ଏକାଗ୍ର ଚିତ୍ତରେ ପୂଜା କରେ ଓ ସେହି ସମୟରେ ନିଜ ଭିତରେ ହଜି ଯାଏ । ଫାଇଲ କାମ କରୁ କରୁ ହଠାତ୍ ଦିନେ ନିନିର ସ୍ୱର କାନରେ ବାଜିଲା । କାହା ସଙ୍ଗେ ନିନି ଅନ୍ତରଙ୍ଗ ଭାବେ କଥାବାର୍ତ୍ତା ହେଉଛି । ମିତା, ରାଜା ତ ଏଠାରେ ନାହାନ୍ତି, ଲୋନି କଲେଜରେ । ତେବେ କାହା ସଙ୍ଗେ କଥାବାର୍ତ୍ତା ହେଉଛି ନିନି ।

"ଫୁଲ ନାଇବାକୁ ତୋର ଇଛା ନାହିଁ କିରେ; ମୁହଁ ଆଡେଇଛି କି ନାହିଁ ଫୁଲ ହାରକୁ ଖସାଇ ଦେଲୁଣି; ଏଥର ଖସାଇ ଦେଲେ ଆଉ ଜମା ଲଗାଇ ଦେବି ନାହିଁ । ସେମିତ ଡିମା ଡିମା ଆଖିରେ ଅନେଇକି ବସିଥିବୁ ।"

ଫାଇଲ ଉପରୁ ଦୃଷ୍ଟି ଫେରାଇ ଆଣିଲି । ଦେଖିଲି ସାମ୍ନାରେ ନିନି ଜଗନ୍ନାଥଙ୍କୁ ବେଶ କରୁଛି ଆଉ ତାଙ୍କ ସଙ୍ଗେ କଥା ହୋଇଚାଲିଛି । ଭଲ ଲାଗିଲା ଏହି ଅନ୍ତରଙ୍ଗ ମୁହୂର୍ତ୍ତକୁ ଚୁପ୍‌ଚାପ୍ ଉପଭୋଗ କରିବାକୁ । ଫାଇଲ କାମ ବନ୍ଦ କରି ଆଖିବୁଜି ବସି ରହିଲି । କାନଡେରି ଶୁଣୁଥିଲି ଠାକୁର ଓ ପୂଜାରେ ମଗ୍ନ ନିନି ମଧ୍ୟରେ ହେଉଥିବା ଭାବ ବିହ୍ୱଳିତ ଆଳାପ । ଇଛା ହେଲା ଖାଲି ତାଙ୍କରି କଥା ସ୍ମରଣ କରିବାକୁ ।

ତମେ ସେଇ ନା ଯେ ଧର୍ମ ସଂସ୍ଥାପନା ପାଇଁ ଅର୍ଜୁନର ସାରଥି ହୋଇଥିଲ । ତମେ ସେତେବେଳେ କହିଥିଲ ଯେ ତମେ କେବଳ ଅର୍ଜୁନର ନୁହଁ, ଯେ ତୁମ ନିକଟରେ ସମର୍ପିତ ଓ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମରତ ତମେ ତାଙ୍କର ସାରଥି ହେବ । କୁରୁକ୍ଷେତ୍ରରେ ପାପପୁଣ୍ୟର ଯୁଦ୍ଧ ସଙ୍ଗଠିତ ହେବା ପ୍ରାରମ୍ଭରେ ତମେ ନା ମ୍ରିୟମାଣ ହୋଇପଡ଼ିଥିବା ଅର୍ଜୁନଙ୍କୁ କର୍ମଜ୍ଞାନ ଓ ଭକ୍ତିଯୋଗରେ ଦିକ୍ଷିତ କରିଥିଲ ? ଅର୍ଜୁନଙ୍କ ପରି ସମସ୍ତେ ତ ଭାଗ୍ୟବାନ ନୁହନ୍ତି କି ସମର୍ପିତ ନୁହନ୍ତି । ଆମେ ସବୁ ସାଧାରଣ ମଣିଷ । ସମର୍ପଣ କରିବାର ପରିସର ସୀମିତ, ଅସଂପୂର୍ଣ୍ଣ । ଆସକ୍ତି ଆମର କର୍ମ । ତଥାପି ବେଳେବେଳେ ଇଛା ହୁଏ ରତ୍ନସିଂହାସନରେ ତୁମକୁ ଦର୍ଶନ କରିବାକୁ; ତୁମକୁ ସ୍ପର୍ଶ କରିବାକୁ; ତୁମଠାରେ ଜୀବନକୁ ଉତ୍ସର୍ଗ କରିଦେବାକୁ । କିନ୍ତୁ ସତରେ କ'ଣ ତମେ ଜାଣିନ ମୋ ଜୀବନ ତମଠାରେ ବହୁଦିନରୁ ଉତ୍ସର୍ଗୀକୃତ, ସମର୍ପିତ ।

ସେ ବହୁତ ଦିନ ତଳର କଥା । ତମର ତ ନିଶ୍ଚୟ ମନେଥିବ । ୧୯୪୪-୪୫ ମସିହା । ମୋର ବୟସ ସେତେବେଳେ ଛଅ ବା ସାତ । ବସନ୍ତ ରୋଗରେ ପୀଡ଼ିତ ହୋଇ ଦୀର୍ଘ ବାଇଶି ଦିନ ପ୍ରାୟ ସଂଜ୍ଞାହୀନ ଅବସ୍ଥାରେ ରହିଲି । ବଞ୍ଚିବା ଆଶା

ସମସ୍ତେ ହରାଇ ଦେଇଥିଲେ । ବୋଉ ମୋର ଆରୋଗ୍ୟ କାମନା କରି ମାନସିକ କଲା । ମୋତେ ତୁମ ପାଦ ତଳେ ଉତ୍ସର୍ଗ କଲା, ବନ୍ଧା ପକାଇଲା । ଯମ ମୁହଁରୁ ରକ୍ଷା କରି ଦେଲେ ବାଇଶି ପାହାଚରେ ଗଡ଼ାଇବ ଆଉ ସମୟ ଓ ସୁବିଧା ଦେଖି ତୋର ଋଣ ଶୁଝି ବନ୍ଧନରୁ ମୁକୁଳେଇ ଆଣିବ ।

ତୋର ଅସୀମ କରୁଣାରୁ ଓ ବୋଉ-ମଉଁଆର ତ୍ୟାଗପୂତ ସେବାରୁ ମୁଁ ବଞ୍ଚିଗଲି । ସମୟ ଗଡ଼ି ଚାଲିଲା । ସ୍କୁଲରୁ କଲେଜ, କଲେଜରୁ ଅଧ୍ୟାପକ ଜୀବନ ଆରମ୍ଭ ହେଲା, ହାଫ୍ ପ୍ୟାଣ୍ଟରୁ ଧୋତି ଓ ଧୋତିରୁ ଫୁଲପ୍ୟାଣ୍ଟ ପିନ୍ଧିଲି । ଛୁଟିରେ ଘରକୁ ଆସିଲେ ବୋଉ ଜିଦ୍ ଧରି ବସେ ପୁରୀ ଯିବାକୁ; ଆଉ ବାଇଶି ପାହାଚରେ ଗଡ଼େଇ ଗଡ଼େଇ ଆଣି ତୁମଠାରୁ ଋଣମୁକ୍ତ ହେବାକୁ । କିନ୍ତୁ ତାହା କୌଣସି ନା କୌଣସି କାରଣରୁ ସମ୍ଭବ ହୋଇପାରେ ନାହିଁ ।

ପ୍ରଥମତଃ ମୁକୁଳେଇବା ପର୍ବରେ ମୋର ଆନ୍ତରିକତା ନ ଥାଏ । ଦ୍ୱିତୀୟରେ ଏତେ ଲୋକଙ୍କ ସମ୍ମୁଖରେ ପୁଣି ଏ ବୟସରେ ବାବାଜି ବେଶ ହୋଇ ବାଇଶି ପାହାଚରେ ଗଡି ଗଡି ଆସିବା ଟିକେ ଅଡୁଆ ଲାଗୁଥିଲା । ବୋଧହୁଏ ଲାଜ ଲାଗୁଥିଲା । ଶେଷରେ ବୋଉ ଜିଦ୍ ଧରିଲା ମୋ ବାହାଘର ପୂର୍ବରୁ ଯେକୌଣସି ମତେ ନିଶ୍ଚୟ ମୁକୁଳାଇ ଆଣିବ । ନ ହେଲେ ବାହାଘର ହୋଇପାରିବ ନାହିଁ । ମନେମନେ ଭାବିଲି ତମର ତ ଏକାଧିକ ସ୍ତ୍ରୀ; ତମ ନିକଟରେ ବନ୍ଧା ପଡିଥିବା ବେଳେ ମୋର ଗୋଟିଏ ସ୍ତ୍ରୀ ହେବାରେ ତମର କାହିଁକି ଆପତ୍ତି ରହିବ । ବରଂ ତୁମେ ମୋତେ ଓ ମୋର ସ୍ତ୍ରୀଙ୍କୁ ତମ ନିକଟରେ ଆଜନ୍ମ ବନ୍ଧା ହୋଇଥିବାର ପାଇବ ।

ବୋଉ ସାଙ୍ଗରେ ତର୍କ ବିତର୍କରେ ଅନେକ ବର୍ଷ ବିତିଗଲା, ବୋଉର ସ୍ୱାସ୍ଥ୍ୟ କ୍ରମଶଃ କ୍ଷୀଣ ହେବାକୁ ଲାଗିଲା, ସ୍ମରଣଶକ୍ତି ଧୀରେ ଧୀରେ ହ୍ରାସ ପାଇଲା । ତା'ର କିଛି କଥା ମନେ ରହେନାହିଁ ।

ଶେଷରେ ୧୯୬୬ ମସିହା ଏପ୍ରିଲ ମାସରେ ମୁଁ, ବୋଉ, ଭଉଣୀ ପ୍ରମିଳା ଓ ଟିକିଲି ପୁରୀ ଆସିଲୁ । ଶ୍ରୀମନ୍ଦିର ଗଲୁ । ଏକ ଭାବପୂର୍ଣ୍ଣ ମୁହୂର୍ତ୍ତରେ ମୁଁ ତମକୁ ସ୍ମରଣ କଲି । ନିଜକୁ ପୁଣି ଥରେ ସମ୍ପୂର୍ଣ୍ଣ ରୂପେ ତମ ଶ୍ରୀଚରଣରେ ଉତ୍ସର୍ଗ କଲି, ବୋଉ କଥା କହିଲି ଓ ବାଇଶି ପାହାଚରେ ମନେ ମନେ ମଧ୍ୟ ଗଡି ଗଡି ଯାଉଥିଲି । ବୋଉ ଓ ମୁଁ ସାଙ୍ଗ ହୋଇ ନୀରବରେ ଜଗନ୍ନାଥଙ୍କ ଦର୍ଶନ କରୁଥିଲୁ । ସେ ବିଭୋର ହୋଇ ଯାଉଥିଲା । ମନ୍ଦିର ବେଢ଼ାରୁ ପଦାକୁ ବାହାରିଲା ପୂର୍ବରୁ ବୋଉ ପୁଣି ଥରେ ବିଚାରିଲା ବାଇଶି ପାହାଚରେ ଗଡିବା କଥା । ମୁଁ କହିଲି ସେ କଥା ମୋର ଓ ଠାକୁରଙ୍କର ଦାୟିତ୍ୱ । ତୁ ଆଉ ସେଥିରେ ବ୍ୟସ୍ତ ହୁଅନା । ସେ ନୀରବ ରହିଲା ।

ମୋ ବାହାଘର ହେଲା ଜୁନ୍ ୫, ୧୯୬୬ ମସିହାରେ । ବୋଉ ଶେଷ ନିଃଶ୍ୱାସ ତ୍ୟାଗ କଲା ; ଜାନୁୟାରୀ ୧୯୬୭ । ମୁକୁଳାଇ ପାରିବାର ଇଚ୍ଛା ତା'ର ସବୁଦିନ ପାଇଁ ମଉଳିଗଲା । ଆଉ ମୁଁ ଓ ମୋର ସ୍ତ୍ରୀ ନିନି ସବୁଦିନ ପାଇଁ ସେଠାରେ ବନ୍ଧା ହୋଇଗଲୁ । ମୁଁ ଯେତେଥର ବାଇଶି ପାହାଚ ଚଢ଼ି ଚଢ଼ି ଯାଏ, ବୋଉ କଥା ମନେ ପଡେ । ଆଖି ଆପେ ଆପେ ଓଦା ହୋଇ ଆସେ । ଏହି ବର୍ଷକ ତଳର ଘଟଣା; ମୁଁ ନିନି, ଲୋନି ଆଉ ସୁରେନ୍ଦ୍ରବାବୁ ଜଗନ୍ନାଥଙ୍କୁ ଦର୍ଶନ କରି ବାଇଶି ପାହାଚରେ ଓହ୍ଲାଇ ଆସୁଛୁ । ହଠାତ୍ ନଜର ପଡିଲା ଛଅ/ସାତ ବର୍ଷର ପୁଅଟି ଉପରେ, ବାଇଶି ପାହାଚରେ ଗଡାଇ ଗଡାଇ ଆଣୁଥିବା ଭାବବିହ୍ୱଳ ମାଆଟିକୁ ଚାହିଁଲି । ମୋର ପାଦ ଅଟକି ଗଲା । ବିମୁଗ୍ଧ ହୋଇ ମୁଁ ଏହି ଦୃଶ୍ୟ ଉପଭୋଗ କରୁଥିଲି । ନିନି କହିଲା, "ତମେ ଏଇମିତି ଗଡିଥାନ୍ତ ।" ସୁରେନ୍ଦ୍ର ବାବୁ କହିଲେ; "କ'ଣ ସାର୍, ମା'ଙ୍କ କଥା ମନେ ପଡୁଛି କି ?"

ମୁଁ ଅନ୍ୟମନସ୍କ ହୋଇଯାଉଥିଲି । ଅଜଣା ଅଶୁଣା ମାଆଟିର ମୁଖମଣ୍ଡଳରେ ଆତ୍ମତୃପ୍ତି ସ୍ପଷ୍ଟ ଉଦ୍‌ଭାସିତ ହେଉଥିଲା । ଆଖି ଆଗରେ ଭାସି ଉଠୁଥିଲା ମୋ ବୋଉର ବାତ୍ସଲ୍ୟ ମମତା ଭରା ମୁହଁଟି । ମୋ ବୋଉକୁ ଏହି ଆତ୍ମତୃପ୍ତିର ସ୍ୱାଦ ଅନୁଭବ କରିବାରୁ ବଞ୍ଚିତ କରି ଆତ୍ମଗ୍ଳାନିରେ ଭାଙ୍ଗି ପଡୁଥିଲି । ମୋରି ସାମ୍ନାରେ ବାଇଶି ପାହାଚରେ ଗଡି ଗଡି ଯାଉଥିବା ଏହି ପିଲାଟି ଭିତରେ ମୁଁ ନିଜକୁ ଦେଖୁଥିଲି; ତା'ର ମା'କୁ ଚାହୁଁଥିଲି ଆତ୍ମତୃପ୍ତିର ପ୍ରଫୁଲ୍ଲତା ତା'ର ମୁହଁରେ ପ୍ରତିଫଳିତ । ସେହି ମାତୃତ୍ୱ ଭିତରେ ମୁଁ ମୋ ବୋଉକୁ ଖୋଜୁଥିଲି । ସବୁ ମା'ମାନେ ଏକ ଗୋଷ୍ଠିର; ଠାକୁରଙ୍କୁ ଉତ୍ସର୍ଗୀକୃତ ପୁଅମାନଙ୍କୁ ପୁଣି ଫେରାଇ ଆଣିବାର ଏତେ ଉତ୍କଣ୍ଠା କାହିଁକି ? ମୁଁ ଯଦି ବାଲ୍ୟାବସ୍ଥାରେ ପୁରୀ ଠାକୁରଙ୍କ ପାଖକୁ ଆସିପାରିଥାନ୍ତି ହୁଏତ ସେତେବେଳେ ଏହିପରି ଏକ ଭାବବିହ୍ୱଳ ଦୃଶ୍ୟ ସଙ୍ଗଠିତ ହୋଇଥାନ୍ତା । କିନ୍ତୁ ଡୋରି ନ ଲାଗିଲେ କ'ଣ ଦର୍ଶନ କରି ହୁଏ ?

କଳା ଠାକୁରଙ୍କୁ ପ୍ରଥମ ଥର ପାଇଁ ତାଙ୍କ ନିଜ ଉଆସ ଶ୍ରୀମନ୍ଦିରରେ ଦର୍ଶନ କରିବାର ସୁଯୋଗ ପାଇଲି ସ୍ନାତକ ପରୀକ୍ଷା ପରେ ୧୯୫୮ ମସିହା ମେ' ମାସରେ । ସେତେବେଳେ ମୋତେ ୨୦ ବର୍ଷ । ଏ ଦର୍ଶନ ଏତେ ରୋମାଞ୍ଚକର ଥିଲା ଯେ ତାହା କଳ୍ପନାତୀତ, ବର୍ଣ୍ଣନାତୀତ । ପ୍ରଥମ ଦର୍ଶନରେ ତାଙ୍କର ବଡ ବଡ ଚକା ଆଖିରେ ମୁଁ ବିମୋହିତ ହୋଇଗଲି । ବାନ୍ଧି ହୋଇଗଲି । ସେହି ମୁହୂର୍ତ୍ତକୁ, ସେହି ସୀମାହୀନ ଭାବନାକୁ ଭାଷା ମାଧ୍ୟମରେ ପ୍ରକାଶ କରିବା ଅସମ୍ଭବ । ଏହି ଠାକୁରଙ୍କୁ ସମର୍ପଣ କରି

ବୋଉ କାହିଁକି ପୁଣି ଫେରାଇ ନେବାକୁ ମନ ବଳାଇଛି ମୁଁ ବୁଝି ପାରିଲି ନାହିଁ । ଘରକୁ ଫେରି ମୁଁ ଯେତେବେଳେ ଠାକୁରଙ୍କ ଦର୍ଶନ କଥା ବୋଉକୁ କହିଲି ସେ ତତ୍‌କ୍ଷଣାତ୍ କହିଲା; "ମୋତେ ଟିକେ ନେଲୁ ନାହିଁ ? ମୁଁ ତୋତେ ବାଇଶି ପାହାଚରେ ଗଡାଇ ମୁକୁଳେଇ ଆଣିଥାନ୍ତି ।"

ଅନେକ ବର୍ଷ ପରେ ଯେତେବେଳେ ବାହୁଡା ଯାତ୍ରାରେ ଜଗନ୍ନାଥଙ୍କର ସାମନା ସାମନି ହୋଇଗଲି ମୁଁ ମୋର ଅଜାଣତରେ ତାଙ୍କର ଆଖି ଦୁଇଟିକୁ ଆଉଁଶି ଦେଇ ନାକକୁ ଚିପିବାକୁ ଲାଗିଲି । ସହକର୍ମୀ ବନମାଳୀ ଏ ଅନ୍ତରଙ୍ଗ ଦୃଶ୍ୟକୁ ବେଶ୍ ଉପଭୋଗ କରୁଥିଲା । ଏହି କଳାଠାକୁର ଆମ ପରିବାରର ଭାଗବତ ଗୋସାଇଁ, ସାତ ପୁରୁଷର ଠାକୁର । ତିନୋଟି ତାଳପତ୍ରର ଗାଦିକୁ ପିଠି କରି ଆଉଜି ବସିଥିବା ତିନିଠାକୁର ଆମ ବଂଶର ଇଷ୍ଟ ଦେବତା । ଆମ ଗାଁର ସମସ୍ତ ଶୁଭକର୍ମ ଯଥା- ବିବାହ, ପର୍ବପର୍ବାଣି ହିଁ ଭାଗବତ ଗୋସାଇଁଙ୍କ ସମ୍ମୁଖରେ ସମାପନ କରାଯାଏ । ଗାଁର ପ୍ରତ୍ୟେକ କଳିକଜିଆ ଏହି ଠାକୁରଙ୍କୁ ସାକ୍ଷୀ ରଖି ସମାଧାନ କରାଯାଏ । ଆମ ଗାଁରେ ବିଭିନ୍ନ ସମ୍ପ୍ରଦାୟର ଲୋକେ ଥିଲେ ମଧ୍ୟ ସମସ୍ତେ ଚଳନ୍ତି ଏକ ପରିବାର ଭଳି କେବଳ ଭାଗବତ ଗୋସାଇଁଙ୍କୁ ଭରସା କରି । ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ ଏହି ଯେ ୧୯୫୫ ମସିହା ଓ ୧୯୬୦ ମସିହାର ପ୍ରଳୟଙ୍କରୀ ବନ୍ୟାରେ ଆମର ଚାରିଖଞ୍ଜା ସମେତ ଠାକୁର ଘର ଓ ଚଉପାଢି ଭାଙ୍ଗି ଧୂଳିସାତ୍ ହୋଇଗଲା । ସେହିଦିନଠାରୁ ଭାଗବତ ଗୋସାଇଁ ବାସହୀନ ।

ମୋର ହେତୁ ହେଲା ଦିନୁ ଦେଖେ ମୋ ବୋଉ ଖୁବ୍ ବଡ଼ିଭୋରରୁ ଉଠେ ଓ ଠାକୁରଙ୍କ କାମରେ ଦିନସାରା ଲାଗିଥାଏ । ଠାକୁର ବାସନ ମଜା, ଫୁଲ ତୋଳା, ଫୁଲ ଗୁନ୍ଥା, ଆଳତୀ ପାଇଁ କପାରେ ବାତୀ ତିଆରି, ଠାକୁର ଭୋଗ ତିଆରି, ସଞ୍ଜବେଳେ ଆଳତୀ ଘଣ୍ଟା ବଜାଇବା, ପୁରାଣ ଶୁଣିବା ଏସବୁ ତା'ର ନିତିଦିନିଆ କାମ । ସଞ୍ଜ ଆଳତୀ ପରେ ସେ ଅନେକ ସମୟ ଧରି ଠାକୁରଙ୍କୁ ମୁଣ୍ଡିଆ ମାରେ ଓ ଗୁଣୁଗୁଣୁ ହୋଇ କ'ଣ ସବୁ କହୁଥାଏ । ଏହି ସମୟରେ ମୁଁ ତା' ପିଠି ଉପରେ ଶୋଇ ପଡ଼େ ଓ କାନଡେରି ଶୁଣେ ସେ କ'ଣ କହୁଛି ଠାକୁରଙ୍କୁ ।

ଠାକୁର କାମ ବ୍ୟତୀତ ସେ ଯେଉଁ କାମ କରେ ତାହା ହେଲା ଆମ ପାଇଁ ବଢ଼ାଭାତ ରାନ୍ଧିବା ପନିପରିବା କାଟିବା, ଚାଉଳ ଧୋଇବା, ଆଉ ରାତିରେ ଶୋଇଲା ବେଳକୁ ଆମକୁ ଗପ କହିବା । ବୁଢ଼ୀ ଅସୁରୁଣୀ, ରାଜାପୁଅ, ଟଭି ପ୍ରଭୃତି ବିଭିନ୍ନ ପ୍ରକାର ଗପ । ଆଜିକାଲି ଆଉ ସେ ଗପ ଶୁଣିବାକୁ ମିଳୁନାହିଁ ।

ମୁଁ ତା' ପାଖରେ ଏତେ ଅଳି ଅର୍ଦ୍ଦଳି କରିଛି କିନ୍ତୁ ସେ କେବେ ଥରେ ଟାଣରେ କଥା ପଦେ କହିନାହିଁ, ଦେହରେ ଚିପ ବି ଦେଇ ନାହିଁ । ସତେ କ'ଣ ଅନ୍ୟ କାହାର ବୋଉ ଏତେ ସ୍ୱର୍ଗୀୟ ପ୍ରେମରେ ଭରି ହୋଇଥାଇପାରେ । ଅନେକ ଦିନ ପରେ ଜାଣିଲି ଆମେ ବୋଉର ଜନ୍ମିତ ସନ୍ତାନ ନୁହେଁ । ମଇଁଆ ଆମର ପ୍ରକୃତ ବୋଉ ଯାହାକୁ ମୁଁ ଭାବିଥିଲି ଆମ ଘରର ରୋଷେଇ ଦାୟିତ୍ୱରେ ଅଛି ବୋଲି । ମଇଁଆ ଶବ୍ଦଟି "ମଝିଆଣି" ଶବ୍ଦର ଅପଭ୍ରଂଶ । ଯାହା କି ମୋ ବଡ଼ ଭଉଣୀଟିର ଗୁଲୁଗୁଲିଆ ଦରୋଟି ଭାଷାରେ ପ୍ରକାଶ ପାଇଥିଲା ଓ କାଳକ୍ରମେ ସାର୍ବଜନିନ ହୋଇଗଲା ।

କେବେ କେବେ ମଇଁଆ କହେ ଏତେ ଠାକୁର କାହିଁକି ଲମ୍ବାଇଛ । ତମ ପରେ ବୋହୂମାନେ ପୂଜା କରିବେ ବୋଲି ଭାବୁଛ ନା କ'ଣ ? ବୋଉ କହେ – ତୁ ବୁଝିବୁ । ତାହାହିଁ ସତ ହେଲା । ବୋଉ ୧୯୬୭ ମସିହା ଜାନୁୟାରୀ ମାସରେ ଚାଲିଗଲା । କାଳକ୍ରମେ ମଇଁଆ ବଳେବଳେ ଠାକୁରଙ୍କ କାମ ହାତକୁ ନେଲା । ୧୯୭୨ ମସିହାରେ ବରୀ ଅଞ୍ଚଳକୁ ପ୍ରବଳ ଘୂର୍ଣ୍ଣିବାତ୍ୟା ଧ୍ୱସ୍ତ ବିଧ୍ୱସ୍ତ କରିଦେଲା । ସେହି ଦିନଠାରୁ ମଇଁଆ ଆମ ପାଖରେ । ମୁଁ ସେତେବେଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପ୍ରଫେସର ରୂପେ ଯୋଗଦେଇଥାଏ । ମଇଁଆ ସମ୍ବଲପୁର ଆସିବା ପୂର୍ବରୁ ନିଜି ଠାକୁରଙ୍କ କେତୋଟି ଫଟୋ ଆଣି କାନ୍ଥ ଆଲମିରାରେ ରଖି ପୂଜା କରୁଥାଏ । ମଇଁଆ ଆସିବା ପରେ ବୋହୂ ଉପରୁ ତା'ର ଭ୍ରମ ତୁଟି ଯାଇଥିଲା ଓ ସେହି ଦିନଠାରୁ ଠାକୁରଙ୍କ ଦାୟିତ୍ୱ ତା'ର ହୋଇଗଲା ।

ଦିନେ ଖେଳୁ ଖେଳୁ ତିନିବର୍ଷର ପୁଅ ରାଜା ବିବ୍ରତ ହୋଇ ଖବର ଦେଲା- "ଆମ ଘରୁ ଠାକୁର ପଳେଇବେ" । ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ । ପଚାରିଲୁ- "କାହିଁକି ପଳେଇବେ ?" ଆମ ସମସ୍ତଙ୍କୁ ଟାଣି ଟାଣି ନେଇ କାନ୍ଥ ଆଲମିରା କବାଟ ଖୋଲି କହିଲା- "ଦେଖ, ଏଇବାଟେ ଠାକୁର ପଳେଇବେ ।" ଜଗନ୍ନାଥ ଥିବା କାଚ ଫ୍ରେମ୍‌ରୁ କଣ୍ଟାଟିଏ ବାହାରି ଯାଇଥିବାରୁ ଗୋଟିଏ ପାଖ ମୁକୁଳା ହୋଇଯାଇଛି, ଏହି ବାଟ ଦେଇ ଠାକୁର ପଳେଇବେ ବୋଲି ରାଜାର ଧାରଣା ଓ ବ୍ୟସ୍ତତା । ତାକୁ କ'ଣ ବା ବୁଝେଇ ହେବ ଓ ସେ କ'ଣ ବା ବୁଝିବ ?

"ଠାକୁର ଏଇମିତି ଲୁଚିକି ଯାଆନ୍ତି ନାହିଁ । ଗଲେ କହିକି ଯିବେ; ଭୋକ କଲେ ପୁଣି ଏଇଠିକୁ ଫେରି ଆସିବେ, ଯେମତି ତୁ ଆଉ ମିତା ଖେଳିବାକୁ ଘର ବାହାରକୁ ଯାଉଛ ଆଉ ଭୋକ କଲେ ଆପେ ଆପେ ଫେରିଆସୁଛ ।" ରାଜା କ'ଣ ବୁଝିଲା କେଜାଣି ଫିକ୍‌କିନା ହସିଦେଇ ଖେଳିବାକୁ ଚାଲିଗଲା ।

ଏଇ ଜଗନ୍ନାଥଙ୍କୁ ଦିନେ ମିତା ନିଜର ପୁଅ ଭାବିଥିଲା । ରାମ ନାରାୟଣ ପୂଜା କରୁଥିବା ଜଗନ୍ନାଥଙ୍କର ଏକ କାଠ ନିର୍ମିତ ମୂର୍ତ୍ତିକୁ ପୁଅ କରି ଖେଳି ତା' ସହିତ ବାଲ୍ୟକାଳ ବିତାଇଥିଲା । ସେ ଦିନେ ଯେତେବେଳେ ଶ୍ରୀମନ୍ଦିରରେ ଜଗନ୍ନାଥଙ୍କୁ ଭେଟିଲା ଚକିତ ଓ ବିସ୍ଫାରିତ ନେତ୍ରରେ ତାକୁ ଚାହିଁ ପ୍ରଶ୍ନ କରିଥିଲା ମୋ ପୁଅ କ'ଣ ଏତେ ବଡ଼ ହୋଇଗଲାଣି ଓ ଏଠିକି କେମିତି ଆସିଲା ?

୧୯୭୯ ମସିହାରେ ଆମେ ଜ୍ୟୋତିବିହାର କ୍ୟାମ୍ପସ ଛାଡ଼ି ବାଣୀବିହାରରେ ପହଞ୍ଚିଲୁ, ସବୁଠାରୁ ଯେ ବେଶି ଖୁସି ହୋଇଥିଲା ସେ ମଇଁଆ । କାରଣ ଗାଁକୁ ଯିବା ଆସିବା ସୁବିଧା ହେବ ଓ ଗାଁ ଲୋକଙ୍କ ସହିତ ଯେକୌଣସି ମୁହୂର୍ତ୍ତରେ ଦେଖା ହେବ । ରାଜା ଟିକେ ବଡ଼ ହୋଇଯିବା ପରେ ଠାକୁରଙ୍କୁ ଆଉ କାଚ୍ଚ ଆଲମିରାରେ ରଖି ପୂଜା କରିବା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲା ଓ ଦିନେ ଜିଦ୍ କରି ତିନି ଠାକୁରଙ୍କ କାଠରେ ତିଆରି ମୂର୍ତ୍ତି ଘରକୁ ଆଣିଲା, ବାଣୀବିହାରରେ ଏ-୩ କ୍ୱାର୍ଟର । ଏକ ସ୍ୱତନ୍ତ୍ର କୋଠରିରେ ଠାକୁରଙ୍କର ପୂଜାଘର ହେଲା । ଏତେ ବଡ଼ ବଡ଼ ମୂର୍ତ୍ତି । ଠାକୁରଙ୍କୁ କିପରି ପୂଜା କରିବ ମଇଁଆ ଚିନ୍ତାରେ ପଡ଼ିଗଲା । ନିନି ଚିନ୍ତା କରୁଥିଲା ଅନ୍ନ ଭୋଗ ଓ ନିୟମିତ ନିର୍ଦ୍ଦିଷ୍ଟ ସମୟରେ ଆଳତୀ ପାଇଁ । ଶେଷରେ ଠିକ୍ ହେଲା ଘରୋଇ ଠାକୁରଙ୍କ ଆଗରୁ ଯେମିତି ପୂଜା ହେଉଥିଲା ସେଇମିତି ହେବ; ଆଉ ଆଳତୀ ହେବ ଯେତେବେଳେ ସମସ୍ତ କାର୍ଯ୍ୟରୁ ବିରତ ହୋଇ ମନ ଶାନ୍ତ ଥିବ । ତେଣୁ ଆଳତି ସାଧାରଣତଃ ହୁଏ ରାତି ୮ଟା ପରେ । ମିତା ଭଜନ କରେ ଓ ମୁଁ ବାଜା ବଜାଏ ଓ ତା'ପରେ ନିନି ଆଳତି କରେ । ମଇଁଆ ହାତଯୋଡ଼ି ବସିଥାଏ । କିଛିଦିନ ପରେ ଦେଖାଗଲା ରାଜା, ଲୋନି ଓ ଘରର ସମସ୍ତେ ଏହି ମୁହୂର୍ତ୍ତକୁ ଅପେକ୍ଷା କରିଛନ୍ତି ଓ ଉପଭୋଗ କରୁଛନ୍ତି ।

ଜୁନ୍ ୧୯୯୮ ମସିହାରେ ଯେଉଁ ଅଂଶୁଘାତ ହେଲା, ସେହି ସମୟଠାରୁ ମଇଁଆ ଆସ୍ତେ ଆସ୍ତେ ନିସ୍ତେଜ ହୋଇପଡ଼ିଲା । ତିଥାପି ନିୟମିତ ଠାକୁର ପୂଜା କରୁଥାଏ ଆଉ ନିନିକୁ କହୁଥାଏ ମୋ ଅନ୍ତେ ତୁ ଠାକୁରଙ୍କର ଯତ୍ନ ନେବୁ । ୨୩ ଅକ୍ଟୋବର ୧୯୯୮ ସନ୍ଧ୍ୟାରେ ମଇଁଆର ଦେହାନ୍ତ ହେଲା । ସେହିଦିନଠାରୁ ଠାକୁର ନିନିର ଏକଚାଟିଆ ଦାୟିତ୍ୱ । ଏହିପରି ଭାବରେ ବୋଉ-ମଇଁଆ-ନିନିର କଳା ଠାକୁରଙ୍କ ପାଇଁ ନିରବଚ୍ଛିନ୍ନ ସମର୍ପଣାତ୍ମକ ପୂଜା ଅର୍ଚ୍ଚନା କରିବା ଆମ ପାଇଁ ରକ୍ଷାକବଚ ହୋଇଆସିଛି । ମୋ ଜୀବନର ରାସ୍ତା ପ୍ରାୟ କଣ୍ଟକମୟ । ଘନଘନ ସ୍ୱାସ୍ଥ୍ୟଗତ ଦୁର୍ବଳତା, ବାରମ୍ବାର ଦୁର୍ଘଟଣା ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବା ସମୟରେ ଆତଙ୍କବାଦୀଙ୍କ ଆକ୍ରମଣର ମୁକାବିଲା କରି କର୍ମ ପଥରେ ଆଗେଇ ଯିବାରେ

ଯେଉଁମାନେ ମୋ ମନରେ ଶକ୍ତି ସଞ୍ଚାର କରିଥିଲେ ତାହା ଥିଲା ଦାଦାଙ୍କର ସହିଷ୍ଣୁତା ଓ ମହତ୍‌ବାଣୀ, ବୋଉ ମଉଁଆ-ନିନିର ରକ୍ଷଣାତ୍ମକ ଧର୍ମପୁତ ଭୂମିକା ଓ ସର୍ବୋପରି କଳାଠାକୁରଙ୍କ ଅଦୃଶ୍ୟ ଆଶୀର୍ବାଦ । ଅଥଚ ପ୍ରତିଦାନରେ ମୁଁ ସେମାନଙ୍କ ପାଇଁ କିଛି କରିପାରି ନାହିଁ ବା ସେମାନଙ୍କ ପାଇଁ କ'ଣ କଲି ବି ଜାଣିପାରି ନାହିଁ । ମୁଁ ଠାକୁରଙ୍କୁ ସ୍ମରଣ କରେ କିନ୍ତୁ ପ୍ରକାଶ୍ୟରେ କେବେ ପ୍ରଣିପାତ କରେ ନାହିଁ । ତାଙ୍କୁ ମଧ କିଛି ମାଗେ ନାହିଁ । ଯାହା ମିଳିଛି ତାଙ୍କର ଅପାର କରୁଣାରୁ ।

"କ'ଣ ଶୋଇ ପଡ଼ିଲଣି କି ?" ନିନି କଥା ଶୁଣି ଆଖି ଖୋଲି ହଠାତ୍ ପ୍ରକୃତିସ୍ଥ ହେଲି । ଫାଇଲ୍ ବନ୍ଦ କଲି । ପୁଣି ଥରେ ପାଖକୁ ଯାଇ ଠାକୁରଙ୍କୁ ଗଭୀର ଭାବରେ ନିରୀକ୍ଷଣ କଲି । ଆଖିରୁ ଲୁହ ବହି ଯାଉଛି । ଉଦାସ ହୋଇଗଲି । ମନରେ ପ୍ରଶ୍ନବାଚୀ, କାହିଁକି ଏ ଲୁହ ।"

୨୦୦୦ ମସିହା, ଜୁଲାଇ ୨୬ ତାରିଖ । ନିନିର ଗଲ୍ ବ୍ଲାଡର୍ ଷ୍ଟୋନ ପାଇଁ ଲାପ୍ରୋସ୍କୋପିକ୍ ଅପରେସନ ଭୁବନେଶ୍ୱରର ଏକ ନର୍ସିଂହୋମ୍‌ରେ । ଡାକ୍ତରଙ୍କ କଥା - ମୋଟେ ୪୫ ମିନିଟ ଲାଗିବ, ରକ୍ତ ଦରକାର ନାହିଁ । କିନ୍ତୁ କଥା ଭିନ୍ନ ହେଲା; ଅସାବଧାନତାରେ ବାଇଲ୍ ଡକ୍ଟ (ପିତ୍ତନଳୀ) କଟିଗଲା । ଡାକ୍ତର ଅକ୍ଷମତା ପ୍ରକାଶ କଲେ; ପରିସ୍ଥିତି ଗମ୍ଭିର ହୋଇଉଠିଲା । କଟକରୁ ଡାକ୍ତର ଡକାହେଲେ ଯେଉଁ ଅପେରସନ୍ ଆରମ୍ଭ ହୋଇଥିଲା ସକାଳ ସାତଟାରେ ତାହା ଶେଷ ହେଲା ସନ୍ଧ୍ୟା ପାଞ୍ଚଟାରେ । ଦୀର୍ଘ ୧୦ ଘଣ୍ଟା ଅପରେସନ୍ ଟେବୁଲ ଉପରେ ନିନି ମୃତ୍ୟୁ ସହ ସଂଘର୍ଷ କରୁଛି । ଆଉ ମୁଁ ଗୋଟିଏ ଚେଆରରେ ଉଦ୍‌ବିଗ୍ନ ମନରେ ବସି ରହି ଭାବୁଥିଲି; "ତାହାହେଲେ କ'ଣ ଏଇଥିପାଇଁ ଚକା ଆଖିରେ ଲୁହ ।"

ଯେ ଆମ ପରିବାର ଓ କୁଟୁମ୍ବର ସଭ୍ୟ ହିସାବରେ ତାଙ୍କଠାରେ ଭକ୍ତି ସ୍ନେହ ଅଭିମାନ ଢାଳି ଦେଇ ଚକା ଆଖିଠାରେ ବନ୍ଧା ପଡ଼ି ପୂଜା ଅର୍ଚ୍ଚନା କରି ଆସିଛି ତା'ର ଏହି ଦାରୁଣ କଷ୍ଟ ସମୟରେ ତା' ଆଖିରୁ ତାହାହେଲେ ଦୁଇଧାର ଲୁହ ବୋହି ଆସିଛି ।

ଅପରେସେନ ଦିନକ ପରେ ନର୍ସିଂହୋମ୍‌ରୁ ସୁରେନ୍ଦ୍ରବାବୁଙ୍କୁ ଫୋନ୍ କରି କହିଲି, ଆପଣ ଚିତ୍ରକରଙ୍କୁ ଡକାଇ ଜଗା ଆଖିରୁ ଲୁହର ଦାଗ ଲିଭାଇ ଦିଅନ୍ତୁ । ସୁରେନ୍ଦ୍ରବାବୁ କହିଲେ ମୁଁ ମଧ ଜଗା ଆଖିରେ ଲୁହ ଦେଖି ଚମକି ଥିଲି କିନ୍ତୁ କହିବି କି କହିବିନି ଭାବିପାରି ନ ଥିଲି । ଅପରେସନର ୭୨ ଘଣ୍ଟା ସନ୍ଧିକ୍ଷଣ । ସେ ସମୟକୁ ଟପି ନିନି ଦ୍ରୁତଗତିରେ ଆରୋଗ୍ୟ ଲାଭ କରୁଛି । ଆଠଦିନ ପରେ ଆମେ ଭିସି କୋଠିକୁ ଫେରିଲୁ;

ଜଗା ଆଖିରେ ଆଉ ଲୁହ ନାହିଁ; ସେ ଆଖି ସତେଜ ଓ ପ୍ରଫୁଲ୍ଲ । ସତେ ଯେପରି ଚନ୍ଦ୍ର ସୂର୍ଯ୍ୟ, ବାସ୍ତବରେ ଅପୂର୍ବ ନେତ୍ର ।

ଅପରେସନରେ ରହିଯାଇଥିବା ତ୍ରୁଟିକୁ ସୁଧାରିବା ପାଇଁ ଆମେ ଯେତେବେଳେ ଦିଲ୍ଲୀ ଗଲୁ ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍ସରେ ଆଉଥରେ ନିଜର ଅପରେସନ୍ ପାଇଁ ମୁଁ ଭଲ ଭାବରେ ଜଗା ଆଖିକୁ ବାରମ୍ବାର ନିରୀକ୍ଷଣ କରୁଥିଲି । ତା' ଆଖିରେ କାଳେ ଲୁହ ଜକେଇ ଥିବ ।

ଯଦି ଜଗା ଆଖିରେ ଲୁହ ଆସିଥାନ୍ତା ତେବେ ଆଉ ଅପରେସନ ପାଇଁ ଦିଲ୍ଲୀକୁ ଯାଇ ନ ଥାନ୍ତି । କିନ୍ତୁ ଆଶ୍ୱସ୍ତ ହେଲି, ଏଥର ଆଉ ଜଗା ଆଖିରୁ ଲୁହ ଝରିପଡୁ ନାହିଁ । ଜଗନ୍ନାଥଙ୍କର ଶାନ୍ତ ସୌମ୍ୟ ମୂର୍ତ୍ତି ମୋ ମନରେ ଅସୀମ ସାହସ ଓ ଧୈର୍ଯ୍ୟ ଭରିଦେଲା । ପୂର୍ବ ଅପରେସନ ସମ୍ପର୍କରେ ଦିଲ୍ଲୀରେ ଡାକ୍ତରଙ୍କ ମତ ଥିଲା କେବଳ ଈଶ୍ୱରଙ୍କ କରୁଣାରୁ ମ୍ୟାଡାମଙ୍କର ପୁନର୍ଜନ୍ମ ହେଲା । ଆମେ ଦୁଇଜଣ ତ ତମରିଠାରେ ଆଜୀବନ ବନ୍ଧା ।

ଶେଷରେ ଆମର ମିନତୀ, ତମ ଆଖିରେ ଆଉ କେବେ ଲୁହ ନ ଆସୁ । ତମେ ହସିଲେ ଦୁନିଆ ହସିବ, ତମେ କାନ୍ଦିଲେ ଦୁନିଆ କାନ୍ଦିବ ।

ଶ୍ରୀଜଗନ୍ନାଥ, ରଥସଂଖ୍ୟା ୨୦୦୫



# ସମର୍ପଣ

ଜୁନ୍ ଚାରି ତାରିଖ, ୨୦୦୮ ମସିହା, ବିଳମ୍ବିତ ସନ୍ଧ୍ୟା ।

ବହୁ ପ୍ରତିକ୍ଷିତ, ବହୁ ଆଲୋଚିତ, ବହୁ ବିବାଦୀୟ ହୋଇଯାଇଥିବା ବରୀ ମହୋତ୍ସବର ଉଦ୍‌ଘାଟନ ।

ମହାମାନ୍ୟ ରାଜ୍ୟପାଳ ଶେଷ ମୁହୂର୍ତ୍ତରେ ମୁଖ୍ୟ ଅତିଥି ହୋଇ ଉତ୍ସବକୁ ଉଦ୍‌ଘାଟନେ କରିବା ପାଇଁ ଅନିଚ୍ଛା ପ୍ରକାଶ କଲେ ।

ପ୍ରଶ୍ନବାଚୀ ସୃଷ୍ଟି ହେଲା, ବରୀ ଉତ୍ସବ ଉଦ୍‌ଘାଟନ କରିବ କିଏ ?

**ବରୀର ପରିଚୟ:**

ବ୍ରାହ୍ମଣୀ ଓ ଖରସ୍ରୋତାର ଅବବାହିକାରେ ଏକ ବନ୍ୟା-ମରୁଡ଼ି ପ୍ରବଣ ଅଞ୍ଚଳ । ଜମି ଉର୍ବର: ବହୁଫସଲୀ । ଗାଈ, ଗୋରୁ, ଛେଳି ଆଉ ମାଙ୍କଡ଼ମାନେ ଫସଲର ବହୁଅଂଶ ଆତ୍ମସାତ୍ କରନ୍ତି । ତିନି ଚାରିବର୍ଷ ମଧ୍ୟରେ ଥରେ ଥରେ ମହାବନ୍ୟା ହୁଏ : ନ ହେଲେ ମରୁଡ଼ି ବା ବାତ୍ୟା ଏ ଅଞ୍ଚଳର ଅର୍ଥନୈତିକ ପ୍ରଗତିକୁ ଭାଙ୍ଗିଦେଇଛି । ମାଙ୍କଡ଼ ଏକ ତୈଳଯୁକ୍ତ ବାଉଁଶକୁ ପାଞ୍ଚ ହାତ ଚଢ଼ି ଚାରି ହାତ ଖସି ଆସିଲାଭଳି, ବରୀର ଅର୍ଥନୈତିକ ପଦ୍ଧତି ଏହି ପନ୍ଥା ଅନୁସରଣ କରେ । ବରୀବାସୀମାନେ ଅକ୍ଲାନ୍ତ ପରିଶ୍ରମ କରି ତିନି/ଚାରିବର୍ଷ ମଧ୍ୟରେ ଯେତିକି ପାହାଚ ଚଢ଼ିଥାନ୍ତି, ଗୋଟିଏ ପ୍ରଳୟଙ୍କରୀ ବନ୍ୟାରେ ତାହା ଧୂଳିସାତ୍ ହୋଇଯାଏ ।

ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ ଓ ମାଆ ରମା ଦେବୀଙ୍କର ନେତୃତ୍ୱରେ ଏ ଅଞ୍ଚଳର ଅଧିବାସୀମାନେ ସ୍ୱାଧୀନତା ଆନ୍ଦୋଳନରେ ବହୁ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । କେତେଜଣ ପ୍ରାଣବଳୀ ଦେଲେ । ପ୍ରାକୃତିକ ଦୁର୍ବିପାକ ସହ ଲଢ଼େଇ : ଇଂରେଜୀ ବିରୁଦ୍ଧରେ ଲଢ଼େଇ : ଏ ଦୁଇ ପ୍ରକାର ଲଢ଼େଇ ବରୀବାସୀଙ୍କୁ ଅଧିକ କର୍ମଠ, ଜାଗ୍ରତ ଓ ସତର୍କ କରିଛି ।

## ପ୍ରଗତି କ୍ଲବ୍:

ଏହିପରି ଏକ ଚଳଚଞ୍ଚଳ ବରୀ ଅଞ୍ଚଳରେ ପ୍ରଗତି କ୍ଲବ୍ ବସା ବାନ୍ଧିଥିଲା ୧୯୫୦ ମସିହା ଜୁନ୍ ମାସରେ । ପ୍ରଗତି କ୍ଲବ୍‌ର ଜନ୍ମ କେବଳ ସ୍ୱାଧୀନ ଭାରତରେ ନୁହେଁ, ଜନ୍ମ ଏକ ଗଣତନ୍ତ୍ରରେ । ସମୀରଣର ତାଳେ ତାଳେ ଫର ଫର ହୋଇ ଉଡୁଥିବା ଜାତୀୟ ତ୍ରିରଙ୍ଗା ପତାକା ସମସ୍ତଙ୍କ ମନରେ ନୂତନ ଆଶା, ଆଗ୍ରହ ଓ ଉଦ୍ଦୀପନା ସୃଷ୍ଟି କରୁଥିଲା । ମୁକ୍ତ ବିହଙ୍ଗସମ ଆକାଶରେ ଉଡ଼ିବାର ନିଶା, ପଙ୍ଗୁ ହେଲେ ବି ମନରେ ଲଘିଯିବେ ଗିରିର ଆଶା ସଂଚାର ହୋଇଥିଲା ।

ସେତେବେଳେ ମୁଁ ବରୀ ମାଇନର ସ୍କୁଲରୁ ସପ୍ତମ ଶ୍ରେଣୀ ପାଠ ଶେଷ କରି, ଶ୍ରୀବନ୍ତ ହାଇସ୍କୁଲରେ ପାଦ ରଖିବାକୁ ଯାଉଛି । ସନ୍ଧ୍ୟାବେଳେ ସମସ୍ତେ ରୁଣ୍ଡ ହୁଅନ୍ତି କନ୍ତକାରନାମ୍ନୀ ଜଳାଶୟ କୂଳରେ । କନ୍ତକାର ସେତେବେଳେ ଥିଲା ବୃହତ୍ ଜଳଭଣ୍ଡାର; ବାଗୁଡ଼ି ଆଉ ଲୁଣୀ ଖେଳ ହୁଏ; ନିଦାଘର ପ୍ରଚଣ୍ଡ ରୌଦ୍ର ତାପରେ କନ୍ତକାରର ସୁଶୀତଳ ଜଳରେ ସ୍ନାନ ଅତ୍ୟନ୍ତ ଆନନ୍ଦଦାୟକ ହୋଇଥାଏ ।

କନ୍ତକାର କୂଳରେ ସମବୟସ୍କ ଯୁବକମାନଙ୍କର ଏକତ୍ର ମିଳନ ଏକ ସାମୂହିକ ଅନୁଷ୍ଠାନ ଗଢ଼ିବାରେ ପ୍ରବଳ ଆଗ୍ରହ ସୃଷ୍ଟି କଲା । ଏହି ଆଗ୍ରହ ଗର୍ଭରୁ ଜନ୍ମନେଲା ଏକ ବିରାଟ ଓ ବଳିଷ୍ଠ ଅନୁଷ୍ଠାନ ପ୍ରଗତି କ୍ଲବ । ସେଥିରେ ଲୀନ ହୋଇଗଲା ପୂର୍ବରୁ ସୃଷ୍ଟି ହୋଇଥିବା ରମ୍ଭା ଓ ନେଉଳାର ବିଜେତା ଗ୍ରୁପ୍, ଆନନ୍ଦପୁରର ଜୟହିନ୍ଦ୍ କ୍ଲବ, ଅରଙ୍ଗାବାଦର ଯୁବକସଂଘ ଓ ଏହିପରି ଅନେକ ଛୋଟ ଛୋଟ ଅନୁଷ୍ଠାନ । ଯଦି ଭାରତର ସବୁ ଅଞ୍ଚଳ, ସବୁ ଅଧିବାସୀ; ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ, ଆବାଳ ବୃଦ୍ଧ ବନିତା, ଭାରତର ସ୍ୱାଧୀନତା ପାଇଁ ଆନ୍ଦୋଳନ କଲେ ଓ ଭାରତକୁ ସ୍ୱାଧୀନ କରିପାରିଲେ, ତେବେ ବରୀ ଅଞ୍ଚଳର ବିଭିନ୍ନ ପିଢ଼ିର ଦଳମାନେ ଏକାଠି ନ ହେବେ କାହିଁକି ? ସମସ୍ତଙ୍କର ମନରେ ସହଯୋଗ ଓ କର୍ମପ୍ରବଣତାର ଭାବ ।

ପ୍ରଗତି କ୍ଲବର ଶୁଭ ଉଦ୍‌ଘାଟନୀ ଉତ୍ସବ ଅନୁଷ୍ଠିତ ହେଲା ଡାକବଙ୍ଗଳାର ପୂର୍ବପାର୍ଶ୍ୱକୁ ଲାଗିଥିବା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ । ସେହି ସଭାରେ ଉଦ୍‌ବୋଧନ ଦେଲେ - ସ୍ୱର୍ଗତଃ ପୂଜ୍ୟ ବନବିହାରୀ ଦାସ, ଆର୍ତ୍ତବନ୍ଧୁ ମହାନ୍ତି, ଭଗିରଥ ଦାସ, ହରିଶ୍ଚନ୍ଦ୍ର ଦାସ, ନବକିଶୋର ଦାସ ଓ ଅନେକ । ସେଥିରେ ଏ ଅଞ୍ଚଳର ଅନେକ ବରିଷ୍ଠ ନାଗରିକ ଯୋଗ ଦେଇଥିଲେ । ନୂତନକରି ଗଠିତ ପ୍ରଗତି କ୍ଲବର ସଭ୍ୟମାନେ ଏକ ଅଭୁଲା ନୈଶ୍ୟଭୋଜିରେ ସମସ୍ତଙ୍କୁ ଆପ୍ୟାୟିତ କଲେ । ସେ ସମୟର ଆଗ୍ରହ

ଓ ପ୍ରେରଣା ସମସ୍ତଙ୍କୁ ଚମତ୍କୃତ କରିଥିଲା । କ୍ଲବର ପ୍ରଥମ ସଭାପତି ହେଲେ ମୋର ବଡ଼ଭାଇ ସ୍ୱର୍ଗତ ବିବେକାନନ୍ଦ ଦାସ ଓ ସେକ୍ରେଟାରୀ ମୋ ଉପର ଭାଇ ସଚ୍ଚିଦାନନ୍ଦ ଦାସ ।

ବୟସ ଦୃଷ୍ଟିରୁ ପ୍ରଗତି କ୍ଲବରେ ମିଶିବାର ଯୋଗ୍ୟତା ମୋର ଥିଲା କି ନାହିଁ ମୁଁ ଜାଣେନା; କିନ୍ତୁ ବିଜେତା ଗ୍ରୁପ୍ ସଭ୍ୟ ଥିବାରୁ ଓ ପରବର୍ତ୍ତୀ ସମୟରେ ବିଜେତା ଗ୍ରୁପ୍ ପ୍ରଗତି କ୍ଲବ ସାଙ୍ଗରେ ମିଶିଯିବାରୁ ମୁଁ ଓ ମୋର ସାଙ୍ଗ ମହିଆ ଆପେ ଆପେ ବୋଧହୁଏ ପ୍ରଗତି କ୍ଲବର ସଭ୍ୟ ହୋଇଗଲୁ । ତା'ଛଡ଼ା, ମୁଁ ସବୁବେଳେ ମୋର ବଡ଼ଭାଇ ବିବେକାନନ୍ଦ ଦାସଙ୍କ ପଛେ ପଛେ ଗୋଡ଼ାଇଥାଏ । ସେ ଯେଉଁଠି ମୁଁ ସେଇଠି । ତେଣୁ ମୁଁ ମଧ୍ୟ ଏକ ଚୁମ୍ବକୀୟ ଶକ୍ତିରେ ଆକର୍ଷିତ ହୋଇ ପ୍ରଗତି କ୍ଲବରେ ହାଜର ହୋଇଯାଏ। ଅବଶ୍ୟ ସେଠାରେ ମୋ ଉପସ୍ଥିତିର ସେତେଟା ଗୁରୁତ୍ୱ ନ ଥାଏ । ଏଥିପାଇଁ ହୁଏତ ମୁଁ କେତେଜଣଙ୍କର ତିକ୍ତ ମଧୁର ମନ୍ତବ୍ୟର ଶିକାର ହୋଇଛି । ମୋତେ କହନ୍ତି "ପଛ ଗୋଡ଼ା ଭାଇ ।"

ପ୍ରଗତି କ୍ଲବର ପୁରୁଣା ସଭ୍ୟମାନଙ୍କ ମଧ୍ୟରୁ ଅନେକ ବର୍ତ୍ତମାନ ଜୀବିତ ନାହାନ୍ତି । କାଳକ୍ରମେ ଏ କ୍ଲବ ଅନେକ ନୂତନ ସଭ୍ୟଙ୍କୁ ଗ୍ରହଣ କଲା । ମୁଁ ମଧ୍ୟ କିଛିବର୍ଷ ଧରି ସଭାପତି ରହିଲି । ଏହି ସମୟରେ ପ୍ରଗତି କ୍ଲବର କିଛି ତରୁଣ ସଭ୍ୟଙ୍କ ଦ୍ୱାରା "ପ୍ରତୀମା ନାଟ୍ୟମ୍" ନାମକ ସଂସ୍ଥା ଗଠିତ ହେଲା ଓ ତାହା ମଧ୍ୟ ଖୁବ୍ କମ ସମୟ ମଧ୍ୟରେ ପୁନଶ୍ଚ ପ୍ରଗତି କ୍ଲବରେ ଲୀନ ହୋଇଗଲା, ଅବଶ୍ୟ ଏଥିପାଇଁ ମୋତେ ବହୁତ ପରିଶ୍ରମ କରିବାକୁ ପଡିଲା । ତା' ପରେ ନୂତନ ଯୁବଶକ୍ତିର ସହଯୋଗରେ ପ୍ରଗତି କ୍ଲବର ସଂପ୍ରସାରଣ ହେଲା । 'ପ୍ରଗତି ନାଟ୍ୟମ୍' ସାଂସ୍କୃତିକ କାର୍ଯ୍ୟକ୍ରମରେ ଓ 'ପ୍ରଗତି ଟିମ୍' ଫୁଟବଲ ଓ ଭଲିବଲ ପ୍ରଭୃତି ଖେଳରେ ଚହଳ ସୃଷ୍ଟି କଲା ।

ଯେଉଁ ସମୟରେ ସ୍କୁଲ କଲେଜ ଛୁଟି ଥାଏ, ସେହି ସମୟରେ କ୍ଲବ ସାଧାରଣତଃ ଉତ୍ସବମୁଖର ହୁଏ । ଏହି ସବୁ କାର୍ଯ୍ୟକ୍ରମର ପ୍ରଭାବ ସଭ୍ୟମାନଙ୍କ ବ୍ୟକ୍ତିତ୍ୱର ବିକାଶ ଦିଗରେ ପ୍ରତ୍ୟକ୍ଷରେ ଓ ପରୋକ୍ଷରେ ସାହାଯ୍ୟ କରିଛି । ମୋ ଉପରେ ଏହାର ପ୍ରଭାବ ବହୁତ ବେଶି; ମୁଁ ଏଇଠାରୁ ଶିଖିଲି ଅଧିବେଶନ ପରିଚାଳନା କରିବାର ଶୈଳୀ, ଆଲୋଚନା କରିବାର ସାହସ । ବିବେକ ଭାଇ ବଂଶୀରେ, ବୁଢ଼ାଭାଇ (ସଚ୍ଚି ଦାସ) ଗୀତ ଓ ହାରମୋନିୟମ୍‌ରେ ଓ ମୁଁ ତବଲା ବଜାଇବାର ସୁଯୋଗ ଲାଭ କରିଥିଲୁ ପ୍ରଗତି କ୍ଲବରେ ବିଭିନ୍ନ ସମୟରେ ଅନୁଷ୍ଠିତ ସଂଗୀତ ଆସରରେ ।

ନାଥୁରାମ୍ ଗଡ଼ସେଙ୍କ ଗୁଳିରେ ମହାତ୍ମାଗାନ୍ଧୀଙ୍କ ମୃତ୍ୟୁ ବିଷୟ ଉପରେ ଆଧାରିତ ନାଟକ "ପରଲୋକ" କଲ୍ୟାଣପୁର ନିବାସି କୁଞ୍ଜବିହାରୀ ଦାସଙ୍କ ପରିକଳ୍ପନାରେ ଓ

ବିବେକାନନ୍ଦ ଦାସଙ୍କ ଦ୍ୱାରା ଲିଖିତ ପ୍ରଗତି କ୍ଲବ ଦ୍ୱାରା ମଞ୍ଚସ୍ଥ ପ୍ରଥମ ନାଟକ । ପ୍ରଗତି କ୍ଲବ ବିଗତ ୫୮ ବର୍ଷ ମଧ୍ୟରେ ଅନେକଗୁଡ଼ିଏ ନାଟକ ମଞ୍ଚସ୍ଥ କରିଛି । ଏହି କ୍ଲବ ବାଗଦାର କୁଞ୍ଜଭାଇଙ୍କୁ ଏକ ଅଦ୍ୱିତୀୟ ମଞ୍ଚ କଳାକାର ଭାବରେ ସୃଷ୍ଟି କରିଛି; ବୁଢ଼ାଭାଇ ହେଲେ ସର୍ବଭାରତୀୟ ସ୍ତରରେ ଅନ୍ୟତମ କୃତୀ କଳାକାର । ସେ ହେଉଛନ୍ତି ମୋର ବଡ଼ଭାଇ ଓ ବିବେକଭାଇଙ୍କ ସାନଭାଇ ।

ଅନେକ ଉତ୍‌ଥାନ, ପତନ ମଧ୍ୟରେ ପ୍ରଗତି କ୍ଲବ ଏବେ ବି ବଞ୍ଚି ରହିଛି । କାରଣ ଅନେକ ସଭ୍ୟଙ୍କର ବରୀ ଅଞ୍ଚଳ ଓ କ୍ଲବ ପାଇଁ ଶ୍ରଦ୍ଧା ରହିଛି; ପ୍ରଚୁର ଅବଦାନ ରହିଛି । କୁଞ୍ଜଭାଇର ବୟସ ବର୍ତ୍ତମାନ ପ୍ରାୟ ୮୦ । ସେ ବିଗତ ଚାରି/ପାଞ୍ଚ ବର୍ଷ ହେଲା କହିଲେଣି କ୍ଲବ ଏକ ନାଟକ ମଞ୍ଚସ୍ଥ କରୁ, ଯାହା ତାଙ୍କ ଜୀବନର 'ଶେଷ ନାଟକ' ହେବ ।

ପ୍ରଗତି କ୍ଲବ ଏକ କ୍ରମବର୍ଦ୍ଧିଷ୍ଣୁ କ୍ଲବ; ଏଥିରେ ସଭ୍ୟ ରହି ଅନେକ ବରିଷ୍ଠ ନାଗରିକ ହୋଇଗଲେଣି । ଏମାନଙ୍କର ପୁତ୍ର, ପୁତୁରାମାନେ ମଧ୍ୟ ସଭ୍ୟ ହେଲେଣି, ସେମାନଙ୍କର ନାତିମାନେ ମଧ୍ୟ ଡାଗଡ଼ା ହୋଇ ସଭ୍ୟ ହେବାକୁ ପ୍ରଗତି କ୍ଲବର କବାଟ ବାଡେଇଲେଣି । ସେମାନଙ୍କୁ ଯେତେ ଶୀଘ୍ର ସଭ୍ୟ କରି ନିଆହେବ ସେତେ ମଙ୍ଗଳ । ନ ହେଲେ କ୍ଲବ ଅଚିରେ ଏକ ସ୍ଥାଣୁ ଅନୁଷ୍ଠାନରେ ପରିଣତ ହୋଇଯିବ କିମ୍ବା 'ପ୍ରତିମା ନାଟ୍ୟମ୍' ପରି ଏକ ଅହେତୁକ ପରିସ୍ଥିତି ସୃଷ୍ଟି ହେବ ।

ପ୍ରଗତି କ୍ଲବର ସ୍ଥାୟୀ ଗୃହ ପାଇଁ ସଭ୍ୟ ସ୍ୱର୍ଗତ ଫକିର ବାରିକଙ୍କ ଦ୍ୱାରା ଜମି ଦାନ ଏକ ମହନୀୟ ଘଟଣା, ଯାହାର ପଟାନ୍ତର ନାହିଁ । ମାଉଣ୍ଡକୁ ଲାଗି ସେହି ଜମି ଉପରେ ବର୍ତ୍ତମାନ ଦଣ୍ଡାୟମାନ ୫୮ ବର୍ଷର ଏ ଅଞ୍ଚଳର ସାଂସ୍କୃତିକ ଇତିହାସ ବହନ କରିଥିବା ଏକ କୋଠାଘର; ଛୋଟ ହେଲେ ବି ମହାନ । କ୍ଲବ ଘରର ପୂର୍ଣ୍ଣାଙ୍ଗ ପ୍ରାପ୍ତି ପାଇଁ ମହିଆର ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ । କ୍ଲବର ଉପର ମହଲା ନିର୍ମାଣ ପାଇଁ ସାଂସଦ ଶ୍ରୀ ମୋହନ ଜେନାଙ୍କ ସାଂସଦ ପାଣ୍ଠିରୁ ୨ ଲକ୍ଷ ୨୦ ହଜାର ଟଙ୍କାର ଅନୁଦାନ କ୍ଲବର ସମ୍ପ୍ରସାରଣରେ ଏକ ସମୟପୋଯୋଗୀ ପଦକ୍ଷେପ ।

କ୍ଲବର ନିଜସ୍ୱ ଗୃହ ନିର୍ମାଣ ହେବା ପୂର୍ବରୁ ସମସ୍ତ କାର୍ଯ୍ୟକ୍ରମର ପରିକଳ୍ପନା ହୁଏ କନ୍ତକାର କୂଳରେ ବା ମାଉଣ୍ଡକୁ ଲାଗିଥିବା ଦୁଇ ବରଗଛ ଓ ଗୋଟିଏ ଅଶ୍ୱସ୍ତ ବୃକ୍ଷର ଘନ ଛାଇ ତଳେ । କିନ୍ତୁ ହାୟ ! ସେ କନ୍ତକାର କୂଳ ବର୍ତ୍ତମାନ ସଂକୁଚିତ ଓ କର୍ଦ୍ଦମାକ୍ତ; ଆଉ ବର, ଅଶ୍ୱସ୍ତ ବୃକ୍ଷମାନେ ମୃତ । ବର୍ତ୍ତମାନ କ୍ଲବର ବିଭିନ୍ନ କାର୍ଯ୍ୟକ୍ରମ ପରିକଳ୍ପନା କରିବାର ସ୍ଥାନ ହେଉଛି କ୍ଲବର ସ୍ଥାୟୀ ଗୃହ । ଏହାର ମନ୍ଦିରମାଳିନୀ ପରିବେଶ ଏକ

କେନ୍ଦୁବୃକ୍ଷ ଓ ଏହାକୁ ଘେରିଥିବା ଏକ ଲତାର ଘନ ଛାଇ ଏ ପରିସରକୁ ଆକର୍ଷଣୀୟ କରିଛି ।

ଯେ କୌଣସି ସ୍ଥାନ ପବିତ୍ର ହୁଏ ଯଦି ସେଠାରେ ବହୁ ବ୍ୟକ୍ତି ଉତ୍ତମ ଉଦ୍ଦେଶ୍ୟ ନେଇ ମିଳିତ ହୁଅନ୍ତି । ଯେ କୌଣସି ଅନୁଷ୍ଠାନ ପବିତ୍ର ହୁଏ ଯଦି ଏହାର ଉଦ୍ଦେଶ୍ୟ ଉତ୍ତମ ହୁଏ ଓ ଏହା ଉତ୍ତମ ବ୍ୟକ୍ତିଙ୍କ ଦ୍ୱାରା ଉତ୍ତମ ଭାବରେ ପରିଚାଳିତ ହୁଏ । ସେଥିପାଇଁ ଦେବାଳୟ ପବିତ୍ର । ବିଦ୍ୟାଳୟ ପବିତ୍ର । ଏହାକୁ ମନ୍ଦ ଉଦ୍ଦେଶ୍ୟରେ ବ୍ୟବହାର କଲେ, ତାହା ଅଚିରେ ଅପବିତ୍ର ହୋଇଯାଏ ।

ପ୍ରଗତି କ୍ଲବ ଏକ ପବିତ୍ର ଅନୁଷ୍ଠାନ । କାରଣ ଏହାର ଉଦ୍ଦେଶ୍ୟ ଉତ୍ତମ, ଏହାର ସଭ୍ୟମାନେ ନିଜର ଉତ୍ତମ ଆଚରଣ ଦ୍ୱାରା ଏହାର ପବିତ୍ରତା ରକ୍ଷା କରି ଆସୁଛନ୍ତି । ଏଥିପାଇଁ ଏ କ୍ଲବ ଏତେଦିନ ହେଲା ବଞ୍ଚିଛି; ସୁବର୍ଣ୍ଣ ଜୟନ୍ତୀକୁ ଟପି ୨୦୧୦ ମସିହାରେ ପ୍ଲାଟିନମ ଜୟନ୍ତୀ ପାଳନ କରିବାକୁ ବସିଲାଣି ।

**ମାଉଣ୍ଡ (ଗୋଦାମ ଡିହ)** ମଧ୍ୟ ଏକ ପବିତ୍ର ସାଂସ୍କୃତିକ କେନ୍ଦ୍ର । ସଦ୍‌ଉପଯୋଗ ଏହାର ପବିତ୍ରତା ରକ୍ଷା କରେ । ଆଗରୁ ଯେପରି ହେଉଥିଲା, ବେସିକ୍ ସ୍କୁଲ ଓ ମାଇନର ସ୍କୁଲ ଛାତ୍ରଛାତ୍ରୀମାନେ ଶନିବାର ସକାଳେ ମାଉଣ୍ଡ ଉପରେ ପ୍ରାର୍ଥନା ଓ ଡ୍ରିଲ କରୁଥିଲେ, ସେହି ସୁସ୍ଥ ପରମ୍ପରାର ପୁନରାବୃତ୍ତି ହେଲେ ଏହାର ପରିବେଶ ସୁସ୍ଥ ରହନ୍ତା।

ବର୍ତ୍ତମାନ ପରିପ୍ରେକ୍ଷୀରେ ପ୍ରଗତି କ୍ଲବ ଏପରି ଏକ ଆଦର୍ଶ ଅନୁଷ୍ଠାନ ହେବା ଉଚିତ, ଯେଉଁଠାରେ ସଭ୍ୟମାନଙ୍କର କିଛି ଶିକ୍ଷା କରିବାର ଓ ବଳିଷ୍ଠ ବ୍ୟକ୍ତିତ୍ୱ ଗଠନ କରିବାର ଅନୁକୂଳ ବାତାବରଣ ସୃଷ୍ଟି ହେଉଥିବ। କେହି ପିତାମାତା କେବେହେଲେ ନ ଭାବନ୍ତୁ ଯେ ତାଙ୍କର ପୁତ୍ର କ୍ଲବର ସଭ୍ୟ ହୋଇ ବା ମାଉଣ୍ଡକୁ ଯାଇ ନଷ୍ଟ ହୋଇଗଲା।

ଏ ସବୁ ଦିଗ ପ୍ରତି ନଜର ଦେଇ ପ୍ରଗତି କ୍ଲବ ନିଜକୁ ମଜବୁତ କରୁ; ନୂତନ ଯୁବପିଢ଼ିକୁ ଗ୍ରହଣ କରି; ଉତ୍ତମ ମାର୍ଗରେ ନିଜକୁ ସମ୍ପ୍ରସାରିତ କରୁ। ସେଥିପାଇଁ ବିଗତ ତିନି / ଚାରି ବର୍ଷ ହେଲା ସମ୍ବିଧାନ ପରିବର୍ତ୍ତନ, ନୂତନ ସଭ୍ୟ ଗ୍ରହଣ, ନୂତନ କର୍ମକର୍ତ୍ତା ନିର୍ବାଚନ, ଲାଇବ୍ରେରୀର ପୁନଃ ଗଠନ ପ୍ରଭୃତି ଅନେକ ଗଠନମୂଳକ କାର୍ଯ୍ୟ ପାଇଁ ଆଲୋଚନା ଅବ୍ୟାହତ ରହିଛି। ଠିକ୍ ସମୟରେ ଅର୍ଥାତ୍ ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ କ୍ଲବର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ୨୦୦୦ ମସିହାରେ ପାଳିତ ହୋଇପାରି ନାହିଁ। ୧୯୯୯ ମସିହାର ମହାବାତ୍ୟା ପରେ ଏହାର ପରିକଳ୍ପନା ଅସମ୍ଭବ ଥିଲା। କିନ୍ତୁ ଏବେ ହେଲା ସୁବର୍ଣ୍ଣ ଜୟନ୍ତୀର ଯୋଜନା। ଏହି ଅବସରରେ କୁଞ୍ଜ ଭାଇର ଶେଷ

ନାଟକରେ ଅଭିନୟ କରିବାର ଇଚ୍ଛାକୁ ପୂରଣ କରାଯାଇ ପାରିବ। ଏ ସମସ୍ତ ପରିକଳ୍ପନାର ସମନ୍ୱୟରେ ମନରେ ସ୍ୱତଃ ଜାଗୃତ ହେଲା ବରୀ ମହୋତ୍ସବ : ଏହା ତିନି / ଚାରି ବର୍ଷ ତଳର ଘଟଣା। କିନ୍ତୁ ପରିବେଶ ଓ ସହଯୋଗ ଯଥେଷ୍ଟ ପରିମାଣରେ ସହାୟକ ନଥିଲା।

ପରିକଳ୍ପନା ଓ ଏହାକୁ କାର୍ଯ୍ୟକାରୀ କରାଇବା ମଧ୍ୟରେ ଅନେକ ବାଧା। ହାତରେ ଅର୍ଥ ନାହିଁ; ରାଜ୍ୟପାଳ ଉତ୍ସବର ଶୁଭ ଉଦ୍‌ଘାଟନ କରିବାକୁ ଅନିଚ୍ଛା ପ୍ରକାଶ କଲେ। ରାଜ୍ୟପାଳ ମହାମାନ୍ୟ କୈଳାସନାଥ କାଟ୍‌ଜୁ, ମହାମାନ୍ୟ ରେଡ଼ି ଏ ଅଞ୍ଚଳକୁ ଆସିଛନ୍ତି। ତାଙ୍କର ଆସିବା ଅନେକ ଦିନ ହୋଇଗଲାଣି। ବର୍ତ୍ତମାନ ରାଜ୍ୟପାଳ ବରୀକୁ ଆସିଥିଲେ ଏ ଅଞ୍ଚଳର ମର୍ଯ୍ୟାଦା ବୃଦ୍ଧି ହୋଇଥା'ନ୍ତା। ତାଙ୍କର ଏ କାର୍ଯ୍ୟକ୍ରମକୁ ବାତିଲ କରିବା ଆମକୁ ଦୁଃଖ ଦେଇଛି। ଏହା କ୍ଲବ ସଭ୍ୟମାନଙ୍କୁ ଓ ବରୀବାସୀଙ୍କୁ ମ୍ରିୟମାଣ କରିଦେଇଛି। ଏହାର ପ୍ରଭାବ ସୁଦୂର ପ୍ରସାରୀ। ଏ ଘଟଣା ଅନେକଙ୍କୁ ଅପମାନିତ ଓ କ୍ଷତ ବିକ୍ଷତ କରିଛି। ବରୀ ମହୋତ୍ସବ ପାଇଁ କ୍ଲବର କର୍ମକର୍ତ୍ତାଗଣ ମୋତେ କରିଛନ୍ତି ମୁଖ୍ୟ ଉପଦେଷ୍ଟା।

ଜୁନ୍ ତିନି ତାରିଖ ମଧ୍ୟରାତ୍ର। କ୍ଲବର କେତେକ କର୍ମକର୍ତ୍ତା ଓ ଅନ୍ୟ ସଭ୍ୟମାନଙ୍କ ସହିତ କ୍ଲବ ଗୃହରେ ପରିସ୍ଥିତିର ସମୀକ୍ଷା କରିଥିଲୁ। ଏକ ପ୍ରସ୍ତାବ ଥିଲା; କ୍ଲବ ବରୀ ଉତ୍ସବକୁ ପ୍ରତ୍ୟାହାର କରି ନେଉ। କିନ୍ତୁ ପ୍ରଶ୍ନ ଉଠିଲା; ଏ ଉତ୍ସବ ପାଇଁ ଅନେକ ଅର୍ଥ ବିନିଯୋଗ ହୋଇସାରିଛି । ମଞ୍ଚ ନିର୍ମାଣ ହେଲାଣି; ନାଟକର ନିର୍ଦ୍ଦେଶକ ଡାକ୍ତର ରାଜକିଶୋର ପଣ୍ଡା ଅନେକ କଳାକାର ସୃଷ୍ଟି କରି ସାରିଲେଣି; ନାଟକରେ ନାଚ, ଗୀତ ଖଞ୍ଜା ହୋଇସାରିଲାଣି; ନାଟକର ଶେଷ ଅଂଶ ପରିବର୍ତ୍ତନ କରି ନାଟକର ନିର୍ଦ୍ଦେଶକ କୁଞ୍ଜଭାଇ ପାଇଁ ଏକ ଭୂମିକା ସୃଷ୍ଟି କରି ସାରିଲେଣି, ସୋମ ସ୍ୱାଗତ ସଂଗୀତର ମୂର୍ଚ୍ଛନା ତୋଳି ସାରିଲାଣି। ଏ ସବୁ କ'ଣ ବ୍ୟର୍ଥ ଯିବ ?

ଚିନ୍ତାକଲି ପରିସ୍ଥିତିକୁ ଅନୁଧ୍ୟାନ କରି ପୁନରାୟ ଠିକ୍ ସମୟରେ ପ୍ରଚଣ୍ଡ ବର୍ଷା ଓ ବାତ୍ୟା ହୋଇଗଲେ ସବୁ ସମସ୍ୟାର ସମାଧାନ ହୋଇଯିବ। ମୁଁ ଅବିରତ ଦଗ୍ଧ ହେଉଥିଲି ମନ ଭିତରେ। ଆତ୍ମଗ୍ଲାନିରେ ବ୍ୟଥିତ ହେଉଥିଲି। ସେହି ଗ୍ଲାନି ମଧ୍ୟ ସଭ୍ୟମାନଙ୍କୁ ଛୁଇଁଥିଲା।

ମନର କଥା ମନରେ ରଖି ସମସ୍ତେ କ୍ଲବ ଘରୁ ବିଦାୟ ନେଲୁ ବିଳମ୍ବିତ ରାତ୍ରିର ଅନ୍ତିମ ପ୍ରହରରେ।

ଜୁନ୍ ଚାରି ତାରିଖ ମଧ୍ୟାହ୍ନ; ସ୍କୁଲ ପ୍ରାଙ୍ଗଣ; ଗୀତ ନାଚର ଆସର ଜମିଛି। ସେଠାରେ କର୍ମକର୍ତ୍ତାଙ୍କ ସହିତ ଆହୁରି ଅନେକ ବ୍ୟକ୍ତି ଥିଲେ; ନୃତ୍ୟଶିଳ୍ପୀ କବିତା ଦ୍ୱିବେଦୀ ଯେ କି ବରୀ ଅଞ୍ଚଳର ବୋହୂ ମଧ ଉପସ୍ଥିତ ଥିଲେ।

ଉପସ୍ଥିତ ଲୋକମାନଙ୍କ ମନରେ ଦୁଇଟି ଭାବର ଧାରା ପରିଲକ୍ଷିତ ହେଉଥିଲା। ଗୋଟିଏ ଥିଲା ଉତ୍ସବମୁଖର ଆଗ୍ରହ; ଅନ୍ୟଟି ଥିଲା ଅନାଗ୍ରହ। ଏହି ଦୁଇ ବିପରୀତ ଭାବର ମଧ ସ୍ଥଳରେ ମୁଁ ବ୍ୟଥିତ ହୃଦୟରେ ଚିନ୍ତାରେ ନିମଗ୍ନ ଥିଲି। ମୋ ମଧ୍ୟରେ ଭିନ୍ନ ଏକ ସ୍ୱର ଦାନା ବାନ୍ଧୁଥିଲା।

ଅଚାନକ ମୁଁ କବିତାକୁ ପଚାରିଲି, "ତୁମ ନାଚରେ ତମେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ବ୍ୟବହାର କରିବ କି ?" ସେ କହିଲା- "ନା, ପାଖରେ ମୂର୍ତ୍ତି ନାହିଁ।" ମୁଁ ସୋମକୁ ପଚାରିଲି- ସେ ତତ୍କ୍ଷଣାତ୍ ମୋତେ ଏକ ମୂର୍ତ୍ତି କଳାକାର ପାଖକୁ ନେଇଗଲା ଓ ସେ ମୋ କହିବା ମୁତାବକ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ନିଶ୍ଚୟ ତିଆରି କରିଦେବ ବୋଲି ପ୍ରତିଶ୍ରୁତି ଦେଲା ଓ ତତ୍କ୍ଷଣାତ୍ କାର୍ଯ୍ୟ ଆରମ୍ଭ କରିଦେଲା।

ଅପରାହ୍ନ ପ୍ରାୟ ତିନି ଘଣ୍ଟା, ମୁଁ କର୍ମକର୍ତ୍ତାମାନଙ୍କୁ ଏକ ଭିନ୍ନ ଧରଣର ଉଦ୍‌ଘାଟନୀ ଉତ୍ସବ ଯୋଜନା ସମ୍ପର୍କରେ ପରାମର୍ଶ ଦେଲି। ସମସ୍ତଙ୍କ ମନକୁ ପାଇଲା। ସଭା କାର୍ଯ୍ୟ ପରିଚାଳନା କରିବାପାଇଁ ମନରେ ସାହସ ସଂଚାର ହେଲା। ମୁଁ ଘରକୁ ଫେରିଲି ଓ ଉଦ୍‌ଘାଟନୀ ସଭାର ବିଭିନ୍ନ ପାହାଚ ମନେ ମନେ ନିରୂପଣ କରିନେଲି।

× × × × × × ×

ଭାଗବତ ଗୋସାଇଁ ବା ଶ୍ରୀଜଗନ୍ନାଥ ଆମ ଘରର ଠାକୁର। ତାଙ୍କ ପାଖରେ ମୋର ବୋଉ ସମର୍ପଣ କରିଥିଲା ମୋତେ ରୋଗମୁକ୍ତ କରିବା ପାଇଁ। ମୋତେ ବାବାଜୀ କରାଇଦେଲା ସତ; କିନ୍ତୁ ଅନ୍ତତଃ ମୋ ବାହାଘର ପୂର୍ବରୁ ସଂସାରକୁ ଫେରାଇ ଆଣିବାର ଯୋଜନା ତା'ର ସଫଳ ହୋଇପାରିଲା ନାହିଁ। ସେ ମୋ ସାଙ୍ଗରେ ଲାଗି ଲାଗି ଶେଷରେ ସେପୁରକୁ ଚାଲିଗଲା। ମୁଁ ତାଙ୍କ ପାଖରେ ଆଜୀବନ ବନ୍ଧାପଡ଼ି ରହିଗଲି।

ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବା ସମୟରେ ଆତଙ୍କବାଦୀ ଦୁର୍ବୃତ୍ତମାନେ ଗ୍ୟାରେଜରେ ଥିବା ମୋ ନିଜର ବ୍ୟକ୍ତିଗତ ଗାଡ଼ିକୁ ଦ୍ରୌପଦୀକୁ ଟାଣି ଟାଣି କୁରୁ ସଭାକୁ ଆଣିଲା ପରି ଶୂନ୍ୟେ ଶୂନ୍ୟେ ଟେକି ଆଣି ସେଥିରେ ଅଗ୍ନି ସଂଯୋଗ କରିଥିଲେ। କୋଠିର ଉପର ମହଲାକୁ ପଥର ଖଣ୍ଡମାନ ନିକ୍ଷେପ କଲେ। ଯେଉଁଠାରେ ଠାକୁର ଶ୍ରୀଜଗନ୍ନାଥ, ଭାଇ ଭଉଣୀ ସହିତ ବିଜେ କରିଥିଲେ। ଭାବୁଥିଲି ଦୁଃଶାସନମାନଙ୍କର ପଥରଖଣ୍ଡ ଶ୍ରୀଜଗନ୍ନାଥଙ୍କୁ ଟପି ମୋ ପାଖକୁ ଆସିପାରିବ ତ ?

ଆଜିର ଏହି ଅତ୍ୟନ୍ତ ସମ୍ବେଦନଶୀଳ ମୁହୂର୍ତ୍ତରେ ମୋର କାହିଁକି କଳାଠାକୁରଙ୍କ କଥା ବେଶି ମନେ ପଡ଼ିଲା। ମୋତେ ଲାଗିଲା ମୋର ଆତ୍ମଗ୍ଲାନି ଦୂର କରିବା ପାଇଁ ଓ ବରୀ ଉତ୍ସବକୁ ଏକ ନିଶ୍ଚିତ ବିଶୃଙ୍ଖଳାରୁ ବଞ୍ଚାଇବା ପାଇଁ ସେହି ହିଁ କେବଳ ସହାୟ ହେବେ।

× × × × × × ×

ଦକ୍ଷିଣ ପଶ୍ଚିମ ମୋସୁମୀ ପ୍ରବାହ ଆସନ୍ନ ପ୍ରାୟ; ଆକାଶ ଅନେକ ସମୟରେ ମେଘାଚ୍ଛନ୍ନ। ମଝିରେ ମଝିରେ ଅସରାଏ ବର୍ଷା; କିନ୍ତୁ ସୁଖର କଥା ଆଜିର ଉଦ୍‌ଘାଟନୀ ମହୋତ୍ସବର ସନ୍ଧ୍ୟାଟି ମେଘମୁକ୍ତ ଆକାଶ ତଳେ ବେଶ୍ ମନୋରମ ପରିବେଶ ସୃଷ୍ଟି କରିଥିଲା। କୃପାସିନ୍ଧୁ ବିଦ୍ୟାଭବନର ପ୍ରଶସ୍ତ ପରିସର ବେଶ୍ ଆକର୍ଷଣୀୟ। ମୁକ୍ତ ରଙ୍ଗମଞ୍ଚ, ଦର୍ଶକଙ୍କ ପାଇଁ ମୁକ୍ତ ଗ୍ୟାଲେରୀ, ଆଲୋକିତରେ ସୁସଜ୍ଜିତ, ମୃଦୁ ସମୀରଣ, ମନକୁ ଉଚ୍ଚାଟ କରୁଥିବା ଭରପୂର ଜନତା; କିନ୍ତୁ ଜନତାଙ୍କ ମଧରେ ଏକ ମୃଦୁ ଗୁଞ୍ଜରଣ। ଅନେକ ଆଶା ଓ ଆକାଂକ୍ଷା। ଉତ୍ସବକୁ କେନ୍ଦ୍ର କରି ବିଗତ ଦିନମାନଙ୍କର ମତାନ୍ତରରେ ସୃଷ୍ଟି ଅଶ୍ୱସ୍ତିପୂର୍ଣ୍ଣ ପରିବେଶ । ଗମ୍ଭୀର ପରିବେଶରେ କ'ଣ ଏଇଠି ଏକ ଆଗ୍ନେୟଗିରିର ବିସ୍ଫୋରଣ ଘଟିବ କି ?

ଉତ୍ସବ ଉଦ୍‌ଘାଟନ କରିବ କିଏ ?

ଏସବୁ ପ୍ରଶ୍ନର ପୂର୍ଣ୍ଣଚ୍ଛେଦ ଟାଣି ବରୀ ମହୋତ୍ସବର ଉଦ୍‌ଘାଟନୀ ଉତ୍ସବର ପ୍ରାରମ୍ଭରେ ଏକ ବିରାଟ ଚୌକି ଉପରେ ଉପବେଶନ କରୁଥିଲେ ଶ୍ରୀଜଗନ୍ନାଥ; ଆଉ ତାଙ୍କ ସାମ୍ନାରେ ମୁଁ । ଏହା ବ୍ୟତୀତ ମଞ୍ଚ ଉପରେ ଆଉ କେହି ନାହାନ୍ତି। ସମସ୍ତ ସମ୍ମାନିତ ଅତିଥି ମଞ୍ଚ ତଳେ ଉପବିଷ୍ଟ।

ଯେତେବେଳେ ସଭାର ପରିଚାଳକ ବଜ୍ର ଗମ୍ଭୀର ସ୍ୱରରେ ବରୀ ମହୋତ୍ସବକୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଉତ୍ସର୍ଗ କଲେ ଓ ମହୋତ୍ସବକୁ ଉଦ୍‌ଘାଟନ କରିବାକୁ ଆବାହନ କଲେ, ସେତେବେଳକୁ ବହୁ ଆଶଙ୍କାରେ ଥିବା ଜନତା ଏ ପ୍ରକାର ଅଭିନବ ଉପାୟରେ ଉଦ୍‌ଘାଟନ ହେବା ପ୍ରକ୍ରିୟାରେ ଚକିତ, ସ୍ତବ୍ଧ ଓ ଆନନ୍ଦ ବିଭୋର ହୋଇଗଲେ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ନିଜକୁ ସମର୍ପଣ କରି ଉତ୍ସବକୁ ଉଦ୍‌ଘାଟନ କରିବା ନିମନ୍ତେ ଆବାହନ କରି କହିଥିଲି;

"ହେ ଦୟାମୟ ! ହେ ବିଶ୍ୱନିୟନ୍ତା, ସର୍ବବ୍ୟାପୀ, ସର୍ବହୃଦୟସ୍ପର୍ଶୀ କରୁଣାମୟ। ଭାରତ ଯୁଦ୍ଧରେ ତୁମେ ହିଁ ଥିଲ ଅର୍ଜୁନଙ୍କ ନନ୍ଦିଘୋଷ ରଥର ସାରଥୀ। କେବଳ ଅର୍ଜୁନ କାହିଁକି; ତୁମେ ପ୍ରଭୁ ସମଗ୍ର ବିଶ୍ୱବାସୀଙ୍କ ଜୀବନ ରଥର ସାରଥୀ। ତୁମରି ଇଚ୍ଛାରେ ଆମେ ସମସ୍ତେ ପରିଚାଳିତ।

ଆଜିର ଏହି ବରୀ ମହୋତ୍ସବରେ ତୁମେ ହିଁ କର୍ତ୍ତା, ତୁମେ ହିଁ ଉଦଦେଷ୍ଟା ।

ତେଣୁ ହେ ନମସ୍ୟ !

ତୁମରି ଇଚ୍ଛା ହିଁ ପୂରଣ ହେଉ ।

ଆଜିର ଏହି ସମ୍ବେଦନଶୀଳ ମୁହୂର୍ତ୍ତରେ ତୁମେ, କେବଳ ତୁମେ ହିଁ ଏହି ବରୀ ମହୋତ୍ସବର ଶୁଭ ଉଦ୍‌ଘାଟନ କର; ଏତିକି ମାଗୁଣି ।

ଏତିକି କହି ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ସମ୍ମୁଖରେ ସବିନୟ ଦଣ୍ଡାୟମାନ ହୋଇ ପୁଷ୍ପ ଅର୍ପଣ ପୂର୍ବକ କରୁଣାମୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବରୀ ମହୋତ୍ସବର ଉଦ୍‌ଘାଟକ ରୂପେ ବରଣ କଲି । ସମସ୍ତଙ୍କ ଅଜାଣତରେ ଅଜାଣତରେ, ଏହି ଅଭିନବ ଉପାୟରେ ସମସ୍ତଙ୍କୁ ବିସ୍ମିତ କରିଥିଲି ଉଦ୍‌ଘାଟନୀ ସଭାର ସଭାପତି ରୂପେ ।

ଏହି ଘୋଷଣା ଜନତାଙ୍କୁ ବିସ୍ମିତ କରିଥିଲା; କିନ୍ତୁ ମୁଗ୍ଧ ମଧ କରିଥିଲା । ସମସ୍ତେ ଆଶ୍ୱସ୍ତ ହୋଇଗଲେ; ବିପଦ ଟଳିଗଲା । ଘନ ଘନ କରତାଳିରେ ଜନତାର ସମର୍ଥନ ମିଶି ରହିଥିଲା ।

ଏକକ ସମର୍ପଣ ଅପେକ୍ଷା ସେହି ସମୟରେ ଏକତ୍ରିତ ଭାବରେ ଅନେକଙ୍କର ସମର୍ପଣର ପ୍ରଭାବ ପରସ୍ପର ଗୁଣି ହୋଇ ବହୁଗୁଣିତ ହୋଇଯାଏ । ତାହା ଏକ ବିରାଟ ସମର୍ପଣରେ ପରିଣତ ହୁଏ । ଯଦି ଜଣକର ସମର୍ପଣର ମୂଲ୍ୟାୟନ ୩ ହୁଏ, ଆଉ ଜଣକର ମୂଲ୍ୟାୟନ ୪ ହୁଏ; ତେବେ ସେମାନେ ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ସମୟରେ ସମର୍ପଣ କରୁଥିଲେ ସର୍ବମୋଟ୍ ସାମୂହିକ ସମର୍ପଣର ମୂଲ୍ୟାୟନ ହୁଏ ୩+୪= ୭; କିନ୍ତୁ ଦୁଇଜଣ ଏକ ସମୟରେ ଓ ଏକ ସାଙ୍ଗରେ ସମର୍ପଣ କଲେ ତାହାର ମୂଲ୍ୟାୟନ ହୁଏ ୩ × ୪ = ୧୨ । ସେଥିପାଇଁ ସତ୍‌ସଙ୍ଗ ଓ ମିଳିତ ପ୍ରାର୍ଥନାକୁ ପ୍ରାଧାନ୍ୟ ଦିଆଯାଏ । ସେହିପରି ସାମୂହିକ କରତାଳି ବା ହୁଳହୁଳି ବା ହରିବୋଲ ନାଦର ପ୍ରଭାବ ଅନେକ ଗୁଣରେ ଅଧିକ ।

ସଭାପତିଙ୍କ ବ୍ୟକ୍ତିଗତ ସମର୍ପଣ ଓ ଜନତାଙ୍କ କରତାଳି ମାଧ୍ୟମରେ ପରିଣତ ହେଲା ବିପୁଳ ଜନ ସମର୍ଥନ ଓ ଏହାର ମୂଲ୍ୟାୟନ ଥିଲା ବହୁତ ଅଧିକ । ଭାବୁଥିଲି ଏହା ଆକାଶ, ଭୂମି, ପାତାଳକୁ ପ୍ରକମ୍ପିତ କରି ପୁରୀ ନୀଳାଚଳ ଧାମରେ କଳାଠାକୁରଙ୍କୁ ଝୁଙ୍କେଇ ଉଠେଇ କହିଥିବ ।

"ଉଠ ପ୍ରଭୁ, ସେ ପାଖରେ ବରୀଠାରେ ଏକ ସମ୍ବେଦନଶୀଳ ମୁହୂର୍ତ୍ତ ଉପନୀତ; ମ୍ରିୟମାଣ ବରୀବାସୀ; ଦୁଃଖର ଲହରୀ ଭାଙ୍ଗୁଛି ତାଙ୍କ ମୁହଁରେ । ତୁମେ ହିଁ ଉତ୍ସବକୁ ଉଦ୍‌ଘାଟନ କର, ସେମାନଙ୍କର ଗ୍ଲାନିକୁ ଦୂର କର । ତ୍ରୁଟି ମାର୍ଜନା କର ।"

ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ଭବତୁମେ ।

ଜନତାଙ୍କ ପ୍ରତିନିଧି ସ୍ୱରୂପ ପାଞ୍ଚଜଣ ନିମନ୍ତ୍ରିତ ବରେଣ୍ୟ ଅତିଥି ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଥିବା ପ୍ରଦୀପକୁ ପ୍ରଜ୍ୱଳନ କଲେ। ସେମାନେ ହେଲେ - ସର୍ବାଗ୍ରେ କୁଞ୍ଜ ବିହାରୀ ଦାସ, ଦୁଇ ସମ୍ମାନୀତ ଅତିଥି ହେଲେ - ପ୍ରସିଦ୍ଧ ନୃତ୍ୟଶିଳ୍ପୀ କବିତା ଦ୍ୱିବେଦୀ ଓ କିଶୋରଚନ୍ଦ୍ର ମହାନ୍ତି। ପ୍ରଦୀପ ପ୍ରଜ୍ୱଳନ କରି ଠାକୁରଙ୍କୁ ଆବାହନ କରାଯାଏ ମନୁଷ୍ୟ ମନ ମଧ୍ୟରେ ଥିବା ତମସାକୁ ଦୂର କରିବା ନିମନ୍ତେ।

ଏହାପରେ ବରୀ ମାଟିର ଉଚ୍ଚ ପ୍ରଶଂସା କରି ଏକ ସ୍ୱାଗତ ସଙ୍ଗୀତ ପରିବେଷଣ ହୋଇଥିଲା ସୋମର ନିର୍ଦ୍ଦେଶରେ। ଏହି ସଙ୍ଗୀତର ସ୍ୱର ଓ ତାଳ ସମସ୍ତଙ୍କୁ ଅଭିଭୂତ କରି ଦେଇଥିଲା। ସ୍ୱାଗତ ଭାଷଣ ପରେ କବିତା ଦ୍ୱିବେଦୀଙ୍କ ଆକର୍ଷଣୀୟ ଓଡ଼ିଶୀ ନୃତ୍ୟ ଆରମ୍ଭ। ପ୍ରଥମ ଅଭିନୟ ପରେ ତାଙ୍କୁ ବରୀବାସୀଙ୍କ ତରଫରୁ ସମ୍ବର୍ଦ୍ଧନା। ତା'ପରେ ତାଙ୍କର ଦୁଇଟି ଅଭିନୟ ପରେ ପ୍ରଗତି କ୍ଲବର ବିବରଣୀ ପାଠ, ଅତିଥି ଦ୍ୱୟଙ୍କ ଦ୍ୱାରା ଛଅଜଣ ବ୍ୟକ୍ତିଙ୍କର ସମ୍ବର୍ଦ୍ଧନା ଏବଂ ଅତିଥିମାନଙ୍କର ଭାଷଣ, ସମ୍ବଲପୁରୀ ନୃତ୍ୟ, ଧନ୍ୟବାଦ ଅର୍ପଣ ଓ ଶେଷରେ ଘୋଡ଼ାନାଚ। ସଭାକାର୍ଯ୍ୟ ଓ ମନୋରଞ୍ଜନ କାର୍ଯ୍ୟମାନ ଗୁନ୍ଥି ହୋଇ ରହିଲା। ମଞ୍ଚ ପରିଚାଳନା ମଞ୍ଚତଳୁ ପରିଚାଳିତ ହେଲା। ଶ୍ରୀଜଗନ୍ନାଥଙ୍କ ବ୍ୟତୀତ ଅନ୍ୟ ସମସ୍ତେ ମଞ୍ଚର ବାହାରେ ରହିଲେ। ଯାହାର ଯେତେବେଳେ ପାଳି ପଡ଼ିଲା ସେ ମଞ୍ଚ ଉପରକୁ ଆସିଲେ।

ଏହିପରି ଭାବରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ କୃପାରୁ ପ୍ରାୟ ଚାରିଘଣ୍ଟାର କାର୍ଯ୍ୟକ୍ରମ ଜନତାଙ୍କୁ ମୁଗ୍ଧ କରି ରଖିନେଲା। କୁଞ୍ଜଭାଇ କହିଲା - "ବହୁତ ଭଲ ହେଲା, ମୁଁ ଏ ପ୍ରକାର କାର୍ଯ୍ୟକ୍ରମ କେବେହେଲେ ଦେଖିନଥିଲି।"

ମୋ ତରଫରୁ, ପ୍ରଗତି କ୍ଲବ ତରଫରୁ ଓ ସମସ୍ତ ଜନତାଙ୍କ ତରଫରୁ ତୁମକୁ ପ୍ରଭୁ ଜ୍ଞାପନ କରୁଛୁ ବରୀବାସୀଙ୍କର ସମ୍ମିଳିତ ଗଭୀର କୃତଜ୍ଞତା।

ଓଁ ନମୋ ଭଗବତେ ବାସୁଦେବାୟ, ଜଗନ୍ନାଥାୟ।

ଶ୍ରୀଜଗନ୍ନାଥ, ଅପ୍ରେଲ ୨୦୧୦



# ଅନନ୍ତ ଲୀଳା : ଏକ ଆଧ୍ୟାତ୍ମିକ ସମୀକରଣ

ମୁଁ ଅଛି, ଏହାହିଁ ପ୍ରମାଣ; ମୋର ପିତାମାତା ଥିଲେ । ମୋର ଅସ୍ତିତ୍ୱ ହିଁ ଜାହିର କରେ ମୋର ହଜାର ଯୁଗ ପୂର୍ବଜମାନଙ୍କର ଅସ୍ତିତ୍ୱ । ଏହି ପ୍ରକଟିତ ବିଶ୍ୱ, ଯେଉଁଥିରେ ଅସୁମାରୀ ତାରା, ନକ୍ଷତ୍ର, ଗ୍ରହ, ଉପଗ୍ରହ, ମେଘ, ଆକାଶ, ଅଣୁ, ପରମାଣୁ ତଥା ନର-ନାରୀ, ପଶୁ-ପକ୍ଷୀ, ପର୍ବତ, ନଦୀ-ନାଳ, ବନସ୍ତ ପ୍ରଭୃତି ବିରାଜମାନ କରୁଛନ୍ତି । ସେହିମାନେ ହିଁ ଅକାଟ୍ୟ ପ୍ରମାଣ ଅପ୍ରକଟିତ ଅସ୍ତିତ୍ୱର । ବ୍ୟକ୍ତ ହିଁ ପ୍ରମାଣ ଅବ୍ୟକ୍ତର ଓ ଆକାର ହିଁ ପ୍ରମାଣ ନିରାକାରର ।

ଖ୍ରୀଷ୍ଟପୂର୍ବ ୩୦୦୦ ବର୍ଷ ପୂର୍ବେ ଋଷି ପ୍ରଜାପତି ଋକ୍‌ବେଦରେ ସୃଷ୍ଟିର ରହସ୍ୟ ସମ୍ପର୍କରେ ତାଙ୍କର ବକ୍ତବ୍ୟ ଉତ୍‌ଥାପନ କରିଛନ୍ତି ନାସଦୀୟସୁକ୍ତ ମାଧ୍ୟମରେ ।

ନାସଦୀୟସୁକ୍ତରେ ସାତଗୋଟି ଶ୍ଳୋକ ରହିଛି । ପ୍ରଥମ ତିନିଟି ଶ୍ଳୋକରେ ନିର୍ଗୁଣ ବ୍ରହ୍ମନ୍, ନିରାକାର ବା ଶୂନ୍ୟତ୍ୱର କିଛି ଆଭାସ ରହିଛି । ଚତୁର୍ଥ ଶ୍ଳୋକରେ ଏହି ଅବ୍ୟକ୍ତରୁ ବ୍ୟକ୍ତ ହେବାର ଇଚ୍ଛାଶକ୍ତି ଜାଗ୍ରତ ହେବା ବିଷୟ ଦର୍ଶାଯାଇଛି । ପଞ୍ଚମ, ଷଷ୍ଠ ଓ ସପ୍ତମ ଶ୍ଳୋକରେ ସୃଜନଶୀଳତା ବା ସୃଷ୍ଟି ପ୍ରକଟିତ ହୋଇଛି ।

ନାସଦୀୟସୁକ୍ତ ପରି ଋଷି ନାରାୟଣ ଋକ୍‌ବେଦରେ ବର୍ଣ୍ଣିତ ପୁରୁଷସୁକ୍ତରେ ଭୌତିକ ଜଗତର ସୃଷ୍ଟି ଓ କ୍ରମବିକାଶ ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି ।

ପରମ ସତ୍ୟ ହେଉଛି ଏକ ଓ ଅନନ୍ୟ, 'ତଦ୍ ଏକମ୍', ଏହା ବିଭିନ୍ନ ନାମରେ ବର୍ଣ୍ଣିତ, ଯଥା - ନିରାକାର, ନିର୍ଗୁଣ ବ୍ରହ୍ମନ୍, ଅବ୍ୟକ୍ତ, ଅପ୍ରକଟିତ, ଅବର୍ଣ୍ଣନୀୟ, ନେତି । ପ୍ରକଟିତ ବିଶ୍ୱ ହେଉଛି ସଗୁଣ ବ୍ରହ୍ମନ୍ ଓ ଏହା ବିଭିନ୍ନ ରୂପରେ ଅହରହ ପ୍ରକଟିତ । 'ଏକ' ନିରନ୍ତର ଭାବରେ ରୂପାନ୍ତରୀକରଣ ହୋଇ 'ଅନେକ' ହେଉଛି । 'ଏକ'ରୁ 'ଅନେକ' ହେବା, 'ଅରୂପ'ରୁ 'ରୂପ' ହେବା, 'ଅବ୍ୟକ୍ତ'ରୁ 'ବ୍ୟକ୍ତ' ହେବା, 'ନିର୍ଗୁଣ ବ୍ରହ୍ମନ୍'ରୁ 'ସଗୁଣ ବ୍ରହ୍ମନ୍' ହେବା, ଏହି ତତ୍ତ୍ୱକୁ ଏକ ଆଧ୍ୟାତ୍ମିକ ବା ଅଣଭୌତିକ ସମୀକରଣ କୁହାଯାଇପାରେ ।

ପୁନଶ୍ଚ ଯେତେବେଳେ ଆକାର ସବୁ ଲୀନ ହୋଇଯିବ ନିରାକାରରେ, ପ୍ରାଣୀଜଗତ ବୀଜ ମଧ୍ୟରେ, କର୍ମମୁଖରତା ସ୍ଥିରତାରେ, ସେତେବେଳେ ସୃଷ୍ଟିର ବିଲୟ ଘଟିବ । ସମସ୍ତ ବିରୋଧାଭାସ ଯଥା- ଅସ୍ତିତ୍ୱ ଓ ନାସ୍ତିତ୍ୱର ତଫାତ୍ ଲୀନ ହେବ, ସମୟ ହେବ ସ୍ଥିର । ସଗୁଣ ବ୍ରହ୍ମନ୍ ଫେରିଯିବ ନିର୍ଗୁଣ ବ୍ରହ୍ମନ୍‌ର ଅନ୍ତଃସ୍ଥଳକୁ ଏବଂ ଆତ୍ମା ବା ପରମ ସତ୍ୟ ବା ମହାଶୂନ୍ୟତା ସୁପ୍ତ ଅବସ୍ଥାରେ ବୀଜ ମଧ୍ୟରେ ଜୀବିତ ହୋଇ ହୁଏତ ପୁଣି ଅପେକ୍ଷା କରିବ କୌଣସି ସର୍ଜନା ସମ୍ଭାବନାରେ । ଏହାହିଁ ଅନନ୍ତଲୀଳା, ସଗୁଣ ବ୍ରହ୍ମନ୍ ଓ ନିର୍ଗୁଣ ବ୍ରହ୍ମନ୍‌ର ଏକ ସମୀକରଣ ।

ଅନେକ ବୈଜ୍ଞାନିକ ପ୍ରକୃତିର ନିୟମକୁ କେତେକ ସମୀକରଣ ମାଧ୍ୟମରେ ପ୍ରକାଶ କରିଛନ୍ତି । ଉଦାହରଣ ସ୍ୱରୂପ ନିଉଟନ୍‌ଙ୍କର ମାଧ୍ୟାକର୍ଷଣ ଶକ୍ତିର ସମୀକରଣକୁ ଏକ ଭୌତିକ ବା ସଗୁଣ ବ୍ରହ୍ମନ୍‌ର ସମୀକରଣ କୁହାଯାଇପାରେ । ସେହିପରି ଫାରାଡେଙ୍କ ଦ୍ୱାରା ବିଦ୍ୟୁତ୍ ସରବରାହ ଓ ଚୁମ୍ବକୀୟ ଶକ୍ତିର ସମୀକରଣ, ଆଇନ୍‌ଷ୍ଟାଇନ୍‌ଙ୍କ ଶକ୍ତି, ପଦାର୍ଥ ଓ ଆଲୋକର ବେଗ ସମ୍ପର୍କିତ ସମୀକରଣଗୁଡ଼ିକ ମଧ୍ୟ ଭୌତିକ ।

ନିର୍ଗୁଣ ବ୍ରହ୍ମନ୍‌ର ନିରନ୍ତର ଭାବରେ ସଗୁଣ ବହ୍ମନ୍‌ରେ ରୂପାନ୍ତରୀକରଣ ଓ ସଗୁଣ ବ୍ରହ୍ମନ୍‌ର ନିରନ୍ତର ଭାବରେ ନିର୍ଗୁଣ ବ୍ରହ୍ମନ୍ ରୂପାନ୍ତରୀକରଣକୁ 'ଅନନ୍ତ ଲୀଳା' କୁହାଯାଏ । ନିର୍ଗୁଣ ବ୍ରହ୍ମନ୍ ଓ ସଗୁଣ ବ୍ରହ୍ମନ୍‌ର ଏହି ସମ୍ପର୍କକୁ ନିମ୍ନଲିଖିତ ଶ୍ଳୋକରେ ରୂପାୟିତ କରାଯାଇଛି ।

ଓଁ ପୂର୍ଣ୍ଣ ମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣ ମୁଦଚ୍ୟତେ

ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବ ବଶିଷ୍ୟତେ ।

ଅର୍ଥାତ୍ ଇଏ (ନିର୍ଗୁଣ ବ୍ରହ୍ମନ୍) ପୂର୍ଣ୍ଣ; ସେ (ସଗୁଣ ବ୍ରହ୍ମନ୍) ମଧ୍ୟ ପୂର୍ଣ୍ଣ; ନିର୍ଗୁଣ ବ୍ରହ୍ମନ୍‌ରୁ ସଗୁଣ ବ୍ରହ୍ମନ୍ ବାଦ୍ ଦେଲେ ଯାହା ରହେ, ତାହା ମଧ୍ୟ ପୂର୍ଣ୍ଣ (ନିର୍ଗୁଣ ବ୍ରହ୍ମନ୍) ।

ଏହା ଏକ ଆଧ୍ୟାତ୍ମିକ ସମୀକରଣ ।

ନିର୍ଗୁଣ ବ୍ରହ୍ମନ୍ = ସଗୁଣ ବ୍ରହ୍ମନ୍ = ନିର୍ଗୁଣ ବ୍ରହ୍ମନ୍

ଶ୍ରୀଜଗନ୍ନାଥ, ରଥସଂଖ୍ୟା, ୨୦୧୦



# ଭାଗବତ ଗୋସାଇଁ

ନେଉଳା ଗ୍ରାମର ଇଷ୍ଟଦେବତା ଭାଗବତ ଗୋସାଇଁ । ଏକ ସୁଦୃଶ୍ୟ କମନୀୟ ମନ୍ଦିରରେ ଅଧିଷ୍ଠିତ ତିନିଗୋଟି ତାଳପତ୍ରର ଗାଦି । ଏହି ଗାଦିକୁ ଆଉଜି ବସିଛନ୍ତି ତିନି ଠାକୁର - ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ ଓ ଦେବୀ ସୁଭଦ୍ରା ।

ଅନେକଙ୍କ ମନରେ ପ୍ରଶ୍ନ ଉଠେ-

ପ୍ରକୃତରେ ଭାଗବତ ଗୋସାଇଁ କିଏ ?

ଭାଗବତ ପୋଥି ନା ଶ୍ରୀଜଗନ୍ନାଥ ?

ଆମ ଠାକୁର ଘରେ ତାଳପତ୍ର ପୋଥିର ଗାଦି ପୂଜା ହେଉଥିବାରୁ କେହି କେହି ଭାବନ୍ତି ଭାଗବତ ପୋଥି ହେଉଛନ୍ତି ଭାଗବତ ଗୋସାଇଁ । କର୍ମଧାରୟ ସମାସରେ-

ଭାଗବତ ଅଟେ ଗୋସାଇଁ

ଏହି ଅର୍ଥରେ ଭାଗବତ ପୋଥି ହେଉଛନ୍ତି ଭାଗବତ ଗୋସାଇଁ । କିନ୍ତୁ ବହୁବ୍ରୀହି ସମାସରେ

ଯେ ଭାଗବତର ଗୋସାଇଁ

ଏହାର ଉତ୍ତର ଅନ୍ୱେଷଣରେ ଆମକୁ ଦ୍ୱାପର ଯୁଗକୁ ଫେରିଯିବାକୁ ହେବ । ପାଣ୍ଡବ ଓ କୌରବ ପରିବାରର ଗୃହବିବାଦକୁ କେନ୍ଦ୍ରକରି ସୃଷ୍ଟିହୁଏ ପୁରାଣ ପ୍ରସିଦ୍ଧ ମହାଭାରତ ଯୁଦ୍ଧ । ପାଣ୍ଡବବଧୂ ଦ୍ରୌପଦୀଙ୍କର ଭରପୂର ରାଜସଭାରେ ବସ୍ତ୍ରହରଣ । ଭଗବାନ ଶ୍ରୀକୃଷ୍ଣ ଶାନ୍ତିର ଦୂତ ହୋଇ ମଧ ଭାଇଭାଇଙ୍କର ଏହି କଳହକୁ ମୀମାଂସା କରିପାରିଲେ ନାହିଁ । ତତ୍କାଳୀନ ବୁଦ୍ଧିଜିବୀ ଓ ବିଜ୍ଞବ୍ୟକ୍ତିମାନେ ନିଜସ୍ୱ ବିବଶତା ହେତୁ ନିରବ ରହିଲେ । ପିତାମହ ଭୀଷ୍ମ ମଧ ନିରପେକ୍ଷ ଭାବରେ ନିଜର ବିବେକକୁ ପରିଚାଳିତ କରି ସତ୍ୟକୁ ଜାହିର କରିପାରିଲେ ନାହିଁ । ଭାରତର ପ୍ରାୟ ସମସ୍ତ ରାଜ୍ୟର ଯୋଦ୍ଧାମାନେ ମହାଭାରତ ଯୁଦ୍ଧରେ ଝାସ ଦେଇଥିଲେ । ପିତାମହ ଭୀଷ୍ମଙ୍କ ନେତୃତ୍ୱରେ ରଣଭେରୀ ବାଜିଉଠିଲା । ପ୍ରତିବଦଳରେ ଏହି ଆହ୍ୱାନର ମୁକାବିଲା କରିବା ନିମନ୍ତେ

ବାଜିଉଠିଲା ଶ୍ରୀକୃଷ୍ଣଙ୍କର ପଞ୍ଚଜନ୍ୟ ଶଙ୍ଖ । କୁରୁକ୍ଷେତ୍ର ରଣକ୍ଷେତ୍ରରେ ପରିଣତ ହେଲା । କିନ୍ତୁ ସମସ୍ତଙ୍କୁ ଚକିତକରି ନିରବିଗଲେ ଅର୍ଜୁନ । ଯୁଦ୍ଧର ଭୟାବହତା ଅନୁଭବକରି ନିର୍ବାକ ହୋଇଗଲେ ସର୍ବଶ୍ରେଷ୍ଠ ଧନୁର୍ଦ୍ଧାରୀ ତୃତୀୟ ପାଣ୍ଡବ ଅର୍ଜୁନ । ତାଙ୍କର ପରମ୍‌ପ୍ରିୟ ପିତାମହ ଭୀଷ୍ମ, ଚିରନମସ୍ୟ ଗୁରୁ ଦ୍ରୋଣାଚାର୍ଯ୍ୟ, ତଥା ଆପଣାର ବନ୍ଧୁ-ସୋଦରଙ୍କ ସହ ଯୁଦ୍ଧ କରିବାର ମାନସିକତାକୁ ସେ ସହଜରେ ଗ୍ରହଣ କରିପାରିଲେ ନାହିଁ । ଆଗତ ଯୁଦ୍ଧର ବିଭିଷିକା ତାଙ୍କୁ ବିବଶ କରି ତୋଳିଲା ।

ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଭଗବାନ ଶ୍ରୀକୃଷ୍ଣ ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ମନରୁ ବିଷାଦ ଭାବ ଦୂରକରି ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେବା ନିମନ୍ତେ ଯେଉଁ ବାଣୀ ଶୁଣାଇଥିଲେ ତାହା ଭଗବଦ୍ ଗୀତା ନାମରେ ଘରେ ଘରେ ପରିଚିତ । ପ୍ରତ୍ୟକ୍ଷ ଭାବରେ ମହାଭାରତ ଯୁଦ୍ଧକୁ ଅନୁଭବ କରିଥିବା ମହର୍ଷି ବ୍ୟାସଦେବ ଏହାକୁ ଲିପିବଦ୍ଧ କରିଥିଲେ । ଭଗବଦ୍ ଗୀତା ଭଗବାନ ଶ୍ରୀକୃଷ୍ଣଙ୍କର ମୁଖ ନିଃସୃତ ବାଣୀ ହୋଇଥିବାରୁ ଭାଗବତ ଗୋସାଇଁ ହେଉଛନ୍ତି ସ୍ୱୟଂ ଶ୍ରୀକୃଷ୍ଣ ।

ପ୍ରତ୍ୟେକ ଗ୍ରାମରେ ଭାଗବତ ଟୁଙ୍ଗୀ, ଯେଉଁଠି ରାଧାକୃଷ୍ଣଙ୍କ ପ୍ରତିମୂର୍ତ୍ତି ସହ ତାଳପତ୍ର ପୋଥିର ଗାଦି ପୂଜାପାଏ । କିନ୍ତୁ ଆମ ଗାଁରେ ଏହାର ବ୍ୟତିକ୍ରମ । ଆମ ଟୁଙ୍ଗିରେ ତାଳପତ୍ର ପୋଥି ସହିତ କଳାଠାକୁର ଶ୍ରୀଜଗନ୍ନାଥ ପୂଜା ପାଆନ୍ତି ଭାଗବତ ଗୋସାଇଁ ନାମରେ ।

ଓଡ଼ିଶାର ସମସ୍ତ ପୁରପଲ୍ଲୀରେ ଭାଗବତ ଟୁଙ୍ଗୀରେ ରାଧାକୃଷ୍ଣଙ୍କ ମୂର୍ତ୍ତି ଥିବା ସ୍ଥଳେ ନେଉଳା ଗ୍ରାମରେ ଜଗନ୍ନାଥ ମୂର୍ତ୍ତି କାହିଁକି ? ଏହା ଏକ ଗହନ କଥା । ଏହି ଗହନ କଥାକୁ ପ୍ରତିପାଦିତ କରିବା ନିମନ୍ତେ ଜଗନ୍ନାଥ ତତ୍ତ୍ୱକୁ ବିଶ୍ଳେଷଣ କରିବା ସମୀଚିନ ହେବ ।

ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କର ରୂପାନ୍ତରୀକରଣ ବୋଲି ମନେକରାଯାଏ । ଏହାକୁ ବୁଦ୍ଧଙ୍କ ଅବତାର ବୋଲି ମଧ୍ୟ ଆମେ ଗ୍ରହଣ କରୁ । କିନ୍ତୁ ଶ୍ରୀକୃଷ୍ଣ ଓ ବୁଦ୍ଧଙ୍କ ଠାରୁ ବହୁ ବ୍ୟାପକ ହେଉଛନ୍ତି ଶ୍ରୀଜଗନ୍ନାଥ ।

ଜନ୍ମହେଲେ ମୃତ୍ୟୁ ଅବଶ୍ୟମ୍ଭାବି । ଶ୍ରୀକୃଷ୍ଣ ଜନ୍ମଗ୍ରହଣ କରିଥିବାରୁ ତାଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିଥିଲା । ଗୌତମବୁଦ୍ଧ ମଧ୍ୟ ଜନ୍ମ ନେଇଥିବାରୁ ମୃତ୍ୟୁବରଣ କଲେ । ଏମାନେ ଭଗବାନଙ୍କର ଅବତାର ଅଂଶ ବିଶେଷ । ପାପର ଭାର ଅତ୍ୟଧିକ ହେଲେ ପାପୀମାନଙ୍କର ବିନାଶ ପାଇଁ ଭଗବାନ ସ୍ୱୟଂ ଆବିର୍ଭୂତ ନହୋଇ ତାଙ୍କର ଅଂଶରୁ ଅବତାର ଜାତକରାଇ ପ୍ରେରଣ କରିଥାଆନ୍ତି । ଭଗବାନ୍‌ଙ୍କର ଏହି ଅଂଶବିଶେଷ

ତାଙ୍କର ଲୀଳାଖେଳା ଶେଷକରି ମୃତ୍ୟୁଲାଭକରି ପୁନରାୟ ଭଗବାନଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଗୀତାର ଚତୁର୍ଥ ଅଧ୍ୟାୟରେ ଶ୍ରୀକୃଷ୍ଣ କହିଛନ୍ତି-

ଯଦା ଯଦା ହି ଧର୍ମସ୍ୟ ଗ୍ଲାନି ଭବତି ଭାରତ
ଅଭ୍ୟୁତ୍ ଥାନମ୍ ଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୃଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।

ପାପୀମାନଙ୍କୁ ସଂହାର କରିବା ନିମନ୍ତେ ଅବତାରୀ ବିଷ୍ଣୁ ବିଭିନ୍ନ ଅବତାରର ଆଶ୍ରୟ ନେଉଥିଲେ । ମତ୍ସ୍ୟ, କଚ୍ଛପ, ବରାହ ନୃସିଂହ, ବାମନ ଇତ୍ୟାଦି । କିନ୍ତୁ ଶ୍ରୀଜଗନ୍ନାଥ ଅବତାର ନୁହନ୍ତି । ସେ ଜନ୍ମ ନେଇନାହାନ୍ତି । ତେଣୁ ତାଙ୍କର ମୃତ୍ୟୁ ନାହିଁ । ଜଗନ୍ନାଥ ପରି ଭଗବାନ ବିଷ୍ଣୁ ମଧ୍ୟ ଜନ୍ମନେଇ ନଥିବାରୁ ତାଙ୍କର ମୃତ୍ୟୁ ନାହିଁ ।

ମର୍ତ୍ତ୍ୟରେ ଶ୍ରୀଜଗନ୍ନାଥ ହେଉଛନ୍ତି ସ୍ୱୟଂ ବିଷ୍ଣୁ । ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ପରିସରକୁ ବୈଷ୍ଣବପୀଠ କୁହାଯାଏ । ଏହା ଯନ୍ତ୍ର, ମନ୍ତ୍ର, ତନ୍ତ୍ରରେ ଛନ୍ଦିତ ହୋଇଥିବାରୁ ଏହାକୁ ତାନ୍ତ୍ରିକପୀଠ କୁହାଯାଏ । ଏହାର ପୂଜା ପଦ୍ଧତି ମଧ୍ୟ ସେହିପରି ସ୍ୱତନ୍ତ୍ର ।

ବିଷ୍ଣୁ ଏକ ତତ୍ତ୍ୱ । ଏହା ନିରାକାର, ନିର୍ଗୁଣ, ପରଂବ୍ରହ୍ମ, ପରମ ଶୂନ୍ୟତା ତତ୍ତ୍ୱ । ଏହା ଅସୀମ ଶକ୍ତିଯୁକ୍ତ ଓ ଜୀବନ୍ତ ଯେପରି ବୀଜ ଜୀବନ୍ତ । ବୀଜରୁ ଅଙ୍କୁରୋଦ୍‌ଗମ ହୋଇ ଧୀରେ ଧୀରେ ପଲ୍ଲବୀତ ହୋଇ ଯେପରି ବୃକ୍ଷରେ ପରିଣତ ହୁଏ, ଠିକ୍ ସେହିପରି ନିର୍ଗୁଣ ବ୍ରହ୍ମନ ସୁପ୍ତ ବୀଜ ରୂପରେ ଥାଏ । ଇଚ୍ଛାହେଲେ ଜାଗ୍ରତ ହୋଇ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟିକରେ । ସୃଷ୍ଟି ସଗୁଣ ବ୍ରହ୍ମନ ନାମରେ ପରିଚିତ । ଏହା ନିରାକାର ବା ନିର୍ଗୁଣ ବ୍ରହ୍ମନର ଏକ ସାକାର ରୂପାନ୍ତର, ଅବ୍ୟକ୍ତରୁ ବ୍ୟକ୍ତ, ଅପ୍ରକଟିତରୁ ପ୍ରକଟିତ । ପୁନଶ୍ଚ ଏହି ସୃଷ୍ଟି ପ୍ରତ୍ୟାବର୍ତ୍ତନ କରି ବିଲୀନ ହୁଏ ମହା ଶୂନ୍ୟତାରେ । ଅନାଦି କାଳରୁ ନିର୍ଗୁଣ ବ୍ରହ୍ମନରୁ ସଗୁଣ ବ୍ରହ୍ମନ ଓ ସଗୁଣ ବ୍ରହ୍ମନରୁ ନିର୍ଗୁଣ ବ୍ରହ୍ମନକୁ ନିରନ୍ତର ରୂପାନ୍ତରୀକରଣ ପ୍ରକ୍ରିୟା ସଂଗଠିତ ହୋଇଆସୁଅଛି । ଏହି ତତ୍ତ୍ୱ ହିଁ ବିଷ୍ଣୁତତ୍ତ୍ୱ ବା ବିଷ୍ଣୁଲୀଳା । ଜନୈକ ଋଷିଙ୍କ ମତରେ ନିର୍ଗୁଣ ବ୍ରହ୍ମନର ଏକ ଚତୁର୍ଥାଂଶ ସଗୁଣ ବ୍ରହ୍ମନକୁ ରୂପାନ୍ତରିତ ହୋଇ ଅନବରତ ନିର୍ଗୁଣ ବ୍ରହ୍ମନକୁ ପ୍ରତ୍ୟାବର୍ତନ କରୁଥାଏ । ଏହା ହିଁ ଜନ୍ମ-ମୃତ୍ୟୁ ତତ୍ତ୍ୱ ଓ ଏହି ତତ୍ତ୍ୱକୁ ବିଧିର ବିଧାନ କୁହାଯାଏ ।

ନିର୍ଗୁଣ ବ୍ରହ୍ମନର ଏହି ଗୂଢ଼ ତତ୍ତ୍ୱକୁ ହୃଦୟଙ୍ଗମ କରିବା ପାଇଁ ବିଷ୍ଣୁଙ୍କର ଏକ କାଳ୍ପନିକ ରୂପର ଅବତାରଣା କରାଯାଇଅଛି । ଏହାର ଉଦ୍ଦେଶ୍ୟ ହେଉଛି ଏହି ସ୍ଥୂଳ

ମୂର୍ତ୍ତି ମାଧ୍ୟମରେ ସୂକ୍ଷ୍ମ ବିଷ୍ଣୁ ତତ୍ତ୍ୱକୁ ହୃଦୟଙ୍ଗମ କରିବା । ଏହା ସତ୍ତ୍ୱେ ମଧ୍ୟ ବିଷ୍ଣୁ ତତ୍ତ୍ୱକୁ ହୃଦୟଙ୍ଗମ କରିବା ପାଇଁ ଯେ କୌଣସି ନୀତି ଗ୍ରହଣ ଯୋଗ୍ୟ ନୁହେଁ । ତଥାପି ଏହି ତତ୍ତ୍ୱର ଆଭାସ ପାଇବା ନିମନ୍ତେ ଯୋଗ ତତ୍ତ୍ୱ ଏକ ପରିକଳ୍ପନା । ଅନ୍ୟ ଅର୍ଥରେ ମନୁଷ୍ୟ ସମସ୍ତ ମୋହକୁ ତ୍ୟାଗକରି ନିରାସକ୍ତ ଜୀବନ ଯାପନ କରିପାରିଲେ ଗଭୀର ପ୍ରଶାନ୍ତି ଲାଭ କରିପାରିବ ଓ ଜନ୍ମ-ମୃତ୍ୟୁର ରହସ୍ୟରୁ ମୁକ୍ତ ହେବ । ଶ୍ରୀକୃଷ୍ଣଙ୍କର ମୋକ୍ଷ ତତ୍ତ୍ୱ ସମ୍ବନ୍ଧରେ ଗୀତାରେ ବର୍ଣ୍ଣନା କରାଯାଇଅଛି । ସମସ୍ତ କାମନାର ବିନାଶ କରି ସମସ୍ତ ଦୁଃଖକୁ ବିନାଶ କରିବାର ମାର୍ଗ ହେଉଛି ନିର୍ବାଣ ତତ୍ତ୍ୱ । ଏହି ତତ୍ତ୍ୱକୁ ପ୍ରଚାର କରିଥିଲେ ଗୌତମ ବୁଦ୍ଧ । ଜୈନମୁନି ପ୍ରଚାର କରିଥିଲେ ଶୂନ୍ୟବାଦ ତତ୍ତ୍ୱ । ଏହିପରି ଭାବରେ ଶୂନ୍ୟ ଭିତିକ ତତ୍ତ୍ୱମାନ ଭାରତୀୟ ସଂସ୍କୃତିକୁ ନିବିଡ଼ ଭାବରେ ରଞ୍ଜିମନ୍ତ କରିଛି । ଏହି ଶୂନ୍ୟଭିତ୍ତିକ ତତ୍ତ୍ୱମାନଙ୍କର ସମନ୍ୱୟରେ ସୃଷ୍ଟି ହୋଇଛି ଶ୍ରୀଜଗନ୍ନାଥ ତତ୍ତ୍ୱ, ଅର୍ଥାତ୍ ଶ୍ରୀଜଗନ୍ନାଥ ତତ୍ତ୍ୱର କେନ୍ଦ୍ରବିନ୍ଦୁ ହେଉଛି ମହାଶୂନ୍ୟତା ।

କାଳକ୍ରମେ ଏହି ତତ୍ତ୍ୱ ସୃଷ୍ଟି କରିଛି ଏକ ଦେବତାଙ୍କୁ, ଯାହାଙ୍କ ଦେହର ରଙ୍ଗ କୃଷ୍ଣବର୍ଣ୍ଣ, ବୃହତ୍ ଚକ୍ରାକାର ଦୁଇ ଚକ୍ଷୁ, ହସ୍ତହୀନ, ପଦହୀନ, କର୍ଣ୍ଣହୀନ ଶରୀର । ଅର୍ଦ୍ଧନିର୍ମିତ ସୃଷ୍ଟିର ଅର୍ଦ୍ଧନିର୍ମିତ ଦେବତା ।

ବ୍ୟାପକ ଦୃଷ୍ଟିକୋଣରୁ ଯଦି ଅବତାର ଓ ଅବତାରୀମାନଙ୍କୁ ଅନନ୍ୟ ବୋଲି ଅନୁଭବ କରାଯାଏ, ତେବେ ଯେ ବିଷ୍ଣୁ, ସେ କୃଷ୍ଣ, ସେ ବୁଦ୍ଧ ଓ ସେ ମଧ୍ୟ ଶ୍ରୀଜଗନ୍ନାଥ ।

ଏହି ବ୍ୟାପକ ଦୃଷ୍ଟିକୋଣରୁ ଭାଗବତଗୋସାଇଁ ହେଉଛନ୍ତି ସ୍ୱୟଂ କଳାଠାକୁର ଶ୍ରୀଜଗନ୍ନାଥ ।

## ଭାଗବତ କଥା

ଭଗବଦ୍ ଗୀତାର ଏକମାତ୍ର ଉଦ୍ଦେଶ୍ୟ ମନ ମଧ୍ୟରୁ ସମସ୍ତ ବିଷାଦ ଦୂରକରି ଶାନ୍ତିଲାଭ କରିବା । ଏହା କେବଳ ମାନସିକ ସ୍ତରରେ ସଂଗଠିତ ହୁଏ । ତେଣୁ ଗୀତା ହେଉଛି ଏକ ମନସ୍ତାତ୍ତ୍ୱିକ ନିଦାନ ଶାସ୍ତ୍ର । ଏହି ନିଦାନ କେବଳ ଅର୍ଜୁନଙ୍କ ନିମନ୍ତେ ଉଦ୍ଦିଷ୍ଟ ନୁହେଁ, ଏହା ଏକ ସାର୍ବଜନୀନ ନିଦାନ, ପୃଥିବୀର ସମସ୍ତ ମାନବ ସମାଜ ନିମନ୍ତେ ଅନନ୍ତ କାଳ ପାଇଁ । ମନରୁ ବିଷାଦ ଦୂର କରିବା ନିମନ୍ତେ ଶ୍ରୀକୃଷ୍ଣଙ୍କର ପ୍ରଥମ ନିଦାନ ହେଉଛି ଜ୍ଞାନଯୋଗ । ଶରୀର ଓ ଆତ୍ମାର ସମ୍ପର୍କ ତଥା ଜନ୍ମ-ମୃତ୍ୟୁର ରହସ୍ୟ ଭେଦକରି ନିରାସକ୍ତ ଜୀବନ ଯାପନ କରିବାର ମାର୍ଗ ଦର୍ଶନ । ତତ୍ପରେ ସେ କର୍ମଯୋଗ, ଧ୍ୟାନଯୋଗ, ରାଜଯୋଗ ଓ ଶେଷରେ ଭକ୍ତିଯୋଗର ଅବତାରଣା କରିଛନ୍ତି । ଏହି ସମସ୍ତ ଯୋଗର ଏକମାତ୍ର ଉଦ୍ଦେଶ୍ୟ ହେଉଛି ମୁକ୍ତି ବା ମୋକ୍ଷ ।

ମହାଭାରତ ଯୁଦ୍ଧର ଅନ୍ତିମ ପର୍ଯ୍ୟାୟ । ଦୁର୍ଯ୍ୟୋଧନର ଉରୁଭଙ୍ଗ । ଅଶ୍ୱତ୍ଥାମା ଓ ଗୁରୁ କୃପାଚାର୍ଯ୍ୟ ସେହି କାଳ ରାତ୍ରୀର ଘନ ଅନ୍ଧକାର ମଧ୍ୟରେ ଦୁର୍ଯ୍ୟୋଧନ ନିକଟରେ ଲୁଚିଛପି ପ୍ରବେଶ କଲେ । ଅଶ୍ୱତ୍ଥାମାଙ୍କୁ ପ୍ରଧାନ ସେନାପତି ରୂପେ ବରଣ କରିବା ନିମନ୍ତେ ପ୍ରସ୍ତାବ ରଖିଲେ ।

ଏହାପରେ ଆରମ୍ଭ ହେଲା କଳଙ୍କିତ ଅଧ୍ୟାୟ । ମଧ୍ୟରାତ୍ରରେ ଦ୍ରୌପଦୀଙ୍କର ପାଞ୍ଚପୁତ୍ରଙ୍କୁ ହତ୍ୟାକଲେ ଅଶ୍ୱତ୍ଥାମା ଓ ଉତ୍ତରା ଗର୍ଭରେ ମୁକ୍ତି ଅପେକ୍ଷାରେ ଥିବା ପାଣ୍ଡବଙ୍କର ଏକମାତ୍ର ବଂଶଧରକୁ ଧ୍ୱଂସ କରିବାକୁ କ୍ଷେପଣ କଲେ ବ୍ରହ୍ମାସ୍ତ୍ର । କିନ୍ତୁ ଯୋଗ ବଳରେ ଶ୍ରୀକୃଷ୍ଣ ଏହା ଅବଗତ ହୋଇ ସୁଦର୍ଶନ ଚକ୍ର ଉହାଡ଼ରେ ଉତ୍ତରା ଗର୍ଭକୁ ରକ୍ଷାକଲେ । ଜନ୍ମ-ମୃତ୍ୟୁର ଏହି ଘଡ଼ିସନ୍ଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଜୀବନଦାନ ପାଇଥିବାରୁ ଉତ୍ତରାଙ୍କ ପୁତ୍ରର ନାମ ପରୀକ୍ଷିତ ।

କାଳକ୍ରମେ ପରୀକ୍ଷିତଙ୍କ ହସ୍ତରେ ହସ୍ତିନାର ରାଜସିଂହାସନ ସମର୍ପଣ କରି ଦ୍ରୌପଦୀଙ୍କ ସହିତ ପଞ୍ଚୁପାଣ୍ଡବ ହିମାଳୟକୁ ଯାତ୍ରାକଲେ । ପରୀକ୍ଷିତଙ୍କ ରାଜସିଂହାସନ ଆରୋହଣ ସମୟକୁ କଳିଯୁଗ ଆରମ୍ଭ ହୋଇଗଲାଣି । ପରୀକ୍ଷିତଙ୍କ ଜୀବନରେ ଅନ୍ୟ ଏକ ପରୀକ୍ଷାର ଆଗମନ ତାଙ୍କ ସମଗ୍ର ଜୀବନକୁ ଦୋହଲାଇ ଦେଲା ।

ଏକଦା ଜଙ୍ଗଲକୁ ଶୀକାର କରିବାକୁ ଯିବା ଅବସରରେ ତୃଷାରେ ଆତୁର ହୋଇ ସେ ଶମିକ ଋଷିଙ୍କ ଆଶ୍ରମରେ ପହଞ୍ଚିଲେ । ଋଷି ସେହି ସମୟରେ ଧ୍ୟାନମଗ୍ନ ଥିଲେ । ତୃଷାରେ ଆତୁର ପରୀକ୍ଷିତଙ୍କର ଜଳପାଇଁ ନିବେଦନ ଧ୍ୟାନମଗ୍ନ ଋଷିଙ୍କର କର୍ଣ୍ଣକୁହରରେ ପ୍ରବେଶ କରିପାରିଲା ନାହିଁ । ଜଳ ବିନା କ୍ରୋଧରେ ଅଜ୍ଞାନ ରାଜା ପାର୍ଶ୍ୱରେ ପଡ଼ିଥିବା ଏକ ମୃତସର୍ପ ଋଷିଙ୍କ ଗଳାରେ ଗୁଡ଼ାଇଦେଇ ଉଆସକୁ ବାହୁଡ଼ି ଆସିଲେ । ଋଷିପୁତ୍ର ଶୃଙ୍ଗୀ ଆଶ୍ରମରେ ପହଞ୍ଚି ଏହି ଅଭାବନୀୟ ଦୃଶ୍ୟ ଅବଲୋକନ କରି କ୍ରୋଧାନ୍ୱିତ ହୋଇ ଅଭିଶାପ ଦେଲେ । ବାପାଙ୍କ ଗଳାରେ ସର୍ପଗୁଡ଼ାଇଥିବା ବ୍ୟକ୍ତି ସାତଦିନ ମଧ୍ୟରେ ସର୍ପାଘାତରେ ମୃତ୍ୟୁବରଣ କରିବ । ପୁତ୍ରର କ୍ରୋଧରେ ଋଷିଙ୍କର ଧ୍ୟାନଭଗ୍ନ ହେଲା । ଧ୍ୟାନବଳରେ ଋଷି ସମସ୍ତ ବିଷୟ ଅବଗତ ହୋଇ ପୁତ୍ରକୁ ଧିକ୍କାର କଲେ । ସାମାନ୍ୟ ଦୋଷରେ ରାଜା ପରୀକ୍ଷିତଙ୍କୁ ଏତେବଡ଼ ଦଣ୍ଡ । ଧନୁରୁ ତୀର ଖସିଗଲେ ଯେପରି ଫେରିଆସି ପାରେନାହିଁ, ଠିକ୍ ସେହିପରି ଋଷି ବାକ୍ୟ ମଧ୍ୟ ଫେରିପାରେ ନାହିଁ ।

ଋଷିପୁତ୍ରଙ୍କର ଅଭିଶାପ ରାଜାଙ୍କର କର୍ଣ୍ଣଗୋଚର ହେଲା । ସ୍ୱକ୍ରୋଧର ପରିଣାମକୁ ରାଜା ସାଦରେ ଗ୍ରହଣ କଲେ । ରାଜାଙ୍କର ଆସନ୍ନ ମୃତ୍ୟୁ ଖବର ରାଜ୍ୟସାରା ବ୍ୟାପିଗଲା । ସ୍ୱଳ୍ପ ଜୀବନକାଳ ମଧ୍ୟରେ ଭାଗବତ ପ୍ରବଚନ ଶୁଣିବାକୁ ମନସ୍ଥ କରି ରାଜା ତାଙ୍କର ଅନ୍ତିମ ଇଚ୍ଛା ପ୍ରଜାମାନଙ୍କ ସମ୍ମୁଖରେ ପ୍ରକାଶ କଲେ । ମୃତ୍ୟୁ ପୂର୍ବରୁ କେବଳ ଭାଗବତ କଥା ମନରେ ଅପାର ଆନନ୍ଦ ଭରିଦେଇ ଜୀବନକୁ ସମସ୍ତ ସୁଖ-ଦୁଃଖରୁ ଊର୍ଦ୍ଧ୍ୱକୁ ନେଇଯାଇ ପାରିବ ।

ପରୀକ୍ଷିତ, ପୁତ୍ର ଜନ୍ମେଜୟଙ୍କୁ ରାଜ୍ୟଭାର ଅର୍ପଣ କରି ରାଜପ୍ରାସାଦ ତ୍ୟାଗପୂର୍ବକ ପବିତ୍ର ଗଙ୍ଗାନଦୀ କୂଳରେ ଆଶ୍ରୟ ନେଲେ । ରାଜାଙ୍କ ଅନୁରୋଧକ୍ରମେ ବ୍ୟାସଦେବଙ୍କ ପୁତ୍ର ଶୁକମୁନି ଭାଗବତ କଥା ଶୁଣାଇବାକୁ ସମ୍ମତି ପ୍ରଦାନ କଲେ ।

ସଂସ୍କୃତରେ ବ୍ୟାସଦେବଙ୍କ ଲିଖିତ ଭଗବତ୍‌ଗୀତା ଅତ୍ୟନ୍ତ କ୍ଳିଷ୍ଟ ଥିଲା । ସହଜରେ ବୋଧଗମ୍ୟ ନ ଥିଲା । ଶୁକମୁନି ଏହାକୁ ସରଳ ସଂସ୍କୃତରେ ପ୍ରକାଶ କଲେ ମାତ୍ର ଷୋଳବର୍ଷ ବୟସରେ । ଅନେକ ଉଦାହରଣ ମାଧ୍ୟମରେ ଚିତ୍ତାକର୍ଷକ ପ୍ରବଚନ ଦେଲେ । ସମୁଦାୟ ଅଠର ହଜାର ଶ୍ଳୋକ ଆବୃତ୍ତିକରି ପରୀକ୍ଷିତଙ୍କ ମନକୁ ଅପୂର୍ବ ଶାନ୍ତିରେ ଭରିଦେଲେ । ଶୁକମୁନିଙ୍କର ଏହି ବାର୍ତ୍ତାକୁ ତାଙ୍କର ଶିଷ୍ୟ ତଥା ଭକ୍ତମାନେ ସମଗ୍ର ଭାରତରେ ପ୍ରଚାର କଲେ । ଏହାହିଁ ଭାଗବତ କଥା ଓ ତା'ର ମାହାତ୍ମ୍ୟ ।

ଏହିପରି ଭାବରେ ଭାଗବତ ଗୀତାର ଗୂଢ଼ ରହସ୍ୟ ଜନସାଧାରଣଙ୍କ ନିକଟରେ ପହଞ୍ଚି ଭାରତର ସାଂସ୍କୃତିକ ପୃଷ୍ଠଭୂମିକୁ ସୁଦୃଢ଼ କଲା ।

ରାଜା ପରୀକ୍ଷିତ ମୃତ୍ୟୁପୂର୍ବରୁ ଭଗବତ ଗୀତା ଶ୍ରବଣକରି ପରମ ଶାନ୍ତି ଲାଭ କରିଥିଲେ । ଅଭିଶାପ ପ୍ରାପ୍ତିର ସପ୍ତମ ଦିନରେ ତକ୍ଷକ ବ୍ରାହ୍ମଣ ରୂପ ଧାରଣ ପୂର୍ବକ ପରୀକ୍ଷିତଙ୍କୁ ଦଂଶନ କରିବାପାଇଁ ବାହାରିଲା । କଶ୍ୟପ ମୁନିଙ୍କ ସହ ତକ୍ଷକର ସାକ୍ଷାତ ହେଲା । କଶ୍ୟପ ମୁନିଙ୍କର ଏପରି ଶକ୍ତି ଥିଲା ଯେ ସେ ଯେକୌଣସି ସର୍ପର ବିଷକୁ ଅକ୍ଲେଶରେ ହରଣ କରିଦେଇ ପାରୁଥିଲେ । ପରୀକ୍ଷିତଙ୍କୁ ବିଷଜ୍ୱାଳାରୁ ବଞ୍ଚାଇବା ନିମନ୍ତେ କଶ୍ୟପ ଋଷି ରାଜାଙ୍କ ନିକଟକୁ ଯାଉଥିଲେ । ତକ୍ଷକ ଋଷିଙ୍କ ପଥ ଓଗାଳି ବହୁ ଅନୁନୟକରି ତାଙ୍କୁ ଫେରିଯିବାକୁ ପ୍ରାର୍ଥନା କଲା ।

ଖାଣ୍ଡବ ବନ ଦହନ ସମୟରେ ଅର୍ଜୁନ ସର୍ପ ବଂଶ ଧ୍ୱଂସ କରିଥିଲେ । ବର୍ତ୍ତିଯାଇଥିବା ତକ୍ଷକ ପ୍ରତିଶୋଧର ବହ୍ନିରେ ଜଳୁଥିଲା । ମହାଭାରତ ଯୁଦ୍ଧରେ ଅର୍ଜୁନ ବଧ ନିମନ୍ତେ ତୀର ମୁନରେ ନିଜକୁ ପ୍ରେରଣ କରିବା ପାଇଁ କର୍ଣ୍ଣଙ୍କୁ ଅନୁରୋଧ କରିଥିଲା । ଥରେ ବିଫଳହୋଇ ପୁନରାୟ ତାକୁ ପ୍ରୟୋଗ କରିବେ ନାହିଁ ଏହି ସର୍ତ୍ତରେ କର୍ଣ୍ଣ ରାଜିହେଲେ । ତାଳଧ୍ୱଜ ରଥରେ ଅର୍ଜୁନର ସାରଥି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ । ରଥର ଉପରିଭାଗରେ ମହା ଶକ୍ତିମାନ ହନୁମାନ ବିରାଜମାନ । ତକ୍ଷକର ମନ୍ଦ ଉଦ୍ଦେଶ୍ୟ ଜାଣିପାରି କୃଷ୍ଣଙ୍କ ନିର୍ଦ୍ଦେଶରେ ହନୁମାନ ରଥକୁ ଯଥା ସମୟରେ ପାତାଳକୁ ଚାପିଦେଲେ । ତକ୍ଷକ କେବଳ ତାଳଧ୍ୱଜ ରଥର ଧ୍ୱଜାକୁ ଗଳାଧଃକରଣ କରି ଫେରି ଆସିଲା ।

ଅପମାନରେ ଜର୍ଜରିତ ତକ୍ଷକ ସୁଯୋଗ ଅପେକ୍ଷାରେ ଥିଲା । ମୁନିପୁତ୍ରଙ୍କ ଅଭିଶାପର ଦ୍ୱାହିଦେଇ କଶ୍ୟପ ଋଷିଙ୍କୁ ରାଜାଙ୍କ ନିକଟକୁ ଯିବାକୁ ନଦେଇ ଫେରାଇ ଦେଲା । ରାଜାଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରକୃତ ରୂପ ଧାରଣ କରି ତକ୍ଷକ ରାଜାଙ୍କୁ ଦଂଶନ କଲା । ଉତ୍କଟ ବିଷର ଜ୍ୱାଳାରେ ରାଜାଙ୍କର ଶରୀର ଭସ୍ମିଭୂତ ହୋଇଗଲା । ପରୀକ୍ଷିତଙ୍କ ପୁତ୍ର ଜନ୍ମେଜୟ ପିତାଙ୍କର ଅକାଳ ମୃତ୍ୟୁ ସଂପର୍କରେ ଅବଗତ ହେବାପରେ କ୍ରୋଧାନ୍ୱିତ ହୋଇ ସର୍ପମେଧ ଯଜ୍ଞ ଆରମ୍ଭ କଲେ । ଆତଙ୍କିତ ତକ୍ଷକ ଅନ୍ୟଉପାୟ ନଦେଖି ଦେବରାଜ ଇନ୍ଦ୍ରଙ୍କର ଶରଣ ପଶିଲା । ସମସ୍ତ ସର୍ପ ଅଗ୍ନିକୁଣ୍ଡରେ ଆହୁତି ଦେବା ସତ୍ତ୍ୱେ ତକ୍ଷକ ଆବିର୍ଭୁତ ନହେବାରୁ ଜନ୍ମେଜୟ, ଋଷିମାନଙ୍କୁ ଏହାର କାରଣ ଜିଜ୍ଞାସା କଲେ । ତକ୍ଷକ ଦେବରାଜ ଇନ୍ଦ୍ରଙ୍କର ଶରଣାପନ୍ନ, ଏହା ଧ୍ୟାନ ବଳରେ ଜାଣିପାରି ଋଷିମାନେ ରାଜାଙ୍କୁ ଅବଗତ କରାଇଲେ । ରାଜାଙ୍କ ଆଦେଶରେ ଇନ୍ଦ୍ରଙ୍କ ସହିତ ତକ୍ଷକକୁ ଆହୁତି ଦେବାଲାଗି ଋଷିମାନେ ମନ୍ତ୍ରପାଠ କଲେ । ଏହି ମନ୍ତ୍ର ବଳରେ ଉଭୟ ଇନ୍ଦ୍ର ଓ ତକ୍ଷକ କ୍ଷିପ୍ରଗତିରେ ଯଜ୍ଞକୁଣ୍ଡ ନିକଟକୁ ଅଗ୍ରସର ହେଲେ । ପ୍ରାଣ ଭୟରେ ଇନ୍ଦ୍ର, ଦେବଗୁରୁ ବୃହସ୍ପତିଙ୍କ ନିକଟରେ ଶରଣ ପଶିଲେ । ଜନ୍ମେଜୟଙ୍କୁ ଯଜ୍ଞ ସ୍ଥଗିତ ରଖିବାକୁ ବୃହସ୍ପତି ଅନୁରୋଧ କଲେ । କାରଣ ଏହି ଯଜ୍ଞ ଫଳରେ ପୃଥିବୀରୁ ସର୍ପବଂଶ ସମୂଳେ ଲୋପ ପାଇଯିବ । କେବଳ ତକ୍ଷକର ଅପରାଧ ପାଇଁ ସମସ୍ତ ସର୍ପଙ୍କୁ ବିନାଶ କରିବା ସମିଚୀନ ନୁହେଁ । ଋଷିଙ୍କର ଅଭିଶାପ ବିଧିର ନିର୍ଦ୍ଦେଶ । ତତ୍ପରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ନିର୍ଦ୍ଦେଶରେ ରାଜା ଜନ୍ମେଜୟ, ସର୍ପମେଧ ଯଜ୍ଞର ପରିସମାପ୍ତି ଘୋଷଣା କଲେ ।

ଏହା ପ୍ରାୟ ପାଞ୍ଚ ହଜାର ବର୍ଷ ତଳର ଘଟଣା ।

# ଭାଗବତ ଟୁଙ୍ଗୀ

ଶୁକମୁନିଙ୍କ ଭାଗବତ କଥା ସମଗ୍ର ଭାରତରେ ବ୍ୟାପକ ଲାଭ କରିଥିଲା । ଓଡ଼ିଶାର ସଂସ୍କୃତ ପଣ୍ଡିତମାନେ ମଧ୍ୟ ତାଳପତ୍ରରେ ଲିଖିତ ଭାଗବତ କଥାକୁ ସାଧାରଣ ଜନମାନସରେ ବିଭିନ୍ନ ପ୍ରବଚନ ମାଧମରେ ପରିଚିତ କରାଇଥିଲେ । ମଧ୍ୟଯୁଗୀୟ ସନ୍ଥମାନଙ୍କ ମଧ୍ୟରୁ ସନ୍ଥ ଜଗନ୍ନାଥ ଦାସ ଅନ୍ୟତମ । ଏକଦା ମାଆଙ୍କ ନିକଟରେ ଭାଗବତ ବାଖ୍ୟା କରୁଥିବା ସମୟରେ ତାଙ୍କ ମାଆ ଏତେ ତନ୍ମୟ ହୋଇଗଲେ ଯେ ଭାଗବତକୁ ମାତୃଭାଷା ଓଡ଼ିଆରେ ଲେଖିବାକୁ ପରାମର୍ଶ ଦେଲେ । ସଂସ୍କୃତ ଜାଣିନଥିବା ଗାଁ ଗହଳର ପ୍ରତ୍ୟେକ ଘରେ ଯେପରି ଭାଗବତ ପାଠ କରାଯାଇ ପାରିବ । ମାଆଙ୍କ ଉକ୍ତିକୁ ହୃଦୟଙ୍ଗମ କରି ସନ୍ଥ ଜଗନ୍ନାଥ ଦାସ ଓଡ଼ିଆ ଭାଷାରେ ଭାଗବତ କଥା ଲେଖିବାକୁ ମନସ୍ଥ କଲେ । ତାଙ୍କ ରଚିତ ଭାଗବତ ଓଡ଼ିଶାର ପ୍ରତି ପୁରପଲ୍ଲୀରେ ପରିଚିତ । ଭାଗବତ ଚର୍ଚ୍ଚା ହେଉଥିବା ସ୍ଥାନ ଭାଗବତ ଟୁଙ୍ଗୀ ନାମରେ ପରିଚିତ । ପ୍ରାୟ ପ୍ରତ୍ୟେକ ଗ୍ରାମରେ ଭାଗବତ ଟୁଙ୍ଗୀ ପ୍ରତିଷ୍ଠା ହେଲା । ପ୍ରତି ସନ୍ଧ୍ୟାରେ କର୍ମ ନିବୃତି ପରେ ଗ୍ରାମବାସୀମାନେ ଏହି ଟୁଙ୍ଗୀରେ ଏକତ୍ରିତ ହୋଇ ଭାଗବତ କଥା ରସାମୃତ ପାନକଲେ । ଭାଗବତ ସହିତ ଭଗବାନ ଶ୍ରୀକୃଷ୍ଣଙ୍କର ପୂଜା ଅର୍ଚ୍ଚନା କରାଯାଏ ।

ପ୍ରାୟ ୧୮୦୦ ମସିହାର କଥା । ସେହି ସମୟରେ ମରହଟ୍ଟା ଶାସନ ଓ ବର୍ଗୀମାନଙ୍କର ସୃଷ୍ଟି । ଗୋବିନ୍ଦ ଓ ତାଙ୍କ ସ୍ତ୍ରୀ ପୋହଳା କୁଝାଲା ଗ୍ରାମରୁ ଆସି ବର୍ତ୍ତମାନର ନେଉଳା ଗ୍ରାମରେ ବସତି ସ୍ଥାପନ କରିଥିଲେ । ସେହି ସମୟରେ ଏହି ଅଞ୍ଚଳ ବଣ ଜଙ୍ଗଲରେ ଭରପୂର ଥିଲା । ଆମର ପୂର୍ବଜ ଗୋବିନ୍ଦ ଜଙ୍ଗଲ ସଫାକରି ସେଠାରେ ଗୃହ ନିର୍ମାଣ କଲେ । ହୁଏତ ବଣ ଜଙ୍ଗଲ ସଫାକରି ବସତି ସ୍ଥାପନ କରିବାରୁ ସେ ବଣଗୋବିନ୍ଦ ନାମରେ ପରିଚିତ ।

ନିଜର ସୁବିଧା ନିମନ୍ତେ ସେ ବିଭିନ୍ନ ଜାତିର ଲୋକମାନଙ୍କୁ ବାସସ୍ଥାନ ତଥା ଚାଷୋପଯୋଗୀ ଜମି ପ୍ରଦାନ କରି ନେଉଳା ଗ୍ରାମର ଜନବସତିକୁ ଦୃଢ଼ କରିଥିଲେ । ହୁଏତ ସେହି ସମୟରେ ନେଉଳ ବହୁଳ ଏହି ସ୍ଥାନଟିର ନାମ ନେଉଳା ହୋଇଥିବ ବୋଲି ଅନୁମାନ କରାଯାଏ । ସେହି ସମୟରେ ନେଉଳା ଗ୍ରାମରେ ବଣଗୋବିନ୍ଦ ଭାଗବତ ଟୁଙ୍ଗୀ ସ୍ଥାପନା କରିଥିଲେ ।

ଆମ ପରିବାର ସହିତ ଗାଁଆର ସମସ୍ତ ପରିବାରମାନଙ୍କର ପୂଜାପାର୍ବଣ ଭାଗବତ ଗୋସାଇଁଙ୍କୁ କେନ୍ଦ୍ରକରି ଅନୁଷ୍ଠିତ ହୁଏ । ପ୍ରତ୍ୟେକ ଦିନ ସନ୍ଧ୍ୟାରେ ଭାଗବତ ପାଠ ଓ

ଭାଗବତ ଚର୍ଚ୍ଚାହୁଏ । ବ୍ରାହ୍ମଣଘର ଘନିଆଁ ସାଆନ୍ତ ଓ ତାଙ୍କ ପରେ ତାଙ୍କ ପୁଅ ବେଣୁଆଦାଦା ପ୍ରତିଦିନ ଭାଗବତ ପାଠ କରନ୍ତି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଅନେକ ନାମରେ ଭକ୍ତମାନେ ସମ୍ବୋଧନ କରିଥାନ୍ତି । ଅନେକ ନାମରେ ତାଙ୍କର ଭଜନ, ଜଣାଣ କରାଯାଏ । କିନ୍ତୁ ଭାଗବତ ଗୋସାଇଁ ଏକ ଅନନ୍ୟ ନାମକରଣ । ଏହାର ମାହାତ୍ମ୍ୟ ଭିନ୍ନ । ନେଉଳାର ଅଧିବାସୀମାନେ ଶ୍ରୀଜଗନ୍ନାଥଙ୍କୁ ଭାଗବତ ଗୋସାଇଁ ନାମରେ ଆରାଧନା କରନ୍ତି । ପ୍ରତିବେଶୀ ଗାଆଁ ଅରଙ୍ଗାବାଦରେ ଶ୍ରୀଜଗନ୍ନାଥ ବୁଢ଼ାଗୋସାଇଁ ନାମରେ ପୂଜା ପାଆନ୍ତି ।

ଅନେକ ସ୍ଥାନରେ ଆଜିକାଲି ଅନେକ ଜଗନ୍ନାଥ ମନ୍ଦିର ନିର୍ମାଣ ହେଲାଣି । ନେଉଳାରେ ମଧ୍ୟ ଭାଗବତ ଗୋସାଇଁଙ୍କର ଏକ ଅନନ୍ୟ ମନ୍ଦିର ନିର୍ମାଣ ହୋଇଛି । ଗ୍ରାମବାସୀମାନେ ଜାତିର ବିଭିନ୍ନତା ସତ୍ତ୍ୱେ ଭାଇଚାରାର ଏକ ଡୋରିରେ ବନ୍ଧା । କଦବା କ୍ୱଚିତ ମନୋମାଳିନ୍ୟ ଘଟିଲେ ଭାଗବତ ଗୋସାଇଁଙ୍କୁ ସାକ୍ଷୀ ରଖି ତାଙ୍କ ସାମ୍ନାରେ ସମାଧାନ ହୋଇଯାଏ । ଏହି ଗାଆଁର ପୂର୍ବ ପରଂପରା ଓ ସଂସ୍କୃତି ପ୍ରକୃତରେ ଅନନ୍ୟ ।

୧୯୫୫ ମସିହା ପରଠାରୁ ଏହାର ପରଂପରା ଓ ସଂସ୍କୃତିର କ୍ରମଶଃ ଅବକ୍ଷୟ ଘଟିଲା । ପ୍ରଳୟଙ୍କରୀ ବନ୍ୟାରେ ଭାଗବତ ଟୁଙ୍ଗୀ ଭାଙ୍ଗିଗଲା । ତା' ପରଠାରୁ ଠାକୁର ଅସ୍ଥାୟୀ ଭାବରେ ବାର ଦ୍ୱାର ହେଲେ । ସ୍ଥାନ ଅଭାବରୁ ନିୟମିତ ଭାବରେ ସମସ୍ତଙ୍କର ଠାକୁର ଘରକୁ ଆସିବା ବନ୍ଦ ହୋଇଗଲା । ଠାକୁର ପୂଜା ନିମନ୍ତେ ଉପଯୁକ୍ତ ପରିବେଶ ନଷ୍ଟ ହୋଇଗଲା । ଅଧିକାଂଶ ନିଜ ନିଜ ଘରେ ଠାକୁର ରଖି ପୂଜା ଆରମ୍ଭ କରିଦେଲେ । ସାମୂହିକ ପୂଜା, ଓଷା, ବ୍ରତ କାଳକ୍ରମେ ବିଖଣ୍ଡିତ ହେଲା । ପରସ୍ପର ମଧ୍ୟରେ ମତାନ୍ତର, ମନାନ୍ତରରେ ପରିଣତ ହେଲା । ଭାଗବତ ଗୋସାଇଁଙ୍କ ନିକଟରେ ମନାନ୍ତରର ସମାଧାନ ନହୋଇ ସମସ୍ୟା କୋର୍ଟ-କଚେରିର ଦ୍ୱାରସ୍ଥ ହେବାକୁ ଲାଗିଲା । ଧିରେ ଧିରେ ଗାଆଁର ଏକତା ନଷ୍ଟହେବା ସହ ଅପସଂସ୍କୃତି କାୟା ବିସ୍ତାରକରିବା ଫଳରେ ଗାଆଁର ମର୍ଯ୍ୟାଦା ମଧ୍ୟ କ୍ଷୁର୍ଣ୍ଣ ହେବାରେ ଲାଗିଲା ।

ଭାଗବତ ଗୋସାଇଁଙ୍କ ମନ୍ଦିର ନିର୍ମାଣ ହେବା ପାଇଁ ଅନେକ ବର୍ଷ ଲାଗିଗଲା । ପରିଶେଷରେ ଅନେକ ବାଧାବିଘ୍ନ ସତ୍ତ୍ୱେ କେବଳ ତାଙ୍କରି ଦୟାରୁ ସୁନ୍ଦର ମନ୍ଦିରଟିଏ ନିର୍ମାଣ ହୋଇପାରିଲା । ଶ୍ରୀଜଗନ୍ନାଥ, ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ସହ ମନ୍ଦିରରେ ଉପବିଷ୍ଟ ହେଲାପରେ ଗାଁଆର ଅବସ୍ଥାରେ ଉନ୍ନତି ପରିଲକ୍ଷିତ ହେଲା । ସୁସ୍ଥ ପରିବେଶ, ସୁସ୍ଥ ପରଂପରା ପୁନରାୟ ଫେରି ଆସିଲା । ଫେରିଆସିଲା ଭାଗବତ

ସଂସ୍କୃତି । ପ୍ରତି ସନ୍ଧ୍ୟାରେ ଧୂପ, ଦୀପ, ନୈବେଦ୍ୟ ସହ ଉପସ୍ଥିତ ହେଉଛନ୍ତି ଗ୍ରାମବାସୀ । ଭାଗବତ ପାଠ କରାଯାଉଛି । ଭାଗବତର ମାହାତ୍ମ୍ୟ ଲୋକମାନେ ଧୀରେ ଧୀରେ ହୃଦୟଙ୍ଗମ କଲେଣି । ସୂର୍ଯ୍ୟ କିରଣରେ କୁହୁଡ଼ି ଉଭେଇ ଗଲାପରି ଭାଗବତ ମନ୍ଦିର ସ୍ଥାପନା ପରେ ସମସ୍ତ ଅପସଂସ୍କୃତି ଉଭେଇଯାଇ ଗାଆଁର ସୁଖ ସମୃଦ୍ଧି ବୃଦ୍ଧି ପାଇଲାଣି । ଗ୍ରାମର ସମସ୍ତ ସୁଖ-ଦୁଃଖର ସାଥି ଭାଗବତ ଗୋସାଇଁ । ସମସ୍ତ ବିପଦକୁ ପ୍ରତିହତ ତଥା ଭବ ସଂସାରରୁ ତାରିବା ପାଇଁ ମନ୍ଦିର ଉପରେ ଶୋଭା ପାଉଛି ନୀଳଚକ୍ର ଓ ପତିତପାବନ ବାନା ।

# ଆରାଧନା

ଶ୍ରୀଜଗନ୍ନାଥ ଏକ ତତ୍ତ୍ୱ । ଏହି ତତ୍ତ୍ୱ ସୃଷ୍ଟି କରିଛି ଠାକୁର ବିଗ୍ରହ । ହସ୍ତ, ପଦ, କର୍ଣ୍ଣ ହୀନ ଅର୍ଦ୍ଧନିର୍ମିତ ବିଗ୍ରହ । ଭକ୍ତମାନଙ୍କୁ ଆକୃଷ୍ଟ କରିବା ପାଇଁ ମୁଖମଣ୍ଡଳରେ ଦୁଇଟା ଚକାଚକା ବଡ଼ ଆଖି । ସମ୍ମୋହିତ ହୋଇ ଭକ୍ତଟିଏ ଅପଲକ ନୟନରେ ଚାହିଁରହେ ସେହି ଚକା ଆଖିକୁ । କାଳିଆ ଭକ୍ତମାନଙ୍କୁ ବିଭିନ୍ନ ରୂପର ମାୟାରେ ସମ୍ମୋହିତ କରେ । ଚକାଆଖିର ମାୟାରେ କିଏ ବାତ୍ସଲ୍ୟ ମୋହରେ ବନ୍ଧା ତ କିଏ ପ୍ରଣୟ ମୋହରେ, କେହି କେହି ସଖା ବା ବନ୍ଧୁ ମୋହରେ ବନ୍ଧା । ସାରା ଜଗତକୁ ଏକ ସୂକ୍ଷ୍ମଡୋରିରେ ବାନ୍ଧି ରଖିଛି କାଳିଆ ଠାକୁର ।

ଶ୍ରୀକୃଷ୍ଣ ଓ ବିଷ୍ଣୁଙ୍କ ପରି ଜଗନ୍ନାଥଙ୍କର ମଧ୍ୟ ଅନେକ ନାମ । ଯେ ଯେଉଁ ଭାବରେ ସ୍ମରଣ କରେ ସେ ସେହି ଭାବରେ ମନକାମନା ପୂର୍ଣ୍ଣ କରନ୍ତି । ସେ ଶ୍ରଦ୍ଧା, କରୁଣା ଓ ଭାବର ଦେବତା ।

ଏହି ଅର୍ଦ୍ଧନିର୍ମିତ ଦେବତା ବୋଧହୁଏ ସୃଷ୍ଟିର ବୈଚିତ୍ର୍ୟକୁ ପ୍ରତିପାଦନ କରୁଛନ୍ତି । ସୃଷ୍ଟି ପୂର୍ଣ୍ଣମାତ୍ରାରେ ସଂପୂର୍ଣ୍ଣ ହୋଇନାହିଁ । ଏହା ସଦାସର୍ବଦା ଅସଂପୂର୍ଣ୍ଣ । ଏହି ଅସଂପୂର୍ଣ୍ଣତାର ପ୍ରତୀକ ସ୍ୱରୂପ ଶ୍ରୀଜଗନ୍ନାଥଙ୍କର ଦାରୁ ବିଗ୍ରହ ଅସଂପୂର୍ଣ୍ଣ । ଅଥଚ ତାଙ୍କ ନାଭିରେ ଲୁକ୍କାୟିତ ହୋଇ ରହିଛି ପରମବ୍ରହ୍ମ, ପରମ ସତ୍ୟ ।

ଭଗବାନଙ୍କୁ ପାଇବାକୁ ହେଲେ ସମର୍ପଣଭାବକୁ ଆଧାର କରିବାକୁ ହେବ । ଆରାଧନାର ମୂଳମନ୍ତ୍ର ସମର୍ପଣ । ସମ୍ପୂର୍ଣ୍ଣରୂପେ ଈଶ୍ୱରଙ୍କ ନିକଟରେ ନିଜକୁ ସମର୍ପିତ କରିଦେଲେ ମନକାମନା ପୂରଣ ହୁଏ । କୁରୁସଭାରେ ଦ୍ରୌପଦୀଙ୍କ ବସ୍ତ୍ରହରଣ ସମୟରେ ନିଜକୁ ଦୁଃଶାସନ କବଳରୁ ରକ୍ଷା କରିବା ନିମନ୍ତେ ଦ୍ରୌପଦୀଙ୍କ ଆକୁଳ ଆବେଦନ ଭଗବାନ ଶ୍ରୀକୃଷ୍ଣଙ୍କର କର୍ଣ୍ଣଗୋଚର ହେଲା । କିନ୍ତୁ ଯେଉଁ ପର୍ଯ୍ୟନ୍ତ ଦ୍ରୌପଦୀ ନିଜ

ଉପରେ ଆସ୍ଥା ରଖି ଦୁଃଶାସନର ପ୍ରତିରୋଧ କରୁଥିଲେ, ଶ୍ରୀକୃଷ୍ଣଙ୍କର ଆସନ ଟଳି ନ ଥିଲା । ଯେଉଁ ମୁହୂର୍ତ୍ତରେ ଅବଶ, ଅସହାୟ ଦ୍ରୌପଦୀ, ଶ୍ରୀକୃଷ୍ଣଙ୍କ ସହାୟତା ନିମନ୍ତେ ଦୁଇହାତ ଉପରକୁ ଟେକି ସଂପୂର୍ଣ୍ଣରୂପେ ଶ୍ରୀକୃଷ୍ଣଙ୍କ ପାଦତଳେ ନିଜକୁ ସମର୍ପିଦେଲେ, କୋଟିବସ୍ତ୍ର ଦେଇ ଭଗବାନ ତାଙ୍କ ଲଜ୍ଜା ନିବାରଣ କରିଥିଲେ । ମୃଗୁଣୀ ମଧ୍ୟ ଈଶ୍ୱରଙ୍କୁ ଆରାଧନା କରି ବ୍ୟାଧ କବଳରୁ ଶିଶୁ ସହିତ ମୁକ୍ତି ପାଇଥିଲା । ସମର୍ପଣରେ ହିଁ ଈଶ୍ୱରଙ୍କର କୃପାଲାଭ କରିହୁଏ । କାଳେକାଳେ ଭକ୍ତର ଭଗବାନ । ଭକ୍ତର ଆକୁଳ ନିବେଦନ ଭଗବାନଙ୍କ ଆସନ ଥରାଇ ଦିଏ । ସମସ୍ତ କାମନା, ବାସନା ତ୍ୟାଗକରି ନିଜକୁ ଈଶ୍ୱରଙ୍କ ପାଦତଳେ ସମର୍ପିଦେଲେ ମୋକ୍ଷ ପ୍ରାପ୍ତି ହୁଏ । କର୍ମ ଅନୁସାରେ ଫଳ, ଏହା ଭାଗବତର ବାଣୀ । ସତ୍ କର୍ମର ସତ୍ ଫଳ । ଅସତ୍ କର୍ମର ଅସତ୍ ଫଳ । ଶୁଦ୍ଧପୂତ, ଭକ୍ତି ଭାବରେ ଈଶ୍ୱରଙ୍କୁ ଆରାଧନା କଲେ ସୁଫଳ ପ୍ରାପ୍ତି ହୁଏ । ମନୁଷ୍ୟ ଯେଉଁ ବୀଜ ବପନ କରେ, ସେହି ଫସଲ ଅମଳ କରେ । ଠିକ୍ ସେହିପରି ମନୁଷ୍ୟର କର୍ମ ଅନୁସାରେ ଫଳ । ମନୁଷ୍ୟ ଯେଉଁ କର୍ମ କରିବ, ସେହି କର୍ମର ଫଳ ତାକୁ ନିଶ୍ଚୟ ପ୍ରାପ୍ତ ହେବ । ଏହା ବିଧିର ବିଧାନ, ପ୍ରକୃତିର ନିୟମ ।

ଈଶ୍ୱରଙ୍କ ସୃଷ୍ଟିରେ ମନୁଷ୍ୟ ସର୍ବଶ୍ରେଷ୍ଠ ପ୍ରାଣୀ । ଈଶ୍ୱର ମନୁଷ୍ୟକୁ ଶରୀର, ବୁଦ୍ଧି, ବିବେକ, ମନ ସମସ୍ତ ଦେଇଛନ୍ତି । କର୍ମ କରିବାର ସ୍ୱାଧୀନତା ମଧ୍ୟ ପ୍ରଦାନ କରିଛନ୍ତି । ସେ କର୍ମ ପାପ ହେଉ ଅଥବା ପୁଣ୍ୟ ହେଉ । ଈଶ୍ୱର କେବଳ କର୍ମଫଳ ନିୟମକୁ ନିୟନ୍ତ୍ରିତ କରନ୍ତି । ବୁଦ୍ଧିମାନ ମନୁଷ୍ୟ ନିଜର ଗନ୍ତବ୍ୟ ପଥ ନିଜେ ଚୟନ କରେ । ନିଜର କାର୍ଯ୍ୟପନ୍ଥା ନିଜେ ନିରୂପଣ କରେ । ସତ୍‌ପଥ, ସତ୍‌କାର୍ଯ୍ୟ ବିବେଚନା କରିବାର ଶକ୍ତି ମନୁଷ୍ୟର ଅନ୍ତର୍ନିହିତ । ପଥ ହୁଡ଼ିଲେ ଅଧଃପତନ ସୁନିଶ୍ଚିତ । ଅସତ୍ କର୍ମର କୁପରିଣାମ ପ୍ରାଣୀକୁ ଭୋଗ କରିବାକୁ ପଡ଼ିଥାଏ । ସତ୍ କର୍ମ ହିଁ ଈଶ୍ୱର ଉପାସନା । ମୋହମୁକ୍ତ, ନିରାସକ୍ତ ଜୀବନହିଁ ମୋକ୍ଷ ପ୍ରାପ୍ତିର ପଥରେ ଅଗ୍ରସର ହୁଏ । କର୍ମ ମନୁଷ୍ୟର ଅଧିନ, କିନ୍ତୁ ଫଳ ଈଶ୍ୱରଙ୍କର ଦାନ । ଫଳପ୍ରାପ୍ତିର ଆଶା ନ ରଖି କର୍ମ କରିବା ଦ୍ୱାରା ଈଶ୍ୱର ପ୍ରାପ୍ତିର ମାର୍ଗ ଉନ୍ମୁକ୍ତ ହୋଇଯାଏ । ଏଥି ନିମନ୍ତେ ଗୀତାର ସାରମର୍ମକୁ ଉପଲବ୍ଧି କରିବା ବିଧେୟ ।

ଯାହା ହେଲା, ଠିକ୍ ହେଲା ।
ଯାହା ହେଉଛି, ଠିକ୍ ହେଉଛି ।
ଯାହା ହେବ, ଠିକ୍ ହେବ ।
ତୁମର କ'ଣ ଗଲା ଯେ ତୁମେ କାନ୍ଦୁଛ ।
ତୁମେ କ'ଣ ଆଣିଥିଲ, ଯେ ହଜାଇଦେଲ ।

ତୁମେ କ'ଣ ସୃଷ୍ଟି କରିଥିଲ, ଯେ ନଷ୍ଟ ହୋଇଗଲା ।

ତୁମେ ଯାହା ନେଲ, ଏଠାରୁ ନେଲ ।

ଯାହା ଦେଲ, ଏହିଠାରେ ଦେଲ ।

ଯାହା ଆଜି ତୁମର ବୋଲି ଭାବୁଛ, ତାହା କାଲି ଆଉ କାହାର ଥିଲା ।

ପରଦିନ ଆଉ କାହାର ହୋଇଯିବ ।

ପରିବର୍ତ୍ତନ ସଂସାରର ନିୟମ ।

ଈଶ୍ୱର ସବୁ ଦେଖୁଛନ୍ତି ।

ତେଣୁ ଦୁଃଖ କରନାହିଁ, ମୋହ କରନାହିଁ । ନିରାସକ୍ତ ଜୀବନ ଯାପନ କର । ମୋକ୍ଷ ସୁନିଶ୍ଚିତ । ଏହା ଗୀତାର ବାଣୀ ।

ଶ୍ରୀଜଗନ୍ନାଥ, ନବବର୍ଷ, ୨୦୧୩



# କାଳିଆ ଆସୁଛି

କାଳିଆ ଫେରୁଛି ଆଜି ଆଖି ପାଉନଥିବା ପ୍ରତୀକ୍ଷାର ଅବସାନ ଘଟାଇ । ଆଜି ତା'ର ନେଉଳା ବିଜୟ । ନବକଳେବର ଧାରଣ କରି ଏକାମ୍ର ନଗରୀରୁ ଆସି ବିଜେ କରିବ ନେଉଳା ଗ୍ରାମରେ ତା'ପାଇଁ ନବନିର୍ମିତ ମନ୍ଦିରର ସିଂହାସନରେ । ଏ ସିଂହାସନ ରତ୍ନଖଚିତ ସିଂହାସନ ନୁହେଁ । ଆମ ଭକ୍ତିର ରଙ୍ଗରେ ରଙ୍ଗାୟିତ ବାଲି ସିମେଣ୍ଟରେ ନିର୍ମିତ ସାଧାରଣ ସିଂହାସନ । ଆମର ବା ଧନ କାହିଁ ତୋ ସିଂହାସନରେ ରତ୍ନ ଖଞ୍ଜିବାକୁ । କିନ୍ତୁ ଆମର ମନଅଛି, ଶ୍ରଦ୍ଧାଅଛି, ଭକ୍ତିଅଛି, ପ୍ରେମ ବି ଅଛି । ଏହି ଡୋରିରେ ଆମେ ବାନ୍ଧିରଖିଛୁ ତତେ, ଆମର କୁଳଦେବତା ଭାଗବତ ଗୋସାଇଁଙ୍କୁ । ଦୀର୍ଘ ଦିନର ଅପେକ୍ଷାରେ ପୂର୍ଣ୍ଣଚ୍ଛେଦ ଟାଣି ବହୁଦିନର ମନସ୍କାମନା ଆଜି ଆମର ଏତେଦିନ ପରେ ପୂର୍ଣ୍ଣ ହେବାକୁ ଯାଉଛି । ଦିନଦିନ ଧରି ଛାତି ତଳେ ଗୁମୁରୁଥିବା ବେଦନାର ଉପଶମ ହୋଇଛି ।

ଭାଇ ଭଉଣୀଙ୍କୁ ନେଇ ବଡ ଦେଉଳରେ ରହିଲୁ । ସବୁ ତୋର ବଡ଼ରେ କାଳିଆ - ବଡ଼ ଠାକୁର, ବଡ଼ଦାଣ୍ଡ, ବଡ଼ ପଣ୍ଡା ଏମିତି କେତେ କ'ଣ ବଡ଼ । ମହୋଦଧି କୂଳରେ ଷାଠିଏ ପଉଟି ଭୋଗଖାଇ ପଣ୍ଡା ପଢ଼ିଆରିଙ୍କ ଗହଣରେ ତୋ ଦିନ ଯାଉଛି । ଆମ ନିକଟରେ ତତେ ଅୟସରେ ରଖିବା ଲାଗି ଏତେ ଉପଚାର ନାହିଁ ସତ, କିନ୍ତୁ ତୁ ତ ଭକ୍ତର ବନ୍ଧୁ, ଦୀନର ବାନ୍ଧବ, ଆମ ମନର ଶ୍ରଦ୍ଧା କ'ଣ ତତେ ବାନ୍ଧିରଖି ପାରିବ ନାହିଁ ? କେତେଦିନରୁ ତୋ ଆସିବା ବାଟକୁ ଚାହିଁ ଚାହିଁ ଆଖି ପାଣି ଆଖିରେ ମରିଛି, ତତେ କ'ଣ ଜଣାନାହିଁ ।

୨୭ ଏପ୍ରିଲ, ୨୦୦୯ ମସିହା । ନୂତନ ମନ୍ଦିରର ପ୍ରତିଷ୍ଠା ଦିନ ପାଖେଇ ଆସୁଛି । ମୋ ମନର ଉଚ୍ଚାଟ ସୀମା ଲଙ୍ଘନ କରୁଛି । ପ୍ରାରମ୍ଭିକ କାର୍ଯ୍ୟ ନିମନ୍ତେ ନିନି ଓ ସାନ ଭଉଣୀ ବୀଣା ପ୍ରତିଷ୍ଠାର କିଛିଦିନ ପୂର୍ବରୁ ଗାଁକୁ ଚାଲିଗଲେ । ଅକ୍ଷୟ ତୃତୀୟା ପୂର୍ବଦିନ ଭୁବନେଶ୍ୱରରୁ ତିନି ବିଗ୍ରହଙ୍କୁ ନେଇ ଗାଁଆକୁ ଯିବାର ଦାୟିତ୍ୱ ମୋର ।

ଗାଁଆକୁ ଯିବାର ପୂର୍ବଦିନ ଠାକୁରମାନଙ୍କୁ ଉତ୍କଳିକାରୁ ଆଣିଲୁ । ସେଦିନ ରାତ୍ରିଯାପନ ଧର୍ମବିହାରରେ । ରାତିରେ ଠାକୁରଙ୍କ ପାଖରେ ଲୋନି ଆଳତି କଲା । ପରଦିନ ପ୍ରଭାତରେ ଲୋନି ଠାକୁରମାନଙ୍କୁ ଆଣି ଗାଡ଼ିରେ ସଜାଇ ଶୁଆଇଦେଲା । ବାବୁନି ନିକଟରେ ପହଞ୍ଚିଲା ପରେ ବୋହୂ ବନ୍ଦନା ଠାକୁରଙ୍କୁ ଆଳତୀ କଲା ପରେ ଗାଁ ଅଭିମୁଖେ ଯାତ୍ରାକଲୁ । ଜଗନ୍ନାଥଙ୍କ ପାଖରେ ଜାକିଜୁକି ହୋଇ ବସିଲି । ଆଗ ସିଟ୍‌ରେ ବାବୁନି । ଦିଲିପ ଗାଡ଼ି ଚଲାଇଲା ।

କାଳିଆ ଆଗମନ ସୂଚନା ଗାଁଆଲୋକଙ୍କୁ ଦେବା ଲାଗି ନିନି, ରିଙ୍କି, ଲିଙ୍କି ଓ ଛୁଟ୍‌କୁକୁ ସାଙ୍ଗରେ ନେଇ ବ୍ରାହ୍ମଣ ଘରଠାରୁ କୁମ୍ଭାର ଘର ପର୍ଯ୍ୟନ୍ତ ପ୍ରତ୍ୟେକ ଘରେ ବୁଲିବୁଲି କହିଦେଇ ଆସିଲା ।

ଗାଁଆସାରା ଲୋକ ନିଶ୍ଚୟ ଆଗ୍ରହରେ ଚାହିଁ ରହିଥିବେ କେତେବେଳେ କାଳିଆ ଆସିବ । କାଳିଆକୁ ଦେଖିବାର ଅସୀମ ଉତ୍କଣ୍ଠା ସେମାନଙ୍କ ମନପ୍ରାଣକୁ ଆହ୍ଲାଦିତ କରି ରଖିଥିବ । ଭାବି ଭାବି ବାରମ୍ବାର ଲୁହରେ ଆଖି ଭିଜି ଯାଉଥାଏ । ଆନନ୍ଦର କୋହ ଛାତି ଭିତରୁ ରହି ରହି ବାହାରି ଆସୁଥାଏ ।

× × × × × ×

ଅନେକଦିନ ତଳର କଥା । ତୁ ଦାଣ୍ଡ ଖଞ୍ଜାରେ ଥିଲୁ ଏକ ସ୍ୱତନ୍ତ୍ର ଟୁଙ୍ଗୀରେ । ବୋଉର ସମସ୍ତ ସମୟ ତୋରି ସେବାରେ କଟୁଥିଲା । ଟୁଙ୍ଗୀ ସାମ୍ନାରେ ଥିବା ଚଉରାରେ ସେ ମୁରୁଜ ପକାଏ । କିନ୍ତୁ କୁଟୀଦେଇର ଆଗ୍ରହରେ ମୋତେ ଅନ୍ୟାନ୍ୟ ଚିତ୍ର ଆଙ୍କିବାକୁ ହୁଏ । ତୋର ଦଶ ଅବତାରରୁ ପ୍ରତିଦିନ ଗୋଟିଏ ଗୋଟିଏ ଅବତାର ଅଙ୍କାଯାଏ । କୁଟୀଦେଇ ରଙ୍ଗ ଭରେ, ସାହାଯ୍ୟ କରନ୍ତି ଚୁଟି, ଚାନ୍ଦ, ବୀଣା ଓ ପ୍ରମିଳା । ଅନେକ ବଡ଼ ବଡ଼ ମୂର୍ତ୍ତି । ଦାଣ୍ଡଖଞ୍ଜା ମୁରୁଜରେ ପୂରି ଉଠୁଥାଏ । ଅନେକ ଲୋକ ମୁରୁଜ ଦେଖିବାକୁ ଆସନ୍ତି । କେତେ ସୁନ୍ଦର ମନୋରମ ପରିବେଶ । ଅତୀତର ସେ ମଧୁର ସ୍ମୃତି ଆଜି ମଧ୍ୟ ମନ ମଧ୍ୟରେ ସତେଜ ହୋଇ ରହିଛି ।

ସବୁକିଛି ଲୀନ ହୋଇଗଲା ୧୯୫୫ ମସିହା ପ୍ରଳୟଙ୍କରୀ ବନ୍ୟାରେ । ବନ୍ୟାର ତାଣ୍ଡବ ଲୀଳାରେ ତୋ ଟୁଙ୍ଗୀ ସହିତ ଆମର ତିନି ଖଞ୍ଜା, ଚଉପାଢ଼ୀ ସବୁ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ଗୋଟିଏ ଘର ଭାଙ୍ଗି ପାଞ୍ଚଘର ହେଲା । ବଣଗୋବିନ୍ଦ ପରିବାର ଆପେ ଆପେ ଅଲଗା ହୋଇଗଲେ ସେହିଦିନଠାରୁ । କିନ୍ତୁ ଏକମନ, ଏକପ୍ରାଣ ପରିବାରର ମୂଳ ତତ୍ତ୍ୱ ଥିଲା । ହାଣ୍ଡିଚୁଲି, ଘର ସିନା ଅଲଗା ହୋଇଗଲା, କିନ୍ତୁ ଜମିବାଡ଼ି, ପୋଖରୀ, ଠାକୁର, ଦାଣ୍ଡ, ପଡ଼ିଆ ସବୁ ଏକତ୍ର ଏବଂ ଆଜି ପର୍ଯ୍ୟନ୍ତ ମଧ୍ୟ ଅଛି ।

ତତେ ପାଣିରୁ ଛାଣି ବଣଗୋବିନ୍ଦ ପରିବାର ତୋ ଚାରିକଡ଼ରେ ରହି ମଝିଦାଣ୍ଡରେ ତତେ ଖଣ୍ଡେ ଟୁଙ୍ଗୀରେ ସ୍ଥାପନ କରି ପୂଜା ଅର୍ଚ୍ଚନା କଲେ ।

ଅନେକ ବର୍ଷ ଅତିବାହିତ ହୋଇଗଲା, କାଳର କରାଳ ଗତିରେ । ତୋ ମନ୍ଦିରଟି କିନ୍ତୁ ନିର୍ମାଣ ହୋଇ ପାରିଲା ନାହିଁ । କେମିତି ହେବ କହିଲୁ ? ତୋର ଭକ୍ତ, ବଣଗୋବିନ୍ଦ ପରିବାର ବନ୍ୟାରେ ବାସ ହରାଇ ନିଜ ନିଜ ସୁବିଧା ଅନୁସାରେ ପଲା ଖଣ୍ଡିଏ ଖଣ୍ଡିଏରେ ଆଶ୍ରୟ ନେଲେ । ମନ ଅଭାବରୁ କାଳକ୍ରମେ ତୋ ଟୁଙ୍ଗୀଟି ମଧ ଭାଙ୍ଗିଗଲା । ତତେ ଯା ଘର, ତା' ଘର ହେବାକୁ ପଡ଼ିଲା । ଆଜି ଏତେଦିନ ପରେ ନବ କଳେବରରେ ସ୍ୱଗୃହକୁ ତୋର ପ୍ରତ୍ୟାବର୍ତ୍ତନ ।

ଏହା ମଧରେ ଅର୍ଦ୍ଧଶତାବ୍ଦୀ ବିତିଗଲାଣି । ପରିବାର ଓ ଶୁଭେଚ୍ଛୁମାନଙ୍କର ସାହାଯ୍ୟ, ସହାନୁଭୂତିରେ ଏକ ସୁଦୃଶ୍ୟ ମନ୍ଦିର ନିର୍ମାଣ ସମ୍ଭବ ହୋଇଛି । ଅକ୍ଷୟ ତୃତୀୟା ଦିନ ତୁ ତୋ ମନ୍ଦିରରେ ବିଜେ କରିବୁ । କିନ୍ତୁ ମୋ ବୋଉ, ଯେ କି ତତେ ଗଳାମାଳି କରିଥିଲା, ତୋରି ସେବାରେ ଦିନ କାଟୁଥିଲା, ତୋର ନବକଳେବର ଓ ମନ୍ଦିର ନ ଦେଖି ଦୁନିଆଁ ଛାଡ଼ିଲା । ଯନ୍ତ୍ରଣାରେ ଛଟପଟ ହୋଇଥିଲି ସେଦିନ । ବୋଉ ପାଇଁ କିଛି ନ କରିପାରିବାର ଗ୍ଳାନିରେ ହୃଦୟ ମୋର ଭାଙ୍ଗି ପଡ଼ିଥିଲା । ସେହିଦିନ ଠାରୁ କେତେ ନିରୋଳା ମୁହୂର୍ତ୍ତରେ ତତେ ମନେ ନପକାଇଛି କହିଲୁ । ବୋଉ ମୋର ଅନେକଦିନରୁ ଇହଧାମ ଛାଡ଼ି ଚାଲିଗଲାଣି । ଚାଲିଗଲେଣି ମଧ ଠାକୁରମାଆ, ବାୟାଣୀବୋଉ, ଦାଦା, ମଇଁଆ, ଉମାଦାଦା, ନୂଆଖୁଡ଼ୀ, ହରିଆଦାଦା, ସାନଖୁଡ଼ୀ, ବଣୁଆଁଭାଇ, ବଡ଼ନୂଆବୋଉ, ଟାଟାନୂଆବୋଉ ଓ ବିବେକ ଭାଇ । ତୁ ଟିକିଏ ଆଗରୁ ଏହି ବ୍ୟବସ୍ଥା କରି ଆସିଥିଲେ କ'ଣ ହୋଇ ନ ଥାଆନ୍ତା ।

କେତେ ମନସ୍ତାପ, କେତେ ଯନ୍ତ୍ରଣା, ତତେ କ'ଣ ଅଛପା ଅଛି ଯେ । ସବୁ ତ ତୁ ଜାଣିଥିବୁ । ସଂସାରର ବୋଝ ମୁଣ୍ଡାଇ ମୁଣ୍ଡାଇ, ଜୀବନ ରାସ୍ତାରେ ଚାଲୁ ଚାଲୁ, ଚାହୁଁ ଚାହୁଁ ଦିନସବୁ କେମିତି କେଜାଣି ସମୟର ସୁଅରେ ବହି ଚାଲିଗଲା । ହେଲେ ତୁ ଆସିଲୁନି । କେମିତି ବା ଆସିଥାଆନ୍ତୁ । କେଉଁଠି ରହିଥାଆନ୍ତୁ କହିଲୁ । ଆମେ ତତେ କେମିତି ଆଣିବୁ, କେଉଁଠି ରଖିବୁ, ତୋ ମନ୍ଦିର କେମିତି ହେବ, ଭାବି ଭାବି କୌଣସି କୂଳକିନାରା ପାଇଲୁ ନାହିଁ । ସମୟର ଅଥଳ ସମୁଦ୍ରରେ ଅସହାୟ ହୋଇ ଭାସି ବୁଲିଲୁ ତୋର ଦରଶନ ପାଇଁ ।

ବଣଗୋବିନ୍ଦ ପରିବାରର କେହିକେହି ନିଜ ରହିବା ନିମନ୍ତେ ବାସ ଉପଯୋଗୀ ସ୍ଥାୟୀ ପକ୍କାଘର, କଚ୍ଚାଘର ନିର୍ମାଣ କରି ସାରିଲେଣି । ବଣଗୋବିନ୍ଦଙ୍କ ଦାନରେ ଗଢ଼ି ଉଠିଥିବା ଗାଁଆଟିର ଅଧିକାଂଶ ଲୋକ ମଧ କୋଠାଘରେ ବାସ କଲେଣି । କିନ୍ତୁ ଠାକୁରଙ୍କ କଥା ଆମ କାହାରି ମନରେ ପଡୁନାହିଁ । ମନୁଷ୍ୟ ମାତ୍ରେ ସ୍ୱାର୍ଥପର । ଯେଉଁ ଦେବତାଙ୍କ ଦାନରେ ସେ ନିଜର ଜୀବନ ନିର୍ବାହ କରେ, ସେହି ଦୟାବନ୍ତ

ପ୍ରଭୁଙ୍କୁ ସେ ସୁଖ ସମୟରେ ଭୁଲିଯାଏ । ଠାକୁରଙ୍କର ବାସଗୃହ ନାହିଁ, ତାଙ୍କୁ ଯେ ବାରଦ୍ୱାର ହେବାକୁ ପଡୁଛି, ସେ ଚିନ୍ତା ଘୁଣାକ୍ଷରେ ମଧ୍ୟ କାହାରି ଚିନ୍ତା-ଚେତନାକୁ ସ୍ପର୍ଶ କରୁନାହିଁ ।

ଏତେ ଗୁଡ଼ାଏ ବର୍ଷ ଚାହୁଁ ଚାହୁଁ ସମୟ ସୁଅରେ ଭାସି ଚାଲିଗଲା । ଅଥଚ ଭାଗବତ ଗୋସାଇଁଙ୍କର ମନ୍ଦିରଟିଏ ତଥାପି ହୋଇ ପାରିଲା ନାହିଁ । ଇତ୍ୟବସରରେ ଏକଦା ମଇଁଆକୁ ନେଇ ଗାଁଆକୁ ଆସିବା ସମୟରେ ଆମର ଛୋଟିଆ ଚାଳଘରଟିର ଭଙ୍ଗାରୁଜା ଦୟନୀୟ ଦୃଶ୍ୟ ଦେଖି ମଇଁଆ କାନ୍ଦି ପକାଇଲା । ପରିବାର ଲୋକଙ୍କ ଚଳପ୍ରଚଳ ପାଇଁ ତାଙ୍କ ଉପରେ ଭରସା କରି ଘରର ଦାୟିତ୍ୱ ଦେଇ ସେ ଆମ ନିକଟକୁ ଚାଲି ଆସିଥିଲା । ଅଯତ୍ନରେ ଘରବାଡ଼ିର ଅବସ୍ଥା ଏପରି ହେବ ଏହା ତା'ର କଳ୍ପନାକୁ ସ୍ପର୍ଶ ସୁଦ୍ଧା କରି ନ ଥିଲା । ଘର ଓ ବାରଣ୍ଡାରେ ଗାଈ, ଛେଳି ବନ୍ଧାହୋଇ ତାହା ଗୁହାଳର ଭ୍ରମ ସୃଷ୍ଟି କରୁଥିଲା ତଥା ବାଡ଼ର ଚିହ୍ନବର୍ଣ୍ଣ ମଧ୍ୟ ନ ଥିଲା । ସମୁଦାୟ ଡିହ ଓ ବାଡ଼ିରେ ପରିତ୍ୟକ୍ତ ପଦାର୍ଥ ପଡ଼ି ଶ୍ରୀହୀନ ମନେ ହେଉଥିଲା । ମଇଁଆ ଯତ୍ନରେ ଲଗାଇଥିବା ଫୁଲ ଓ ଫଳଗଛ ସବୁ ମରିହଜି ଯାଇଥିଲେ । ଗାଁଆରୁ ଫେରିବା ରାସ୍ତାରେ ଆଖି ଲୁହରେ ଭିଜି ଯାଇଥିଲା ମଇଁଆର ପଣତ ।

ଅତି କଷ୍ଟରେ ଦୁଇଟି ବଖରା ଘର କରାଇବାରେ ସେ ସମର୍ଥ ହୋଇଥିଲା । ଯୌଥ ପରିବାରରେ ଘର କରିବାର ଅନୁମତି ତଥା ସ୍ଥାନ ନିରୂପଣ ସହଜସାଧ୍ୟ ନ ଥିଲା । ତେଣୁ କେବଳ ମୁଣ୍ଡ ଗୁଞ୍ଜିବା ନିମନ୍ତେ ତା' ଶକ୍ତି ଅନୁଯାୟୀ ସେ ଏତିକି କରାଇ ପାରିଥିଲା । ତାକୁ କଥା ଦେଇଥିଲୁ ଏ ଡିହରେ ଘର ନିଶ୍ଚୟ ହେବ । କିନ୍ତୁ ଘର ହେବା ପୂର୍ବରୁ ମଇଁଆ ଓ ମନ୍ଦିର ହେବା ପୂର୍ବରୁ ବୋଉ ଆମକୁ ଛାଡ଼ି ଚାଲିଯିବାର ଯନ୍ତ୍ରଣା ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ଭୁଲି ପାରିବି ନାହିଁ ।

ଘରକରି ରହିଲା ପରେ ମନ୍ଦିରର ପରିକଳ୍ପନା । ପରିବାର ସଦସ୍ୟଙ୍କ ସହ ବିଚାର ବିମର୍ଷ କରି ଜୁଲାଇ ୧୬, ପବିତ୍ର ଶ୍ରୀଗୁଣ୍ଡିଚା ତିଥିରେ ସ୍ଥାନ ନିରୂପଣ ଓ ଭୂମିପୂଜା । ୨୦୦୬ ଶ୍ରୀପଞ୍ଚମୀ ଦିନ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ନିର୍ଦ୍ଧାରିତ ମନ୍ଦିର ପରିକଳ୍ପନାକୁ ଅତିକ୍ରମ କରି ଦୀର୍ଘ ପଚାଶ ଫୁଟର ମନ୍ଦିର ଛିଡ଼ା ହୋଇଗଲା । ଏହା ତୋ ଲୀଳା ବ୍ୟତୀତ ଆଉ କ'ଣ ହୋଇପାରେ କହିଲୁ କାଳିଆ । ଟଙ୍କା କେଉଁଠୁ ଆସିଲା, କେମିତି ଆସିଲା ଏକା ତୁ ହିଁ ଜାଣୁ । ମଇଁଆର ଗୋଟିଏ ଚାକୁଣ୍ଡା ଗଛ ବିକ୍ରିଲବ୍ଧ ଅର୍ଥରେ ପ୍ରଥମେ ମନ୍ଦିରର ନିଅଁ ପଡ଼ିଲା । ଏହା ପରେ ପରେ ଚତୁର୍ଦ୍ଦିଗରୁ ଲମ୍ୱି ଆସିଲା ସାହାଯ୍ୟର ହାତ । ତଥାପି - ମାଗି ଆଣିଲା ତୁଣ ସୋଡ଼କାଏ... ।

ବେଢ଼ା ଚାରିକଡ଼ର ଛାତ ପଡ଼ିବା ଦିନ ନିର୍ଦ୍ଧାରିତ ଦ୍ରବ୍ୟଠାରୁ ଅପର୍ଯ୍ୟାପ୍ତ ପରିମାଣରେ ଅଧିକ ଦ୍ରବ୍ୟର ଆବଶ୍ୟକତା ପଡ଼ିଲା । ବାଲି ପଡୁଥାଏ, ସିମେଣ୍ଟ ଗୋଳା ହେଉଥାଏ, ପ୍ରାୟ ତିରିଶ ପାଖାପାଖି ଲୋକ କାମ କରୁଥାଆନ୍ତି । ସକାଳରୁ ଦ୍ୱିପ୍ରହର ହୋଇଗଲା । କାମ ସରିଲା ନାହିଁ । ସେମାନେ ଥକିଗଲା ପରେ ମଜୁରୀନେଇ ଚାଲିଗଲେ । କ'ଣ କରାଯିବ, କାମ କେମିତି ହେବ । କିନ୍ତୁ ସମସ୍ତଙ୍କୁ ଚକିତ କରି ପୁନରାୟ କୋଡ଼ିଏରୁ ଊର୍ଦ୍ଧ୍ୱଲୋକ ଲାଗିପଡ଼ିଲେ । ସନ୍ଧ୍ୟା ହୋଇଗଲା । ତଥାପି କାମ ସରୁ ନାହିଁ । ଲୋକେ ଥକ୍କାମାରି ବସିପଡ଼ିଲେ । ସବୁରି ମୁହଁରେ ନୈରାଶ୍ୟର ଛାୟା । ତୁଣ୍ଡରେ – ଆଉ ହେବ ନାହିଁ... ।

ଏକଲା ରାଜ ଅଣ୍ଟା ଭିଡ଼ିଲା । ତା'ର ଉକ୍ତି ଥିଲା – ଯେତେ ରାତି ହେଉ ପଛେ, ସେ ତା'ର ସମସ୍ତ ଶକ୍ତି ଖଟାଇ ସାଆନ୍ତଘର ମନ୍ଦିର ମୁଣ୍ଡିମାରିବ । ଛଅହାତର ବଳିଷ୍ଠ ଚେହେରା । ସକାଳ ପହରୁ ଖଟିଲେ ମଧ୍ୟ ମୁହଁରେ ଲେଶମାତ୍ର କ୍ଳାନ୍ତିର ଚିହ୍ନ ନାହିଁ । ଅନ୍ୟମାନଙ୍କର ପଛଘୁଞ୍ଚା ସତ୍ତ୍ୱେ ସେ ଏକାକୀ ସାହସ କରି ଆଗେଇ ଆସିଲା ।

ତା' ଦେଖାଦେଖି ଥକିପଡ଼ିଥିବା ଲୋକମାନେ ମଧ୍ୟ ପରମ ଉତ୍ସାହରେ ଲାଗିପଡ଼ିଲେ । ସାଙ୍ଗରେ ମାତିଗଲେ କାଳିଆ ଓ ଘୁଡୁକା । କାଳିଆ ଗୀତର ଲହରୀ ଲମ୍ବାଇ ଦେଇଥାଏ । ଶୀତରାତିର ବୁକୁଚିରି ତା' ସ୍ୱର ଘୂମନ୍ତ ଲୋକର ଆଖିରୁ ନିଦ ଉଡ଼ାଇ ନେଉଥାଏ ତଥା କାମ କରୁଥିବା ଲୋକଙ୍କର ବଳକୁ ବହୁଗୁଣିତ କରି ଦେଉଥାଏ । ଶୀତରାତିକୁ ଉଷୁମ କରିବା ପାଇଁ ତଳେ ଧୁନି ଜଳୁଥାଏ । ଧୁନି ଚାରିକଡ଼ରେ ଆମେ ସବୁ ଛିଡ଼ା ହୋଇଥାଉ ଅସ୍ଥିର ଚିତ୍ତରେ । ମନ ମଧ୍ୟରେ ଦ୍ୱନ୍ଦ୍ୱ । ସତେ କ'ଣ ଭାଗବତ ଗୋସାଇଁଙ୍କ କାମ ଆଜି ଅଧୁରା ରହିଯିବ । କ'ଣ କାଳିଆର ଇଚ୍ଛା କେବଳ ସେ ଜାଣେ । ଆଶା-ଆଶଙ୍କାର ଲୁଚକାଳି ମଧ୍ୟରେ ଭଗବାନ ଡାକ ଶୁଣିଲେ । ନିରାଶ କଲେ ନାହିଁ । ଈଶ୍ୱରଙ୍କ ମହିମା ଅପାର । ଦେହଥରା ଶୀତରାତିକୁ ଭ୍ରୂକ୍ଷେପ ନ କରି ସମସ୍ତଙ୍କର ଆପ୍ରାଣ ଉଦ୍ୟମରେ ସେଦିନର ମନ୍ଦିର କାର୍ଯ୍ୟ ସମାପନ ହେଲା । ଏତେ ଲୋକ ଅଦଳ ବଦଳ ସତ୍ତ୍ୱେ ନକୁଳା ଓ ଜଗାର ହାତ ଥକିପଡ଼ି ନ ଥିଲା । ସକାଳରୁ କାମ ସରିବା ପର୍ଯ୍ୟନ୍ତ ସେମାନଙ୍କ ହାତ ନିରଳସ ଭାବରେ ଚାଲିଥାଏ । ମୁଖ୍ୟ ମିସ୍ତ୍ରୀ ନକୁଳା ଓ ଜଗା ତା'ର ସହାୟକ । କାର୍ଯ୍ୟ ଶେଷକରି ଦୁହେଁ ତଳକୁ ଓହ୍ଲାଇଲା ବେଳକୁ ପୂର୍ବଦିଗରେ ସିନ୍ଦୁରା ଫାଟି ଆସୁଥାଏ । ବାଉଁଶବୁଦା ଉହାଡ଼ରୁ ରହି ରହି ଭାସି ଆସୁଥାଏ କମ୍ପାଟୁଆର ଡାକ ।

× × × × × ×

କାଳିଆକୁ ତା' ମନ୍ଦିରରେ ଦେଖିବା ଲାଗି ମନ ମଧ୍ୟରେ କେତେ ଯେ ଉତ୍କଣ୍ଠା, ଏକଥା କେବଳ ତାକୁ ଜଣା । ମନକଥା କାହାକୁ କହିହୁଏ ନାହିଁ । ବାରମ୍ବାର ଆକ୍ଷେପ, ଅଭିଯୋଗ, ଅନେକ ସମୟରେ ମନକୁ ଖିନ୍‌ଭିନ୍ କରି ପକାଉଥାଏ । ସମୟ ସମୟରେ ମନର ଭାରସାମ୍ୟ ଅସନ୍ତୁଳିତ ଅବସ୍ଥାକୁ ଚାଲି ଯାଉଥାଏ ।

କାଳିଆ କେତେ ପରୀକ୍ଷା କରିବ କରୁ । ସେ ପାଣ୍ଡବଙ୍କ ବନ୍ଧୁ ହୋଇ ମଧ୍ୟ ସେମାନଙ୍କୁ ଅକଥନୀୟ ଶାରୀରିକ ତଥା ମାନସିକ ଯନ୍ତ୍ରଣା ଦେଇଥିଲା । ପରମ ଭକ୍ତ ବନ୍ଧୁ ମହାନ୍ତିକୁ ଭୋକରେ ଛଟପଟ କରାଇ ଚୋରର ଆଖ୍ୟା ଦିଆଇଥିଲା । ବାଲ୍ୟବନ୍ଧୁ ତଥା ସହପାଠୀ ସୁଦାମାକୁ ଜୀବନସାରା ଅଭାବ, ଅନାଟନରେ ଛଟପଟ କରାଇଥିଲା । ଆଉ ଏ ସାହାଯ୍ୟ ସହଯୋଗର ଅଭାବ ତ ତା' ତୁଳନାରେ ଅତି ନଗଣ୍ୟ ।

ବିପଦ ଯେତେବେଳେ ଆସେ, ଏକ ସମୟରେ ଚତୁର୍ଦ୍ଦିଗରୁ ମାଡ଼ିଆସେ । ଅର୍ଥାଭାବ ଓ କାର୍ଯ୍ୟରେ ବ୍ୟାଘାତ ଅନବରତ ଲାଗି ରହିଥାଏ । ମାନସିକ ଅଶାନ୍ତି ଅନେକ ସମୟରେ ମନର ବଳକୁ ଭାଙ୍ଗି ଦେଉଥାଏ । ଏତେ ଅସୁବିଧା ସତ୍ତ୍ୱେ ମନ୍ଦିର କାର୍ଯ୍ୟ ସୁରୁଖୁରୁରେ ନହେଲେ ମଧ୍ୟ ଧୀର ମନ୍ଥର ଗତିରେ ସମସ୍ତ ପ୍ରକାର ବାଧା-ବିଘ୍ନକୁ ପଛରେ ପକାଇ ଆଗେଇ ଚାଲିଲା ।

ମନ୍ଦିର ମିସ୍ତ୍ରୀ ଗଗନର ଅବଦାନରେ ଦଧିନଉତି ପର୍ଯ୍ୟନ୍ତ ଉଠିଗଲା । ୨୦୦୮ ମସିହା, ପବିତ୍ର ଶ୍ରୀଗୁଣ୍ଡିଚା ଯାତ୍ରା । ପୁରୀରେ ଠାକୁରେ ରଥରେ ଶୋଭା ପାଉଥିବେ । ନେଉଳା ଗାଁଆରେ ମନ୍ଦିରର ଦଧିନଉତି ପୂର୍ଣ୍ଣହୋଇ ଦେଉଳ ମୁଣ୍ଡି ମରିବ । ସେଦିନ କି ପର୍ବ । ଅପୂର୍ବ ମନୋହର ଦୃଶ୍ୟ । କାନରୁ କାନ କଥା ବ୍ୟାପି ଯାଇଥିଲା । ସକାଳୁ ସକାଳୁ ଲୋକଙ୍କର ଧାଡ଼ି ଛୁଟିଲା । ବସ୍ତାବସ୍ତା ଧାନ, ଟଙ୍କା, ସୁନା, ରୂପା, ତମ୍ବା ଓ ଅନ୍ୟାନ ଧାତୁ ହାତରେ ଧରି ସବର୍ଣ୍ଣରୁ ଅସବର୍ଣ୍ଣ ପର୍ଯ୍ୟନ୍ତ ସମସ୍ତେ ଛୁଟିଛନ୍ତି ମନ୍ଦିର ନିକଟକୁ । ଦଧିନଉତି ପୂର୍ଣ୍ଣ ହେବ ।

ଆଶ୍ଚର୍ଯ୍ୟ, ଯେତେ ଢାଳିଲେ ମଧ୍ୟ ଅସମ୍ପୂର୍ଣ୍ଣ । ବୁଦ୍ଧି ହଜିଗଲା । କଣ ଆଉ କରାଯାଇ ପାରିବ । ସବୁ ପ୍ରାୟ ଢଳାହୋଇ ସାରିଲାଣି । ଶେଷ ସମ୍ବଳ ମଉଁଆଙ୍କର ବଡ଼ ବଡ଼ ସାତବସ୍ତା ଚମ୍ପାଧାନ । ଅଣ୍ଟ ନିଅଣ୍ଟ ନିମନ୍ତେ ଶେଷରେ ଢଳାହେବା ପାଇଁ ରଖାଯାଇଥିଲା । ଆଶ୍ଚର୍ଯ୍ୟ ସେଗୁଡ଼ିକ ଢାଳିଦେଲା ପରେ ସମସ୍ତଙ୍କୁ ଆଶ୍ୱସ୍ତ କରି ଦଧିନଉତି ପୂର୍ଣ୍ଣ ହୋଇଗଲା । ଶଙ୍ଖ, ଘଣ୍ଟ, ହରିବୋଲ, ହୁଳହୁଳି ଧ୍ୱନିରେ ଚତୁର୍ଦ୍ଦିଗ

କମ୍ପି ଉଠିଲା । ସତେକି କାଳିଆର ଆଗମନୀ ସାହାନାଇ । ପରିତୃପ୍ତ ଆନନ୍ଦରେ ପ୍ରତ୍ୟେକଙ୍କ ମୁଖମଣ୍ଡଳ ଝଲମଲ ।

× × × × × ×

ଭାବନା ରାଜ୍ୟରୁ ଫେରି ଆସିଲି । ମନ୍ଦିରର ଦଧିନଉତି ଦେଖାଗଲାଣି । ଏଇମାତ୍ର ପହଞ୍ଚିବାର ଆବେଗରେ ଛାତି ଧକଧକ ହେଉଥାଏ କେଉଁ ଏକ ଅନିର୍ବଚନୀୟ ଆନନ୍ଦରେ । ଚାହୁଁ ଚାହୁଁ ରାସ୍ତାର ମୋଡ଼ ଭାଙ୍ଗି ଗାଁଆ ଭିତରକୁ ଗଡ଼ି ଚାଲିଲା ଗାଡ଼ି । ଡ୍ରାଇଭର ସିଟ୍‌ରେ ଦିଲିପ, ପାଖ ସିଟ୍‌ରେ ବାବୁନି ବସିଥାଏ ଚୁପଚାପ ହୋଇ । ପଛ ସିଟ୍‌ରେ ଠାକୁରଙ୍କ ପାଖରେ ମୁଁ ବସିଥାଏ ଭାବନାର ଅନେକ ଅଡୁଆ ଖିଅ ଧରି ।

କି ଆଶ୍ଚର୍ଯ୍ୟ, ନିଜ ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ପଡ଼ିଆ ଲୋକାରଣ୍ୟ । ସମସ୍ତେ ଠାକୁରଙ୍କ ଆଗମନରେ ଉତ୍‌ଫୁଲ୍ଲିତ, ସମ୍ମୋହିତ ଚକାଆଖିର ମାୟାରେ । ୧୯୫୫ ମସିହା ପରେ ବହୁ ପ୍ରତୀକ୍ଷିତ ନୂତନ ମନ୍ଦିରରେ ଅବସ୍ଥାପିତ ହେବେ ଭାଗବତ ଗୋସାଇଁଙ୍କର ନୂଆ କଳେବର । ଅନେକ ପ୍ରତୀକ୍ଷାର ଅନ୍ତ ହୋଇଛି ଓ ସେହି ଭାବନାରେ ସମସ୍ତେ ଯେପରି ଚୁମ୍ବକପରି ଆକର୍ଷିତ ହୋଇ ପଡ଼ିଆରେ ସମବେତ । କାଳିଆ ଆଗମନର ଉନ୍ମାଦନାରେ ସମସ୍ତେ ଯେପରି ପାଗଳ । ଏହି ଅବିସ୍ମରଣୀୟ ମୁହୂର୍ତ୍ତ ମୋତେ କ୍ଷଣକ ପାଇଁ ଆନନ୍ଦରେ ଚେତନାଶୂନ୍ୟ କରିଦେଲା ।

ଜନସମୁଦ୍ର ଦେଖି ଆଶ୍ଚର୍ଯ୍ୟ ହେଲି । ଏତେ ଲୋକ ଆମ ଗାଁଆରେ । ଦୀପ, ଧୂପ, ଚନ୍ଦନ, ଫୁଲ ଥାଳିରେ ସଜାହୋଇ ରହିଛି କାଳିଆର ଅଭ୍ୟର୍ଥନା ପାଇଁ । ବାହୁଡ଼ାବିଜୟର ଶୁଭାରମ୍ଭ । କେତେଦିନ ପରେ କାଳିଆ ନବକଳେବର ଧାରଣ କରି ତା' ନୂଆ ମନ୍ଦିରରେ ରହିବ । ଝୁଲିଝୁଲି ଆସିବ କି ହଲିହଲି ଆସିବ । କେତେ ଲୋକଙ୍କର ଉତ୍କଣ୍ଠା । ଡାଙ୍ଗି ବାଜାବାଲା ଠିକ୍‌କରି ରଖିଥାଏ । ଶଙ୍ଖ, ଘଣ୍ଟ, ଢୋଲ, ମହୁରୀ ସବୁ ତା' ଅପେକ୍ଷାରେ । ଅପେକ୍ଷାରେ ନେଉଳା ଗାଁଆର ଅଗଣିତ ଭକ୍ତ ଆବାଳବୃଦ୍ଧବନିତା । ସମସ୍ତେ ତର ତର । ସ୍ନାନସାରି ରଙ୍ଗ ବେରଙ୍ଗ ବସ୍ତ୍ର ପରିଧାନ କରି, ବନ୍ଦାଣ ଥାଳି ହାତରେ ଧରି ଅଗଣିତ ପଲ୍ଲୀବଧୂ ଅପେକ୍ଷାରତା ଶ୍ୟାମସୁନ୍ଦରଙ୍କ ଫେରିବା ବାଟକୁ ଚାହିଁ । ସତେକି ଗୋପର ଗୋପାଙ୍ଗନା । କାହ୍ନୁର ଆଗମନକୁ ଗଭୀର ଉତ୍କଣ୍ଠାରେ ଚାହିଁ ରହିଛନ୍ତି । କାହ୍ନୁ ଆସିବ, ଆସିବ ନେଉଳା ଗାଁଆର କୋଳ ଉଜ୍ଜ୍ୱଳ କରି ସମଗ୍ର ଗ୍ରାମର ସୌଭାଗ୍ୟର ପ୍ରତୀକ ହୋଇ । ଶୁଭ କାଉ ଉଡ଼ି ଉଡ଼ି ଖବର ଦେଉଥାଏ । ବ୍ୟସ୍ତ ହୁଅନା, ଧୈର୍ଯ୍ୟଧର, ନାଟୁଆ ନଟବର ଆସୁଛି, ନେଉଳା ଭାଗ୍ୟ ଆକାଶରେ ଉଦିଆଚାନ୍ଦ ହୋଇ । ସୂର୍ଯ୍ୟକିରଣରେ ଅନ୍ଧକାର ଅପସରି ଗଲାପରି

ଲୋକଙ୍କ ମନରୁ ଈର୍ଷା-ବିଦ୍ୱେଷର କାଳିମା ପୋଛିଦେବାକୁ କାଳିଆ ଆସୁଛି । ଭାତୃତ୍ୱର ବନ୍ଧନରେ ସାରା ଗାଁଆଟାକୁ ବାନ୍ଧି ଦେବାପାଇଁ କାଳିଆର ଏ ବାହୁଡ଼ା ବିଜେ ।

ଗଗନ ପବନ ପ୍ରକମ୍ପିତ କରି ବାଜିଉଠିଲା ଢୋଲ, ମହୁରୀ । ଶଙ୍ଖ, ଘଣ୍ଟ ସହ ହରିବୋଲ, ହୁଳହୁଳି ଓ ଜୟ ଜଗନ୍ନାଥ ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ । ଜଳି ଉଠିଲା ଦିହୁଡ଼ି ଭଳି ଅଗଣିତ ଦୀପ । ଝୁଣା, ଅଗୁରୁ, ଚନ୍ଦନ ଓ ଧୂପ ବାସ୍ନାରେ ପବନ ସୁରଭିତ । ବନ୍ଦାଣ ଥାଳି ହାତରେ ଧରି ଚତୁର୍ଦ୍ଦିଗରୁ ଘେରିଗଲେ ଅବଗୁଣ୍ଠନବତୀ ଗ୍ରାମବଧୂ । ଓଢ଼ଣା ଫାଙ୍କରେ, ଦୀପ ଆଲୁଅରେ ଉଜ୍ଜଳି ଉଠୁଥିଲା ସେମାନଙ୍କର ଶାନ୍ତ, ସରଳ, ପରିତୃପ୍ତ ମୁଖରାଜି । ଆଖି ଲୁହରେ ଭିଜି ଯାଉଥିଲା ଚିବୁକ । ଦୀର୍ଘଦିନର ପ୍ରତୀକ୍ଷା ପରେ ସତେକି ଗୋପାଙ୍ଗନାମାନଙ୍କୁ ଦର୍ଶନ ଦେବାଲାଗି କଳାକାହ୍ନୁ ବିରାଜମାନ । ଜୟ ଜଗନ୍ନାଥ ଓ ହରିବୋଲି ଧ୍ୱନିରେ ଚତୁର୍ଦ୍ଦିଗ ନିନାଦିତ । କାଳିଆକୁ ଦେଖିବା ଲାଗି ଠେଲାପେଲା, ଧରାପରା ।

ଆଖି ଲୁହରେ ସବୁ ଝାପ୍‌ସା ଦେଖା ଯାଉଥିଲା । ଛାତି ଭିତରେ ଅଜଣା କମ୍ପନ । ବାଜା, ହରିବୋଲ, ହୁଳହୁଳି ଶବ୍ଦ ଉଚ୍ଛୁଳି ଉଠୁଥିଲା ନେଉଳା ଗାଁଆରେ ବୁକୁ ଥରାଇ । ମନେପଡ଼ି ଯାଉଥିଲା ପ୍ରଭୁଙ୍କର ନୀଳାଦ୍ରିବିଜୟ । ଯବନମାନଙ୍କର ତୋପ, କମାଣର ଆକ୍ରମଣକୁ ଭ୍ରୂକ୍ଷେପ ନ କରି ହଜାର ହଜାର ଭକ୍ତ ଗଜପତିଙ୍କ ଗହଣରେ ମୃତ୍ୟୁକୁ ଉପେକ୍ଷାକରି ଜୟ ଜଗନ୍ନାଥ ଧ୍ୱନିସହ ଆଗକୁ ଆଗକୁ ମାଡ଼ି ଚାଲିଥିଲେ ପ୍ରଭୁଙ୍କୁ ନୀଳାଦ୍ରିବିଜୟ କରାଇବା ନିମନ୍ତେ । ଆଜି ମଧ୍ୟ କିଛି ବ୍ୟକ୍ତିଙ୍କର ଅସହଯୋଗ ତଥା ଅସୂୟାଭାବକୁ ଉପେକ୍ଷାକରି ସମଗ୍ର ନେଉଳାବାସୀ ମାଡ଼ି ଚାଲିଛନ୍ତି ପ୍ରଭୁଙ୍କୁ ମନ୍ଦିର ବିଜେ କରାଇବା ଲାଗି ।

ମନେହେଲା, ସତେ କ'ଣ କିଛି ସମୟ ପାଇଁ ନୀଳାଚଳ ତ୍ୟାଗକରି ପ୍ରଭୁ ଚାଲିଆସିଛନ୍ତି ଲୋକଙ୍କ ମନରେ ଉତ୍ସାହ, ଉଦ୍ଦୀପନା ଭରି । ଅପୂର୍ବ ଅବିସ୍ମରଣୀୟ ସେ ଦୃଶ୍ୟ । ଏହି ଅବର୍ଣ୍ଣନୀୟ ଦୃଶ୍ୟ ଅବଲୋକନକରି ଅଶ୍ରୁର ବନ୍ୟାରେ ଚକ୍ଷୁ ପ୍ଲାବିତ ହୋଇଗଲା । ହେ ଲୀଳାମୟ ! ତମ ଲୀଳା ଅଗୋଚର । ଏହି ନେଉଳା ଗାଁଆ ଉପରେ ତମର କୃପାଦୃଷ୍ଟି ଚିରକାଳ ପାଇଁ ରହୁ ପ୍ରଭୁ । ସମସ୍ତଙ୍କ ହୃଦୟ ନିର୍ମଳ କର । ଦୟା ଓ କରୁଣାର ବାରୀରେ ଭିଜାଇଦିଅ ସେମାନଙ୍କ ମନ ଓ ଚେତନା । ସବୁ କଳୁଷତା ଅପହରଣ କରି ଭରିଦିଅ ସ୍ନେହ, ମମତାର ଅପୂର୍ବ ଶିହରଣ । ଏତିକି ମିନତି ପ୍ରଭୁ । ମୋ ଗାଁଆ ପରିପ୍ଲାବିତ ହେଉ ତମ ଆଶୀଷର ଉଚ୍ଛୁଳା ବନ୍ୟାରେ । ମୋ ଗାଁଆର ପ୍ରତ୍ୟେକ ବ୍ୟକ୍ତି ମୁହଁରେ ଖେଳାଇଦିଅ ହସର ଅଫୁରନ୍ତ ଲହରୀ ।

ମନରେ ଭରିଦିଅ ଅମାପ ଶାନ୍ତି । ପ୍ରଭୁଙ୍କ ବିଜୟଯାତ୍ରାକୁ ତନ୍ମୟହୋଇ ଉପଭୋଗ କରୁକରୁ ହାତ ଯୋଡ଼ିଲି ମୋ କାଳିଆକାହ୍ନୁ ଉଦ୍ଦେଶ୍ୟରେ ।

ବନ୍ଦାପନା ସରିଗଲା । ଏତେ ଲୋକଙ୍କର ଗହଳ ଚହଳ ଓ ଆତିଥେୟତାରେ ଥକି ପଡ଼ିଥିଲେ ଭାଇଭଉଣୀ ତିନିଜଣ । ଜଣକ ପରେ ଜଣେ ଯାଇ ମଇଁଆ ଘରେ ରାତ୍ରି ଯାପନ କଲେ । ଠାକୁରଙ୍କୁ ବିଶ୍ରାମଦେଇ ସମସ୍ତେ ବାହୁଡ଼ିଗଲେ । ପରଦିନ ୨୦୦୯ ଅକ୍ଷୟତୃତୀୟା । ବିଲକୁ ଅକ୍ଷିମୁଠି ଯିବ ଓ କାଳିଆ ତା' ସିଂହାସନରେ ବିଜେ ହେବ । କୁମ୍ଭାଟୁଆ ଡାକ ଦେଲା - ରାତି ପାହିଲା । ନାନା ଜାତିର ପକ୍ଷୀଙ୍କ କାକଳୀରେ କାଳିଆର ପ୍ରଭାତ ବନ୍ଦନା । ପାହାନ୍ତାରୁ ଫୁଲ ତୋଳାହୋଇ ମାଳଗୁନ୍ଥା ହୋଇଗଲା । ସମସ୍ତଙ୍କ ମନରେ ଆଜି ଅପୂର୍ବ ଆନନ୍ଦ । ମନ୍ଦିର ପ୍ରାଙ୍ଗଣ ଲୋକାରଣ୍ୟ । ଆରମ୍ଭ ହେଲା କଳସ ଶୋଭାଯାତ୍ରା । ନଦୀରୁ କଳସୀରେ ଜଳ ଆଣି ଘଟ ସ୍ଥାପନା ହେଲେ ହୋମ କାର୍ଯ୍ୟ ଆରମ୍ଭ ହେବ । ମନୋରମ ସକାଳର ଶାନ୍ତ ପରିବେଶକୁ ଭିଜାଇ ମହୁରୀ ସ୍ୱର ଖେଳିଗଲା ଚତୁର୍ଦ୍ଦିଗରେ । ବାଜି ଉଠିଲା ଢୋଲ । ଚମକି ଉଠିଲା ସକାଳ । କୋଇଲି, କୁମ୍ଭାଟୁଆଙ୍କର ମଧୁର ତାନ ମିଶି ଏକାକାର ହୋଇ ଯାଉଥିଲା କଳସ ଯାତ୍ରାର ଶୁଭ ସାହାନାଇରେ । ଯଥା ଉପଚାରରେ ଜଳ ଢଳାହେଲା । ମନ୍ଦିର ସଜା ହୋଇଥାଏ କଦଳୀ ଗଛ ଓ ଦେବଦାରୁ ପତ୍ର ସହ ଫୁଲର ତୋରଣରେ । ସିଂହାସନ ଅପେକ୍ଷାରତ ତିନି ଠାକୁରଙ୍କ ପାଇଁ । ଗର୍ଭଗୃହ ଚିତ୍ରିତ ହୋଇଛି ବିଭିନ୍ନ ବର୍ଣ୍ଣରେ, ସାମ୍ନାରେ ଯୋଡ଼ ହସ୍ତରେ, ବିନମ୍ର ମୁଦ୍ରାରେ ପ୍ରଭୁଙ୍କ ବାହାନ ଗରୁଡ଼ ଅପେକ୍ଷମାଣ । ଉତ୍ସୁକ ନୟନରେ ଅନାଇଁ ରହିଛନ୍ତି ପ୍ରଭୁଙ୍କ ଆଗମନକୁ । ଦ୍ୱାରବନ୍ଧର ଉପରିଭାଗରେ ବିରାଜମାନ ନବଗ୍ରହ । ମନ୍ଦିର ଗାତ୍ରରେ ଚତୁଃପାର୍ଶ୍ୱରେ ପାର୍ଶ୍ୱଦେବତା ପବନପୁତ୍ର ହନୁମାନ, ଶ୍ରୀଗଣେଶ, ଦେବଦେବ ମହାଦେବ, ରାଧାକୃଷ୍ଣ, ସୀତାରାମ ଓ ଦେବୀ ସରସ୍ୱତୀ । ପୂଜାଅର୍ଚ୍ଚନା, ହୋମ ଓ ମନ୍ତ୍ରପାଠରେ ଜୀବନ୍ୟାସ କରାଯିବ ପ୍ରଭୁଙ୍କ ସହ ସବୁ ଦେବୀ-ଦେବତାମାନଙ୍କୁ । ମନ୍ଦିରର ବାହ୍ୟଭାଗର କାରୁକାର୍ଯ୍ୟ ତଥାପି ଅସମ୍ପୂର୍ଣ୍ଣ । ପ୍ରଥମେ ଠାକୁରେ ତାଙ୍କ ଉଆସରେ ରହିଗଲେ ଧୀରେ ଧୀରେ  କିଛି କିଛି ଅର୍ଥ ଏକତ୍ରକରି ମନ୍ଦିର କାର୍ଯ୍ୟ ସମାପନ କରିବାକୁ ହେବ ।

ଜୀବନର ସ୍ଥାୟୀତ୍ୱ କେତେ ଈଶ୍ୱର ଜାଣନ୍ତି । ଏତେ ସ୍ୱପ୍ନକୁ ରାତି କାହିଁ ? ମନ ମଧ୍ୟରେ ତ ଅନେକ ସ୍ୱପ୍ନ, ଅନେକ ଦ୍ୱନ୍ଦ୍ୱ, ଅନେକ ସମସ୍ୟା । ଗୋଟିଏ ପରେ ଗୋଟିଏର ସମାଧାନ ଆଶାନେଇ ଆଗେଇ ଚାଲିବାକୁ ହେବ ।

ମନ୍ଦିର ପ୍ରତିଷ୍ଠାର ପୁରୋଧା ରାଖାଲ ଭାଇ ଓ ଈନ୍ଦ ନୂଆବୋଉ । ଜଳ ସିଞ୍ଚି ସିଞ୍ଚି ମନ୍ଦିର ବେଢ଼ା ସାତଥର ପ୍ରଦକ୍ଷିଣ କଲେ । ବ୍ରାହ୍ମଣମାନଙ୍କର ମନ୍ତ୍ରପାଠ ପରିବେଶକୁ

ଅମୃତମୟ କରିଦେଉଥାଏ । ବୀଣା ମନ୍ଦିର ବେଢ଼ାରେ ଭାଗବତ ପାରାୟଣର ଆୟୋଜନ କରିଥାଏ । ମନ୍ତ୍ରୋଚ୍ଚାରଣ ସହ ଭାଗବତର ସ୍ୱରଲହରୀ ମିଶି ସମଗ୍ର ବାତାବରଣକୁ ପବିତ୍ର ଓ ସ୍ନିଗ୍ଧ କରୁଥାଏ । ଶ୍ରବଣ ମାତ୍ରକେ ହୃଦୟରେ ଅପୂର୍ବ ଶିହରଣ ଜାଗି ଉଠୁଥାଏ ।

ବିଗ୍ରହ ପ୍ରତିଷ୍ଠାରେ ମୁଖ୍ୟ ଭୂମିକା ମୋର ଓ ନିନିର । ଯଜ୍ଞବେଦୀ ସାମ୍ନାରେ ନବବସ୍ତ୍ର ପରିହିତ, ମୁକୁଟ ମଣ୍ଡିତ ଓ ଫୁଲମାଳରେ ସଜ୍ଜିତ ହୋଇ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥ ବିରାଜମାନ । ଠାକୁରଙ୍କ ସାମ୍ନାରେ ଆମେ ଅକିଞ୍ଚନ । ବ୍ରାହ୍ମଣମାନେ ମନ୍ତ୍ର ପଢ଼ି ପ୍ରଭୁମାନଙ୍କୁ ଉପବୀତ ଧାରଣ କରାଇଲେ । ମନ୍ତ୍ରଧ୍ୱନୀରେ ଗଗନ ପବନ ମୁଖରିତ । ହୋମାଗ୍ନିରେ ଉଜ୍ଜଳି ଉଠୁଥାଏ ଠାକୁରମାନଙ୍କର ଉଜ୍ଜ୍ୱଳ ମୁଖଶ୍ରୀ । ହୋମରେ ଆହୂତି ଦେଲୁ । ମନ ମଧ୍ୟରୁ ସମସ୍ତ ଆଶଙ୍କା ଦୂରୀଭୂତ ହୋଇ ଅପୂର୍ବ ଶାନ୍ତିରେ ହୃଦୟ ଭରି ଉଠୁଥାଏ । ସ୍ଥିର ମନ, ସ୍ଥିର ଚିତ୍ତ, ପବିତ୍ର ବାତାବରଣ । ଆଖି ଲୁହ ବାଧା ମାନୁନଥାଏ । ଆପେ ଆପେ ଝରି ଆସୁଥାଏ ଆଖି ଫଟାଇ । ସମସ୍ତଙ୍କ ଅଗୋଚରରେ ଅତି ସନ୍ତର୍ପଣରେ ପୋଛିନେଲି ଲୁହ । କଣେଇଁ ଚାହିଁଲି, ନିନିର ଅବସ୍ଥା ମଧ୍ୟ ତଦନୁରୂପ । ସେ କିନ୍ତୁ ଏତେ ଭାବମଗ୍ନ ଥିଲା ଯେ ସମସ୍ତଙ୍କ ସାମ୍ନାରେ ଝରିପଡୁଥିବା ଲୁହପ୍ରତି ସଚେତନ ନ ଥିଲା ।

ମନରେ ଆସିଲା, ସତେ କ'ଣ ତୁ ଆସିଲୁ କାଳିଆ । ପରତେ ହେଉନି । ସ୍ୱପ୍ନ ନା ସତ୍ୟ । ଯଦି ଆସିଲୁ, ଏତେ ଡେରି କାହିଁକି କଲୁରେ । ତୋ ବାଟକୁ ଚାହିଁଚାହିଁ ମୋ ବୋଉ କେତେ ଆଖିଲୁହ ନ ଗଡ଼ାଇଛି । ପ୍ରତିଦିନ ତୋ ଆସିବା ବାଟକୁ ସଡ଼କ ପର୍ଯ୍ୟନ୍ତ ଓଳାଇ ସଫା କରିଛି । ତୁ ଶବରୀ ଘରେ କୁଣିଆଁ ହୋଇଥିଲୁ । କେତେ ଆଗ୍ରହରେ ଶବରୀ ବଣରୁ କୋଳି ସଂଗ୍ରହ କରି ଚାଖି ଚାଖି ଖଟାକୋଳିତକ ଆଡ଼େଇଦେଇ ବାଛି ବାଛି ମିଠାକୋଳି ତୋ ପାଇଁ ସାଇତି ଥିଲା । ମୋ ବୋଉ ବି ତୋ ପାଇଁ ଖଇ-ଉଖୁଡ଼ା, କ୍ଷୀରି-ଖେଚୁଡ଼ି ସଜାଡୁଥିଲା । ତୋ ଆଳତୀ ପାଇଁ ଦିନରାତି ବତୀ ତିଆରି କରୁଥିଲା । ନଷ୍ଟ ହୋଇଯିବ ବୋଲି ତୋ ପାଇଁ ଏତେ ବର୍ଷ ଧରି ଖଇ-ଉଖୁଡ଼ା ସାଇତି ରଖିପାରିଲାନି ସିନା କିନ୍ତୁ ଆଗାମୀ ଅନେକ ବର୍ଷ ପାଇଁ ବତୀ ସାଇତି ରଖିଦେଇ ଯାଇଥିଲା । ଆଖିପାଣି ଆଖିରେ ମାରି ତୋ ଫେରିବା ବାଟକୁ ଅନାଇଁ ଅନାଇଁ ବୋଉ ମୋର ଆଖି ବୁଜିଲା ।

ତୋର ପୂଜକ ବେଣୁଆଦାଦା ମଧ୍ୟ ଏ ଦୁନିଆଁ ଛାଡ଼ି ସାରିଲାଣି । ମନରେ ମୋର ଅନେକ ଆଶା ଥିଲା, ଠାକୁର ପ୍ରତିଷ୍ଠାରେ ବେଣୁଆଁଦାଦାର ମୁଖ୍ୟ ଭୂମିକା

ରହିବ । ଅନ୍ତତଃ ଥରଟିଏ ମାତ୍ର ବେଣୁଆଁଦାଦା ତା'ର ହୃଦୟସ୍ପର୍ଶୀ ଆଳତିରେ ମନପ୍ରାଣ ଶୀତଳ କରିବ । ଅନେକ ଅଭିମାନର ବୋଝନେଇ ବେଣୁଆଁଦାଦା ଚାଲିଗଲା । ଅସହାୟ ହୋଇ ଚାହିଁ ରହିଲି କେବଳ । ତା' ପାଇଁ କିଛି କରିପାରିଲି ନାହିଁ । ମନ ମଧ୍ୟରେ ଆଜି ମଧ୍ୟ କେଉଁଠି ନା କେଉଁଠି ବେଣୁଆଁଦାଦା ପାଇଁ ବହୁ ଯତ୍ନରେ ସାଇତା ଭକ୍ତି, ଶ୍ରଦ୍ଧା ତଥା ଭାବପ୍ରବଣତା ସମୟ ସମୟରେ ଉଙ୍କିମାରେ । ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଗଲେ କିଏ ବା ଜାଣିବ ? ଏମିତି ଅପ୍ରକାଶିତ ଅନେକ ସ୍ମୃତିରେ ମୁଁ ଘାରିହୁଏ ।

ହୋମ ଶେଷ ହେଲା । ଏବେ ତୋର ସିଂହାସନ ଆରୋହଣ ପାଳି । ମନ୍ଦିର ମିସ୍ତ୍ରି ଗଗନ ନବବସ୍ତ୍ର ପରିଧାନକରି ମନ୍ଦିର ଉପରେ ନୀଳଚକ୍ର ସ୍ଥାପନ କଲା । ମୁନାର ସହାୟତାରେ ବାନା ବାନ୍ଧିଲା ।

ମନ୍ଦିରର ମୂଳଦୁଆ ପକାଇଥିଲା ନୋଳି । ନିମ୍ନଭାଗ ନିର୍ମାଣ କଲେ ନକୁଳା ଓ ଜଗା । ପ୍ରକୃତରେ ଯେ ମନ୍ଦିର ନିର୍ମାତା ସେ ହେଉଛି ଗଗନ ଓ ତୋ ମନ୍ଦିରର ପାର୍ଶ୍ୱଦେବତା କଳାକାର ଅକ୍ଷୟର କୃତି । ଏହି ଶିଳ୍ପୀଦ୍ୱୟ ଆମ ନିକଟରେ ବିଶ୍ୱ ମହାରଣା ଠାରୁ କୌଣସି ଗୁଣରେ କମ୍ ନୁହନ୍ତି । ସେମାନଙ୍କ ନିକଟରେ ବଣଗୋବିନ୍ଦ ପରିବାର ଯେତେ କୃତଜ୍ଞତା ଜ୍ଞାପନ କଲେ ମଧ୍ୟ କମ୍ ହେବ ।

ତୋ ମନ୍ଦିର ସାମ୍ନାରେ ବୃନ୍ଦାବତୀ । ଅକ୍ଷୟ ହସ୍ତର କାରିଗରୀର ପ୍ରତୀକ । ଚଉରାରେ ଝଙ୍କାଳିଆ ତୁଳସୀଗଛ । ତୁ ପ୍ରତିଦିନ ତୁଳସୀ ସେବନ କରିବୁ ବୋଲି ମନ୍ଦିର ପ୍ରାଙ୍ଗଣରେ ତୁଳସୀର ବଣ । ନୀଳଚକ୍ରରେ ଉଡୁଛି ବାନା । ଲାଲ୍‌ରଙ୍ଗର ପତାକାଟି ପବନରେ ହଲି ଦୋହଲି ତୋର ସ୍ୱାଗତ କରୁଛି । ସ୍ୱାଗତ କରୁଛନ୍ତି ଗରୁଡ଼, ନବଗ୍ରହ, ମନ୍ଦିର ଗାତ୍ରରେ ଅପେକ୍ଷାରତ ଦେବ-ଦେବୀ ଏବଂ ସମଗ୍ର ନେଉଳାବାସୀଙ୍କ ସହ ଅଗଣିତ ନର-ନାରୀ ତଥା ବଣଗୋବିନ୍ଦ ପରିବାର ଓ ତାଙ୍କର ବନ୍ଧୁ ପରିଜନ । ସମସ୍ତେ ତୋ ଅପେକ୍ଷାରେ । ଉଦ୍‌ଗ୍ରୀବ ନୟନରେ, ଏକ ଲୟରେ ଚାହିଁ ରହିଛନ୍ତି ସିଂହାସନରେ ବିଜେକର ପ୍ରଭୁ । ପ୍ରଥମେ ସୁଦର୍ଶନଙ୍କୁ ତାଙ୍କ ଆସ୍ଥାନରେ ଅବସ୍ଥାପିତ କରାଗଲା । ତାହାପରେ ପ୍ରଭୁ ବଳଦେବଙ୍କୁ ପହଣ୍ଡି କରାଇ ସିଂହାସନରେ ବିଜେ କରାଇଲେ ବ୍ରାହ୍ମଣମାନେ । ତତ୍ପରେ ଦେବୀ ସୁଭଦ୍ରା । ତା'ପରେ ତୋ ପାଳି । ବ୍ରାହ୍ମଣମାନଙ୍କ ସହାୟତାରେ ହଲି ଦୋହଲି ଆଗେଇ ଚାଲିଲୁ ତୋ ସିଂହାସନକୁ । ବାଜି ଉଠିଲା ଢୋଲ, ମହୁରୀ, ଘଣ୍ଟ, କାହାଳୀ । ଜୟ ଜଗନ୍ନାଥ, ହରିବୋଲ, ହୁଳହୁଳି ନାଦରେ ଥରି ଉଠିଲା ଗଗନ ପବନ । ଉଚ୍ଛୁଳି ଉଠୁଥିବା ଧ୍ୱନୀ ପ୍ରତିଧ୍ୱନିତ ହେଲା



ଭାଗବତ ଗୋସେଇଁ ମନ୍ଦିର, ନେଉଳା, ବରୀ

ପାଖ ଗାଁଆଗୁଡ଼ିକରେ । ଥରି ଉଠିଲା ସମଗ୍ର ବାତାବରଣ । ସମସ୍ତଙ୍କର ଉତ୍କଣ୍ଠାର ଅବସାନ ଘଟାଇ ଶେଷରେ ତୁ ସିଂହାସନ ଆରୋହଣ କଲୁ ।

ତତେ ଚାହିଁଲୁ ଯୋଡ଼ ହସ୍ତରେ । ତୋ ବେଦୀତଳେ ଆମେ ଅକିଞ୍ଚନ, କେବଳ ଅସହାୟ ହୋଇ ଲୁହଭରା ଆଖିରେ ତତେ ଚାହିଁ ରହିଥିଲୁ । ତୋ ଚକା ଆଖିରେ ଲୀନ ହୋଇଯିବାକୁ ଚାହୁଁଥିଲୁ । ପରତେ ହେଉନି । ଆଖିକୁ ବିଶ୍ୱାସ କରିପାରୁନାହୁଁ । ସତେ କ'ଣ ତୁ ଆସିଛୁ କାଳିଆ । ଏତେଦିନ ପରେ ଏ ଗାଁଆରେ ତୋ ପାଦ ପଡ଼ିଛି । ପ୍ରକୃତରେ ତୁ ଆସିଛୁ ଆମ ପରିବାର ତଥା ଗ୍ରାମବାସୀଙ୍କର ଦୁଃଖ ହରଣ ପାଇଁ । ପାପର ଭାରା ଅଧିକ ହୋଇଗଲେ ତୁ ଓହ୍ଲାଇ ଆସୁ ସଶରୀରେ-

ପରିତ୍ରାଣାୟ ସାଧୁନାଂ ବିନାଶାୟଃ ଚ ଦୁଷ୍କୃତାମ୍,
ଧର୍ମ ସଂସ୍ଥାପନାର୍ଥାୟଃ ସମ୍ଭବାମି ଯୁଗେ ଯୁଗେ ।

ଏ ଗାଁଆକୁ ତୋର ବାହୁଚ୍ଛାୟା ତଳେ ଘଣ୍ଟ ଘୋଡ଼ାଇ ରଖ ପ୍ରଭୁ, ସମସ୍ତଙ୍କୁ ସଦ୍‌ବୁଦ୍ଧି ଦେ, ସତ୍ କର୍ମ, ସତ୍ ଚିନ୍ତା ସବୁରି ମନରେ ଭରିଦେ । ତୋ ନିକଟରେ କେବଳ ଏତିକି ମାଗୁଣି-

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖି ଏହା କେହୁ ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ, ମହାବାହୁ
ଜଗତ ଉଦ୍ଧାର ହେଉ ।

ଆଜିକାଲି ଭାଗବତ ଗୋସାଇଁଙ୍କ ମନ୍ଦିରରେ ପୂର୍ବପରି ପୂଜା ଅର୍ଚ୍ଚନା ହେଉଛି । ପ୍ରତ୍ୟେକ ପୂଜା, ବ୍ରତରେ ସମସ୍ତ ଗ୍ରାମବାସୀଙ୍କର ମିଳିତ ଯୋଗଦାନରେ ମନ୍ଦିର ପ୍ରାଙ୍ଗଣ ମୁଖରିତ ହୋଇଉଠୁଛି । ପ୍ରତି ସନ୍ଧ୍ୟାରେ ଝିଅବୋହୂମାନେ ମନ୍ଦିରରେ ଦୀପଜାଳି ପରିବାରର ମଙ୍ଗଳ ମନାସୁଛନ୍ତି । ଭାଗବତ ପାଠ ସହିତ ନାମସଂକୀର୍ତ୍ତନ ହେଉଛି । ଈର୍ଷା, ଅସୂୟାଭାବ ଅନେକ ପରିମାଣରେ ଦୂରେଇଯାଇ ପୂର୍ବବତ୍ ଫେରି ଆସିଛି ସ୍ନେହ, ମମତାଭରା ଆପଣାର ଭାବ । ସୁଖ, ସମୃଦ୍ଧିରେ ଭରିଉଠିଛି ଗାଁ । ଓଁ ଶ୍ରୀ ବାସୁଦେବାୟ, ଶ୍ରୀ ଜଗନ୍ନାଥାୟ ନମଃ ।



# ଶ୍ରୀଜଗନ୍ନାଥ : ଶୂନ୍ୟ ପୁରୁଷ

ଆମ ଘରର ଇଷ୍ଟଦେବତାଙ୍କର ନାମ 'ଭାଗବତ ଗୋସାଇଁ' । ତିନୋଟି ତାଳପତ୍ର ପୋଥି ଗଦାକୁ ଆଉଜି ବସିଛନ୍ତି; ଡାହାଣକୁ ବଡ଼ଭାଇ ବଡ଼ଠାକୁର ଶ୍ରୀବଳଭଦ୍ର, ମଝିରେ ଭଉଣୀ ଠାକୁରାଣୀ ସୁଭଦ୍ରା ଓ ବାମପାର୍ଶ୍ୱରେ ସାନଭାଇ ଶ୍ରୀଜଗନ୍ନାଥ । ଭାଗବତ ଗ୍ରନ୍ଥ ଯେଉଁ ଗୋସାଇଁଙ୍କ ପାଇଁ ଲିଖିତ ସେ ହେଉଛନ୍ତି ସ୍ୱୟଂ ଶ୍ରୀଜଗନ୍ନାଥ । ତେଣୁ ଏହି ଠାକୁରଙ୍କ ସହିତ ସଂପର୍କ ମୋର ଶୈଶବରୁ; ତଥାପି ମୁଁ ତାଙ୍କୁ ଭଲ ଭାବରେ ଚିହ୍ନି ନ ଥିଲି । ଏବେ ମଧ୍ୟ ଚିହ୍ନି ପାରିନାହିଁ । କେବେ ବି ଚିହ୍ନିପାରିବି ନାହିଁ । କେହି ମଧ୍ୟ ଚିହ୍ନି ପାରିବେ ନାହିଁ । କାହିଁକି ?

ଏହାର ସମାଧାନ ନିମ୍ନଲିଖିତ କେତୋଟି ପାହାଚରେ ଉପଲବ୍ଧ । ଯୁଗ ଯୁଗର ତପ, ଯୋଗ, ଅନ୍ୱେଷଣ, ପର୍ଯ୍ୟବେକ୍ଷଣ, ଚିନ୍ତନ, ଅନୁଶୀଳନ, ଗବେଷଣା, ତଥା ଦର୍ଶନ ମାଧ୍ୟମରେ ପ୍ରାଚୀନ ଭାରତର ଋଷିମାନେ ପାଞ୍ଚ ହଜାର ବର୍ଷ ପୂର୍ବରୁ ସୃଷ୍ଟିର ରହସ୍ୟ ଉନ୍ମୋଚନ କରିଥିଲେ । ଏହାର ଝଙ୍କାର ଏକ ରହସ୍ୟମୟ, ଛନ୍ଦମୟ, କବିତାମୟ ନାସଦୀୟ ସୁକ୍ତ ମାଧ୍ୟମରେ ପ୍ରତିଧ୍ୱନିତ ହୋଇଥିଲା । ଏହି ସୂକ୍ତରେ ନିର୍ଗୁଣ ବ୍ରହ୍ମନ୍ ବା ଶୂନ୍ୟତା ମାଧ୍ୟମରେ ପରମ ସତ୍ୟର ଆଭାସ ଗୁଞ୍ଜରିତ ହୋଇଥିଲା । ସେଥିପାଇଁ ନାସଦୀୟ ସୁକ୍ତକୁ ସୃଷ୍ଟିର କବିତା (Song of the creation) କୁହାଯାଏ ।

ନାସଦୀୟ ସୁକ୍ତ ହେଉଛି ସାତୋଟି ଶ୍ଳୋକର ସମାହାର । ଏହାର ରଚୟିତା ଋଷି ପ୍ରଜାପତି; ଋକ୍‌ବେଦର ୧୦୨୮ ସୁକ୍ତ ମଧ୍ୟରୁ ଏହା ସୃଷ୍ଟିର ମୂଳତତ୍ତ୍ୱ ସଂପର୍କରେ ଏକ ଅସାଧାରଣ ସୂକ୍ତ । ଏହାର ମୂଳ ତତ୍ତ୍ୱଟି ହେଉଛି:

ଶୂନ୍ୟତା ଏକମାତ୍ର ସତ୍ୟ (ତଦ୍ ଏକମ୍)

ଏହା ସମସ୍ତ ଶକ୍ତିର ଉତ୍ସ ଓ ସମସ୍ତ ଭୌତିକ ଜଗତର କାରଣ । ଶୂନ୍ୟତା ଶବ୍ଦ 'ଶ୍ୱି' ଶବ୍ଦରୁ ଉତ୍ପନ୍ନ; ଏହାର ଅର୍ଥ ହେଉଛି 'ବୀଜ' ବା ସୃଜନଶୀଳତା (to swell, to grow) ।

ନାସଦୀୟମ୍ ସୂକ୍ତର ସାରାଂଶ ହେଉଛି : ସେତେବେଳେ ଅସ୍ତିତ୍ୱ ନ ଥିଲା; ନ ଥିଲା ନାସ୍ତିତ୍ୱ; ସତ୍ୟ ନ ଥିଲା; ନ ଥିଲା ଅସତ୍ୟ, ନ ଥିଲା ଅସ୍ମିତା (being); ନ ଥିଲା ନାସ୍ମିତା (Non-being); ଆକାଶ ନ ଥିଲା, ନ ଥିଲା ଜଳ ବା ସ୍ଥଳ, ନ ଥିଲା ଆଧାର ବା ଆଧାରକ, ନ ଥିଲା ଆବାରକ ବା ଆବରଣ, ନ ଥିଲା ବ୍ୟାପ୍ତି, ମୃତ୍ୟୁ ନ ଥିଲା, ନ ଥିଲା ଅମୃତତ୍ୱ ଦିବସ ଓ ରାତ୍ରିର ଜ୍ଞାନ ନ ଥିଲା । ସେହି ମୂଳତତ୍ତ୍ୱ ବା ବୀଜ, ବାୟୁ ନ ଥାଇ ନିଶ୍ୱାସ ପ୍ରଶ୍ୱାସ ନନେଇ ନିଜ ମଧ୍ୟରେ ଜୀବନ୍ତ ଓ ଅତ୍ୟନ୍ତ ଉତ୍ତପ୍ତ ଥିଲା । ସେ ଥିଲା ଏକ ଓ ଅବିଭକ୍ତ । ଏତଦ୍ ବ୍ୟତୀତ କୌଣସି ଭୌତିକ ଜଗତ ନ ଥିଲା ।

ସେତେବେଳେ ଯାହାଥିଲା, ତାହା ଶୂନ୍ୟ, ମହାଶୂନ୍ୟ, ନିରାକାର; ଘନ ଅନ୍ଧକାର ଦ୍ୱାରା ଆଚ୍ଛାଦିତ ଥିଲା; ଅବ୍ୟକ୍ତ କିନ୍ତୁ ଗତିଶୀଳ ଥିଲା ଓ ଏହା ହିଁ ଥିଲା ପ୍ରଳୟ ।

ଏହି ମୂଳସତ୍ୟ ବା ଆଦି ସତ୍ୟ ବା ମହାଶୂନ୍ୟତାର ଜୀବନ୍ତ ବୀଜର ମନ ମଧ୍ୟରେ ଜଗତ ସୃଷ୍ଟି କରିବାର ଇଚ୍ଛା ଜାତ ହେଲା । ତାହାପରେ ସେହି ତତ୍ତ୍ୱରୁ ସୃଜନସାମର୍ଥ୍ୟ ବୀଜ ବିଭିନ୍ନ ମହାଜାଗତିକ ତେଜମୟ ଶକ୍ତିଦ୍ୱାରା ସୃଷ୍ଟି ଆରମ୍ଭ କଲା । ମହାଶୂନ୍ୟତାରୁ ସର୍ଜନ ହେଲା ପୂର୍ଣ୍ଣତା । ବୀଜଭୂତ କର୍ମରୁ ସମ୍ପାଦନକାରୀ ଓ ଭୋଗକାରୀ ଜୀବ ସୃଷ୍ଟି ହେଲେ ଓ ଅନ୍ୟ କେତେକ ଭୋଗ୍ୟ ବସ୍ତୁ ମଧ୍ୟ ସୃଷ୍ଟି ହେଲେ ।

ଏହିପରି ଭାବରେ ମୂଳତତ୍ତ୍ୱ ସମଗ୍ର ଜଗତକୁ ସୃଷ୍ଟିକଲା ଏବଂ ସ୍ୱୟଂ ତନ୍ମଧ୍ୟରେ ପ୍ରବେଶ କରି ଭୋକ୍ତା ରୂପରେ ମାୟାର ଆବରଣ ମଧ୍ୟରେ ନିମଗ୍ନ ରହିଲା ।

ଋକ୍ ବେଦରେ ଥିବା ଷୋହଳଟି ଶ୍ଳୋକ ଯୁକ୍ତ ପୁରୁଷ ସୂକ୍ତ ବୈଦିକ ଋଷି ନାରାୟଣଙ୍କ ଦ୍ୱାରା ରଚିତ । ଏତଦ୍ ବ୍ୟତୀତ ଯଜୁର୍ବେଦ, ଅଥର୍ବ ବେଦ ଓ ସାମ୍ ବେଦରେ ମଧ୍ୟ ପୁରୁଷ ସୂକ୍ତରେ ବିଭିନ୍ନ ଅଭିବ୍ୟକ୍ତି ଲିପିବଦ୍ଧ ।

ଏହାର ସାରାଂଶ ହେଉଛି : ପୁରୁଷ ସହସ୍ର ଶୀର, ସହସ୍ର ଚକ୍ଷୁ ଓ ସହସ୍ର ପାଦଯୁକ୍ତ ଅଟନ୍ତି । ସେ ଏହି ଭୂମିକୁ ସବୁଆଡୁ ସ୍ପର୍ଶ କରି ତା'ଠାରୁ ଦଶ ଆଙ୍ଗୁଳି ଅତିକ୍ରମ କରି ରହିଛନ୍ତି । ସେହି ଆଦି ପୁରୁଷଙ୍କ ଠାରୁ ବିରାଟ ବ୍ରହ୍ମାଣ୍ଡ ଉତ୍ପନ୍ନ; ବିରାଟରୁ ଜୀବାତ୍ମା ରୂପକ ପୁରୁଷ ଉତ୍ପନ୍ନ; ଉତ୍ପନ୍ନ ହେବାମାତ୍ରେ ସେ ନିଜକୁ ଦେବତା ଓ ମନୁଷ୍ୟ ଆଦି ରୂପରେ ବିରାଟ ଠାରୁ ଅଲଗା କରିଦେଲା । ତା'ପରେ ପୃଥିବୀକୁ ଉତ୍ପନ୍ନ କଲା ଏବଂ ଏହାପରେ ଜୀବାତ୍ମା ପାଇଁ ଶରୀର ନିର୍ମାଣ କଲା । ମୋଟ ଉପରେ ପୁରୁଷ ସୂକ୍ତମ୍‌ରେ ଆଦି ପୁରୁଷଙ୍କ ଠାରୁ ଆରମ୍ଭ ହୋଇ କିପରି ଭୌତିକ ଜଗତ ସୃଷ୍ଟି ହୋଇଛି ଓ କିପରି ତପ, ଯନ୍ତ୍ର, ମନ୍ତ୍ର, ତନ୍ତ୍ର, ଯଜ୍ଞ ମାଧ୍ୟମରେ ବିଭିନ୍ନ ଦେବତାମାନଙ୍କର ଆରାଧନା ହେଉଛି, ସେହି ପଦ୍ଧତି ଉଲ୍ଲେଖ ରହିଛି ।

ପୁରୁଷୋତ୍ତମ ତତ୍ତ୍ୱର ଅବତାରଣା ହୋଇଛି ଭଗବତ୍ ଗୀତାରେ (ଗୀତା : ପଞ୍ଚଦଶ ଅଧ୍ୟାୟ, ଶ୍ଳୋକ ୧୮)

ଯେହେତୁ ମୁଁ କ୍ଷର (ବିନାଶଶୀଳ ଶରୀର) ଠାରୁ ସର୍ବଦା ଅତୀତ ଓ ଅବିନାଶୀ ଜୀବାତ୍ମା ଠାରୁ ମଧ୍ୟ ଉତ୍ତମ, ତେଣୁ ଲୋକରେ ଓ ବେଦରେ ମଧ୍ୟ ମୁଁ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ ।

ପ୍ରମୁଖ ବୈଦିକ ଦେବତାମାନେ ହେଲେ ବ୍ରହ୍ମା (ସୃଷ୍ଟି କର୍ତ୍ତା), ବିଷ୍ଣୁ (ପାଳନ କର୍ତ୍ତା), ମହେଶ୍ୱର (ସଂହାର କର୍ତ୍ତା) । ଏତଦ୍ ବ୍ୟତୀତ ଅନ୍ୟ ଦେବତାମାନେ ହେଲେ ଇନ୍ଦ୍ର, ବରୁଣ, ମରୁତ, ହନୁମାନ, ସୂର୍ଯ୍ୟ, କାର୍ତ୍ତିକ, ଗଣେଶ ପ୍ରଭୃତି ଯେଉଁମାନେ ବ୍ରହ୍ମନ୍‌ର ବିଭିନ୍ନ ଶକ୍ତିମାନଙ୍କର ନାମକରଣ ।

ନାସଦୀୟ ସୂକ୍ତରେ ବର୍ଣ୍ଣିତ ଶୂନ୍ୟତା ଏକ ଅନୁଭବ ନୁହେଁ, ଏକ ମହାନୁଭବ; ଏହି ତତ୍ତ୍ୱ ପରବର୍ତ୍ତୀ କାଳରେ 'ନେତି' ତତ୍ତ୍ୱ ମାଧ୍ୟମରେ ପ୍ରକଟିତ ହୁଏ ଓ ବିଜ୍ଞ ବ୍ୟକ୍ତିମାନଙ୍କ ମାନସ ପଟରେ ଏହା କ୍ରମଶଃ ବସା ବାନ୍ଧେ । ମନ ମଧ୍ୟରେ ସନ୍ତୁଳିତ ହୋଇ ହୋଇ କାଳକ୍ରମେ ଏହା ପରିପକ୍ୱ ହୁଏ । ଏହା ସାଧାରଣ ଜୀବନ ପ୍ରବାହକୁ ପ୍ରଭାବିତ କରେ । ଏହାର ଏକ ଉଦାହରଣ ହେଉଛି ଭଗବତ୍ ଗୀତା ଓ ମୋକ୍ଷ ତତ୍ତ୍ୱ । ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣଙ୍କର ଆତ୍ମାର ବିଶ୍ଳେଷଣ ଓ ବିଶ୍ୱରୂପ ପ୍ରଦର୍ଶନ ଉଭୟ ନାସଦୀୟ ସୂକ୍ତ ଓ ପୁରୁଷସୂକ୍ତର ଏକ ସୁମଧୁର ସମନ୍ୱୟ ।

ଆତ୍ମା ସମ୍ପର୍କରେ ଶ୍ରୀକୃଷ୍ଣ ବ୍ୟାଖ୍ୟା କରନ୍ତି : (ଗୀତା, ଦ୍ୱିତୀୟ ଅଧ୍ୟାୟ, ଶ୍ଳୋକ ୨୩)

ଆତ୍ମାକୁ କୌଣସି ଅସ୍ତ୍ର କାଟି ପାରେ ନାହିଁ; ଅଗ୍ନି ଜଳାଇ ପାରେ ନାହିଁ; ଜଳ ଭିଜାଇ ପାରେ ନାହିଁ; ବାୟୁ ଶୁଖାଇ ପାରେ ନାହିଁ; ଆତ୍ମା ହେଉଛି ଅଚ୍ଛେଦ୍ୟ, ଅଦାହ୍ୟ, ଅକ୍ଳେଶ୍ୟ, ଅବ୍ୟକ୍ତ, ଅଚିନ୍ତ୍ୟ, ଏହା ନିତ୍ୟ, ଅଚଳ, ସନାତନ ।

ଯାହାର ଜନ୍ମ ଅଛି ତାହାର ମଧ୍ୟ ମୃତ୍ୟୁ ଅଛି; ଯାହାର ମୃତ୍ୟୁ ଅଛି ତାହାର ଜନ୍ମ ମଧ୍ୟ ଅଛି; ତେଣୁ ବାରମ୍ବାର ଜନ୍ମ-ମୃତ୍ୟୁର ବିବର୍ତ୍ତନରେ କେବଳ ସ୍ଥୁଳ ଶରୀରର ପରିବର୍ତ୍ତନ ହୁଏ; ଆତ୍ମାର ନୁହେଁ, ଯାହା ଅପରିବର୍ତ୍ତନୀୟ, ଅଜ୍ଞେୟ, ନିରାକାର ଶକ୍ତି । ଏହା ଯେତେବେଳେ ପ୍ରକଟିତ ହୁଏ ତାହା ଦୃଶ୍ୟମାନ ହୁଏ ପ୍ରକୃତି ମାଧ୍ୟମରେ ଏବଂ ତାହା ନିପଟ ମିଥ୍ୟା ଓ ମାୟା । ପ୍ରକୃତ ସତ୍ୟ ହେଉଛି ନିର୍ଗୁଣ ଯାହା ଦୃଶ୍ୟମାନ ନୁହେଁ; ଆତ୍ମା ହେଉଛି ନିର୍ଗୁଣ, ଶରୀର ହେଉଛି ସଗୁଣ । ଏହିପରି ଭାବରେ ଆତ୍ମନ୍ ହେଉଛି ନିର୍ଗୁଣ ବ୍ରହ୍ମନ୍; ଅର୍ଥାତ୍ ଆତ୍ମନ୍ ଓ ନିର୍ଗୁଣ ବ୍ରହ୍ମନ୍ ଏକ ଓ ଏକାକାର । ଏହା ହିଁ ହେଉଛି ଅଦ୍ୱୈତ ବେଦାନ୍ତର ମୂଳତଥ୍ୟ । ଜୀବଜଗତର ଯେଉଁ ଅଂଶ ତ୍ରିଗୁଣ (ସତ୍ୱ, ରଜ,

ତମ)ର ବଶବର୍ତ୍ତୀ ତାହା କ୍ଷୟ ହୁଏ, କିନ୍ତୁ ଯାହା ତ୍ରିଗୁଣରୁ ମୁକ୍ତ ତାହା ଅକ୍ଷୟ ଓ ପରମସତ୍ୟ ଅର୍ଥାତ୍ ପରମାତ୍ମା ।

'ବିଶ୍ୱରୂପ' ଯେ ପରମସତ୍ୟର ପରିପ୍ରକାଶ ଏହି କଥା ଭଗବାନ ଶ୍ରୀକୃଷ୍ଣ ବୁଝାଇବାକୁ ଯାଇ କହନ୍ତି: (ଗୀତା, ଏକାଦଶ ଅଧ୍ୟାୟ)

ମହାଶୂନ୍ୟ ଗର୍ଭରୁ ସହସ୍ର ସୂର୍ଯ୍ୟର ତେଜ ନେଇ ଜନ୍ମ ସମସ୍ତ ଭୌତିକ ଜଗତ; ଅଲୌକିକ ବିରାଟ ରୂପ, ସହସ୍ର ପଦ, ଚକ୍ଷୁ, କର୍ଣ୍ଣ, ମସ୍ତକ ଓ ବଦନ, ସହସ୍ର ପଶୁ, ପକ୍ଷୀ, ଭୁଜଙ୍ଗ, ରାକ୍ଷସ, ଯକ୍ଷ ଓ ପତଙ୍ଗର ସମାବେଶ, ଆଦିରୁ ଅନାଦି, ଅନ୍ତରୁ ଅନନ୍ତ, ଅତ୍ୟନ୍ତ ତେଜମୟ, ଦୀପ୍ତିମୟ, ପରମବ୍ରହ୍ମର ଦର୍ଶନ ।

ଭଗବଦ୍ ଗୀତାରେ ଶ୍ରୀକୃଷ୍ଣଙ୍କର ଉପଦେଶ ହେଉଛି ଅଶାନ୍ତରୁ ପ୍ରଶାନ୍ତି ଲାଭର ଏକ ସୁଚିନ୍ତିତ ମାର୍ଗ ସଂକ୍ଷେପରେ ନିମ୍ନଲିଖିତ ସାରଣୀରେ ପରିସ୍ଫୁଟ:

ବିଷାଦ ଯୋଗ - ବିଚଳିତ ଚିତ୍ତ - ଜ୍ଞାନ, କର୍ମ, ଧ୍ୟାନ, ଭକ୍ତି ଯୋଗ

ସ୍ଥିତିପ୍ରଜ୍ଞ - ସମାଧି - ମନର ଶୂନ୍ୟତା - ଅସୀମ - ପ୍ରଶାନ୍ତି

ଆଧ୍ୟାତ୍ମିକ ସୃଜନଶୀଳତା - ଆତ୍ମନ୍ ଓ ବ୍ରହ୍ମନର ଅନୁଭବ - ନିର୍ଗୁଣ ବ୍ରହ୍ମନ୍ ବା ଶୂନ୍ୟତାର ବା ପରମ ସତ୍ୟର ଅନୁଭବ - ମୋକ୍ଷ ଲାଭ

ଉପର ଲିଖିତ ଗୀତାର ସାରାଂଶ ମଧ୍ୟ 'ଓଁ' ଚିହ୍ନ ମଧ୍ୟରେ ଆବଦ୍ଧ । ଓଁ ଏକ ମନ୍ତ୍ର; ଏହା ମାଣ୍ଡୁକ୍ୟ ଉପନିଷଦରେ ପ୍ରଯୋଜନା କରାଯାଇଅଛି । ଏହି ଶବ୍ଦକୁ ଉଚ୍ଚାରଣ କଲେ ଏହାର ଗମ୍ଭୀର ଧ୍ୱନିରେ ଶରୀର ଓ ମନ ମଧ୍ୟରେ ଏକ ଅଦ୍ଭୁତ ଶିହରଣ ହୁଏ । ଏହି ଧ୍ୱନିରେ ଶରୀର ସୁସ୍ଥ ରହେ ଓ ମନ ସୃଜନଶୀଳ ହୁଏ । ପ୍ରାଣାୟାମ୍, ଯୋଗ ସମୟରେ ପ୍ରଶ୍ୱାସ ତ୍ୟାଗ କରିବା ସମୟରେ ଏହି ଧ୍ୱନି ଉଚ୍ଚାରଣ କରାଯାଏ । ବୈଦିକ ମନ୍ତ୍ରର ଉଚ୍ଚାରଣରେ ପ୍ରାରମ୍ଭରେ ଓ ଶେଷରେ ଓଁର ଧ୍ୱନି ଗଗନ, ପବନ ପ୍ରକମ୍ପିତ କରେ । ପରିବେଶ କରେ ଶାନ୍ତ, ସ୍ନିଗ୍ଧ । ଏହି ମନ୍ତ୍ରର ପ୍ରଭାବ ମନ ଓ ଶରୀର ଉପରେ ବ୍ୟାପକ ଓ ଗଭୀର । ଓଁ ଚିହ୍ନରେ ତିନୋଟି ପୃଥକ୍ ଅଂଶ ଲକ୍ଷ୍ୟ କରାଯାଏ । ଗାଢ଼ ବିନ୍ଦୁଟି ହେଉଛି ନିର୍ଗୁଣ ବ୍ରହ୍ମନ୍‌ର ପ୍ରତୀକ । ବିନ୍ଦୁକୁ ଘେରି ଅର୍ଦ୍ଧ ଚନ୍ଦ୍ର, ମାୟାର ପ୍ରତୀକ । ଚିହ୍ନର ଅନ୍ୟ ଅଂଶଟି ଯାହା ତିନୋଟି ବକ୍ରରେଖା ଦ୍ୱାରା ଛନ୍ଦିତ ହୋଇଛି ତାହା ତ୍ରିଗୁଣ; ସତ୍ତ୍ୱ, ରଜ, ତମର ସମନ୍ୱୟ; ଅର୍ଥାତ ଏହା ହେଉଛି ଭୌତିକ ଜଗତ ବା ସଗୁଣ ବ୍ରହ୍ମନ ବା ଦୃଶ୍ୟମାନ୍ ପ୍ରକୃତି ବା ବିଶ୍ୱରୂପ ।

ତେଣୁ ନିର୍ଗୁଣ ବ୍ରହ୍ମନ୍‌କୁ ଲାଭ କରିବାକୁ ହେଲେ ଆତ୍ମା ତ୍ରିଗୁଣ ଭୁବନକୁ ତ୍ୟାଗ କରି ମାୟା ଜାଲକୁ ଛିନ୍ନ କରି ଓଁ ମନ୍ତ୍ର ଉଚ୍ଚାରଣ ମାଧ୍ୟମରେ ସ୍ଥିତପ୍ରଜ୍ଞ ଓ ସମାଧିସ୍ଥ

ହେବା ଆବଶ୍ୟକ । ଏହିପରି ଏହି ଚିହ୍ନ ବା ମନ୍ତ୍ର ମାଧ୍ୟମରେ ଗୀତାର ସାରାଂଶ ପ୍ରକଟିତ; ଏହାର ଧ୍ୱନିରେ ଗୀତାର ମାହାତ୍ମ୍ୟ ଗୁଞ୍ଜରିତ । ଓଁ ପରି ମହାଶକ୍ତିମାନ ଶବ୍ଦ ବୋଧହୁଏ ଅନ୍ୟ କୌଣସି ସଂସ୍କୃତିରେ ନାହିଁ ।

ଏହି ତତ୍ତ୍ୱ ମଧ୍ୟ ଝଙ୍କୃତ ହେଉଛି ଗାୟତ୍ରୀ ମନ୍ତ୍ର ମାଧ୍ୟମରେ:

ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟଂ ।

ଭର୍ଗୋଦେବସ୍ୟ ଧୀମହି ଧିୟୋ ଯୋ ନଃ ପ୍ରଚୋଦୟାତ୍ ॥

(ଋକ୍ ବେଦ ସୂକ୍ତ, ବିଶ୍ୱାମିତ୍ର)

ଛନ୍ଦର ନାମ ଗାୟତ୍ରୀ; ଏହି ଛନ୍ଦରେ ଅନେକ ମନ୍ତ୍ର ରହିଛି । କିନ୍ତୁ ଉପରୋକ୍ତ ମନ୍ତ୍ରଟି ଅଧିକ ଜନପ୍ରିୟ । କାରଣ ଏହା ଅଧିକ ମର୍ମସ୍ପର୍ଶୀ ଓ ତାତ୍ତ୍ୱିକ । ଏହି ମନ୍ତ୍ର ହେଉଛି ସଗୁଣ ବ୍ରହ୍ମନଙ୍କୁ ନିର୍ଗୁଣ ବ୍ରହ୍ମନ୍ ପ୍ରାପ୍ତ ନିମନ୍ତେ ଏକ ଆବାହନ; ଭୌତିକ ଜଗତ (ଯଥା, ଭୂଃ (ପୃଥିବୀ), (ବାୟୁ), ସ୍ୱଃ(ସ୍ୱର୍ଗ), ସବିତା (ସୂର୍ଯ୍ୟ), ଭର୍ଗ (ଉଜ୍ଜ୍ୱଳଶିଖା)ର ଅନ୍ତର ଆତ୍ମା ବା ବ୍ରହ୍ମତ୍ୱକୁ ପ୍ରାପ୍ତି ପାଇଁ ଏକ ନିବେଦନ । ବୈଦିକ ଋଷିଗଣ ଅନୁଭବ କରିଥିଲେ ଯେ ବ୍ରହ୍ମନ ହେଉଛି ଏକ ସମନ୍ୱୟ ଦୁଇ ଆପାତତଃ ବିରୋଧାତ୍ମକ ତତ୍ତ୍ୱର । ଯଥା: ନାସ୍ତିତ୍ୱ ଓ ଅସ୍ତିତ୍ୱ; ଶୂନ୍ୟତା ଓ ପୂର୍ଣ୍ଣତା; ନିର୍ଗୁଣ ବ୍ରହ୍ମନ ଓ ସଗୁଣ ବ୍ରହ୍ମନ ।

ଅର୍ଥାତ୍ ସତ୍ୟ ଏକ ଓ ଅନନ୍ୟ ହେଲେ ମଧ୍ୟ ଏହାର ଅନୁଭବ ବିଭିନ୍ନ ସ୍ତରର; ଏହାର ନାମକରଣ ବହୁବିଧ; ପରିପ୍ରକାଶ ମଧ୍ୟ ବହୁମୁଖୀ । ଯାହାର ଇନ୍ଦ୍ରିୟମାନଙ୍କ ଜରିଆରେ ଦୃଶ୍ୟମାନ୍ ବା ଅନୁଭବନୀୟ ତାହାକୁ କୁହାଯାଇଛି, ମାୟା । ଏଥିପାଇଁ 'ଜଗତ୍ ମିଥ୍ୟା' ବୋଲି କୁହାଯାଇପାରେ । ଅର୍ଥାତ୍ ଦୃଶ୍ୟମାନ ସୃଷ୍ଟି ବା ସଗୁଣ ବ୍ରହ୍ମନ ହେଉଛି ନିର୍ଗୁଣ ବ୍ରହ୍ମନର ବା ମହାଶୂନ୍ୟତାର ପ୍ରତିବିମ୍ବ । ଏହି ମର୍ମରେ ନିମ୍ନ ଉଦାହରଣକୁ ବିଶ୍ଳେଷଣ କରାଯାଇପାରେ ।

ଯଦି ଆମର ଦୃଷ୍ଟିଶକ୍ତି ରଞ୍ଜନ ରଶ୍ମୀ ସଦୃଶ ଶକ୍ତିମାନ ହୋଇଥାଆନ୍ତା ତାହାହେଲେ କେବଳ ମନୁଷ୍ୟର ମାଂସ ହୀନ ଅସ୍ଥି ଦୃଷ୍ଟି ଗୋଚର ହୁଅନ୍ତା ଯଦି ଚକ୍ଷୁ ଅଣୁବିକ୍ଷଣ ଯନ୍ତ୍ର ପରି ହୋଇଥାଆନ୍ତା ଆମର ଚତୁର୍ଦ୍ଦିଗରେ କେବଳ ଜୀବାଣୁମାନେ ଦୃଶ୍ୟ ହୁଅନ୍ତେ । ଚକ୍ଷୁ ଯଦି ଦୂରବୀକ୍ଷଣ ଯନ୍ତ୍ର ହୋଇଥାଆନ୍ତା ତେବେ ଆମର ଚତୁର୍ଦ୍ଦିଗରେ ଗ୍ରହ ନକ୍ଷତ୍ରମାନେ ଦୃଶ୍ୟମାନ ହୁଅନ୍ତେ । ସେହିପରି ଅନ୍ୟ ଇନ୍ଦ୍ରିୟମାନଙ୍କ ଶକ୍ତି ପରିବର୍ତ୍ତନ କଥା ଚିନ୍ତା କରାଯାଇପାରେ । ତାହାହେଲେ ବର୍ତ୍ତମାନର ଦୃଶ୍ୟମାନ ପ୍ରକୃତି ଭିନ୍ନ ଏକ ରୂପରେ ଆବିର୍ଭୁତ ହୁଅନ୍ତା । ତାହାହେଲେ ପ୍ରକୃତ ସତ୍ୟଟା କ'ଣ ? ଆମର ସାଧାରଣ

ଚକ୍ଷୁରେ ଦୃଷ୍ଟ ପୃଥିବୀ ନା ରଞ୍ଜନ ରଶ୍ମି ଚକ୍ଷୁରେ ଦୃଷ୍ଟି ପୃଥିବୀ ? ଏହି ମର୍ମରେ ଦୃଶ୍ୟମାନ ପ୍ରକୃତି ବା ସଗୁଣ ବ୍ରହ୍ମ ବା ପୁରୁଷ ଏକ ମାୟା । ତେଣୁ ଦୃଶ୍ୟମାନ ଜଗତର ଅନ୍ତରାଳରେ ଲୁକ୍କାୟିତ ଅଦୃଶ୍ୟ, ଅବ୍ୟକ୍ତ ଶକ୍ତି ହିଁ ପରମସତ୍ୟ ।

ଯଦି ଏହାକୁ କୌଣସି ବାକ୍ୟରେ ବର୍ଣ୍ଣନା କରାଯାଏ ବା ଏହାର କୌଣସି ବିଶେଷଣର ପ୍ରୟୋଗ କରାଯାଏ, ତାହା ହେଲେ ତତ୍‌କ୍ଷଣାତ୍ ଏହା ସଗୁଣ ହୋଇଯାଏ । ସେଥିପାଇଁ ଏହା ଅବର୍ଣ୍ଣନୀୟ; ତେଣୁ ଏହାର ଅନୁଭବ କେବଳ 'ନେତି' ତତ୍ତ୍ୱ ଜରିଆରେ ବା 'ଏହା ନୁହେଁ' ନୀତିରେ ସମ୍ଭବ । କେବଳ ମହାଶୂନ୍ୟତା ଜରିଆରେ ପରମସତ୍ୟର ଆଂଶିକ ଅନୁଭବ; ଅସ୍ତିତ୍ୱର ଅନୁଭବ କେବଳ ନାସ୍ତିତ୍ୱ ଜରିଆରେ ।

ବୈଦିକ ଯୁଗ ସର୍ବଶ୍ରେଷ୍ଠ ଜ୍ଞାନୀ ଯାଜ୍ଞବଲ୍କ୍ୟ ମହିଳା ଗଣିତଜ୍ଞ ଗାର୍ଗୀଙ୍କୁ କହିଥିଲେ ଯେ ବ୍ରହ୍ମନ୍‌କୁ ଅନୁଭବ କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ । ଏହାକୁ କେବଳ ନାସ୍ତିବାଚକ ଉକ୍ତିରେ ପ୍ରକାଶ କରିବାର ପ୍ରୟାସ କରାଯାଇପାରେ । ତାଙ୍କ ମତରେ ଏହା ସର୍ବବ୍ୟାପୀ, ସର୍ବ ଶକ୍ତିମୟ, ଅମର, ନିରନ୍ତକ, ଅଥଚ ଏହା ସ୍ଥୁଳ ନୁହେଁ, ସୂକ୍ଷ୍ମ ନୁହେଁ, କ୍ଷୁଦ୍ର ନୁହେଁ, ବୃହତ୍ ନୁହେଁ, ଏହା ରଙ୍ଗହୀନ, ସ୍ୱାଦହୀନ, ଗନ୍ଧହୀନ, ଛାୟାହୀନ, ଆଲୋକହୀନ, ଅନ୍ଧକାରହୀନ, ଦୃଷ୍ଟିହୀନ, କର୍ଣ୍ଣହୀନ, ବାକ୍ ଶକ୍ତିହୀନ, ପ୍ରାଣହୀନ, ଶ୍ୱାସହୀନ, ଜିହ୍ୱାହୀନ, ନିରାକାର; ଏହାର ଭିତର ନାହିଁ କି ବାହାର ନାହିଁ; ଏହା କାହାକୁ ଖାଏ ନାହିଁ ବା ଏହାକୁ କେହି ଖାଆନ୍ତି ନାହିଁ ।

ଏହିପରି ଭାବରେ ଶୂନ୍ୟତା ଓ ପୂର୍ଣ୍ଣତା ବା ନିର୍ଗୁଣ ବ୍ରହ୍ମ ଓ ସଗୁଣ ବ୍ରହ୍ମ ପରମ ସତ୍ୟର ଦୁଇଟି ଅଙ୍ଗ ଯାହା ସର୍ବଦା ସହାବସ୍ଥାନ କରନ୍ତି । ଶୂନ୍ୟତା ଓ ପୂର୍ଣ୍ଣତା ପରସ୍ପର ବିରୋଧାତ୍ମକ ନୁହେଁ । ଏହା ପରସ୍ପର ପରିପୂରକ ।

ପ୍ରକୃତିର ଏହି ବିଚିତ୍ର ପରିସ୍ଥିତିକୁ ହୃଦୟଙ୍ଗମ କରିବା ପାଇଁ ଭିନ୍ନ ଏକ ପ୍ରକାର ତର୍କଶାସ୍ତ୍ର ଆବଶ୍ୟକ ଯାହାକୁ ଆମେ ବର୍ତ୍ତମାନ କହୁଛୁ ଫଜି ତର୍କ । ଏହା ପ୍ରଚଳିତ ତର୍କଶାସ୍ତ୍ର ଠାରୁ ବହୁତ ବ୍ୟାପକ ।

ବ୍ୟାପକ ତର୍କଶାସ୍ତ୍ର ଆରମ୍ଭ ହୋଇଥିଲା ଭାରତରେ ମହାବୀର ଜୈନ (୫୯୯ - ୫୨୭ ଖ୍ରୀ.ପୂ.)ଙ୍କର ତର୍କ ଶାସ୍ତ୍ରରେ ଏହି ତର୍କ ଶାସ୍ତ୍ରର ନାମ ସ୍ୟାଦବାଦ । (ସ୍ୟାତ୍ + ବାଦ) ବା ଅନେକାନ୍ତବାଦ (ଅନେକ + ଅନ୍ତ + ବାଦ) ଅର୍ଥାତ୍ ବହୁ ଦୃଷ୍ଟିକୋଣ ମୂଳକ (ଅନ୍ତ, ସ୍ୟାଟ) ବାଦ (ଉକ୍ତି) । ଅନ୍ଧ ବ୍ୟକ୍ତି ଗୋଟିଏ ହାତୀର ଏକ ଅଂଶ ସ୍ପର୍ଶ କରି ଏକାନ୍ତ ଦୃଷ୍ଟିରେ ସାଧାରଣ ସତ୍ୟକୁ ଠାବ କରିପାରେ ନାହିଁ କିନ୍ତୁ ସାତୋଟି ଅନ୍ଧ ବ୍ୟକ୍ତି ଏହାର ବିଭିନ୍ନ ଅଂଶ ସ୍ପର୍ଶ କରି ଅନେକ ଦୃଷ୍ଟି କୋଣରୁ ହାତୀର ସାମଗ୍ରିକ

ସତ୍ୟତା ଉପଲବ୍ଧି କରି ପାରିବାର ସମ୍ଭାବନା ଥାଏ । ସେହିପରି ପରମ ସତ୍ୟକୁ ଉନ୍ମୋଚନ କରିବା ପାଇଁ ଏକାନ୍ତ ତାର୍କି ଦୃଷ୍ଟିକୋଣ ଯଥେଷ୍ଟ ନୁହେଁ; ଅନେକ ଦୃଷ୍ଟିକୋଣ ଆବଶ୍ୟକ । ଏହା ଜୈନଙ୍କର ଦତ୍ତ ନ୍ୟାୟ ବାଦ ତତ୍ତ୍ୱ ମଧ୍ୟରେ ଅନ୍ତର୍ଭୁକ୍ତ ।

ଏହି ପ୍ରକାର ଦୃଷ୍ଟିକୋଣ ଉପରେ ଗୌତମ ବୁଦ୍ଧ (ଖ୍ରୀ.ପୂ.୫୬୬-୪୮୬) ଗୁରୁତ୍ୱ ଆରୋପ କରିଥିଲେ ଓ ସେଥିପାଇଁ ସେ ଚରମ ପନ୍ଥୀ ପରିବର୍ତ୍ତେ ମଧ୍ୟବର୍ତ୍ତୀ ପନ୍ଥାକୁ ଉତ୍ତମ ପନ୍ଥା ବୋଲି ପରାମର୍ଶ ଦେଇଥିଲେ ।

କେଉଁ କାରଣରୁ ଭାରତରେ ବହୁ ପୂର୍ବରୁ ସୃଷ୍ଟି ହୋଇଥିବା ଏ ବ୍ୟାପକ ତର୍କଶାସ୍ତ୍ର ଲୋକ ପାଇଗଲା ଓ ପରେ ଆରିଷ୍ଟୋଟଲଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ସଂକୀର୍ଣ୍ଣ ଦ୍ୱୈତ ତର୍କଶାସ୍ତ୍ର ରାଜୁତି କଲା ତାହା ଚିନ୍ତାର ବିଷୟ । ସୌଭାଗ୍ୟ କ୍ରମେ ଅନେକ ତର୍କବିଦ୍ ଗଣିତଜ୍ଞ ଓ ବୈଜ୍ଞାନିକମାନେ ଫଜି ତର୍କ ଅଧ୍ୟୟନ କରି ପ୍ରଚଳିତ ସଂକୀର୍ଣ୍ଣ ଗଣିତ ଓ ବିଜ୍ଞାନକୁ ବ୍ୟାପକ କରିବା ପାଇଁ ଗବେଷଣାରତ ।

ଆରିଷ୍ଟୋଟଲୀୟ ତର୍କଶାସ୍ତ୍ରର ମନ୍ତ୍ର ହେଉଛି ଏକାନ୍ତ ଦୃଷ୍ଟିକୋଣ : ଦୁଇଟି ଚରମପନ୍ଥା; ମଧ୍ୟବର୍ତ୍ତୀ ପନ୍ଥା ନାହିଁ । ଏହାର ମଧ୍ୟବର୍ତ୍ତୀ କୌଣସି କଥା ସତ୍ୟ ନୁହେଁ । ଏହି ତର୍କ ଶାସ୍ତ୍ର ଜରିଆରେ ପ୍ରକୃତିକୁ ବିଶ୍ଳେଷଣ କରିବା ବେଶୀ ଫଳପ୍ରଦ ନୁହେଁ, କାରଣ ପ୍ରକୃତି ସର୍ବଦା ଚରମ ଅବସ୍ଥାରେ ଯଥା ସତ୍ୟ ବା ମିଥ୍ୟା, କଳା ବା ଧଳା, ୧ ବା ୦ ଅବସ୍ଥାରେ ନ ଥାଏ । ଏହା ଆଂଶିକ ସତ୍ୟ ହୋଇପାରେ, ଧୂସର ରଙ୍ଗ ମଧ୍ୟ ହୋଇପାରେ ଇତ୍ୟାଦି ଇତ୍ୟାଦି । ବେଶୀ ଫଳପ୍ରଦ ହେଉଛି ବୌଦ୍ଧଙ୍କର ବ୍ୟାପକ ତାର୍କିକ ପଦ୍ଧତି ଯେଉଁଠି ଉଭୟ ଅସ୍ତି ଓ ନାସ୍ତି ସହାବସ୍ଥାନ କରନ୍ତି; ଯେଉଁଠି ଶୂନ୍ୟତା ଓ ପୂର୍ଣ୍ଣତା ସହାବସ୍ଥାନ କରନ୍ତି । ପ୍ରକୃତିକୁ କେବଳ ଶୂନ୍ୟତା ବା ପୂର୍ଣ୍ଣତା ଜରିଆରେ ବିଶ୍ଳେଷଣ କରିବା ଏକ ସଂକୀର୍ଣ୍ଣ ତାର୍କିକ ବ୍ୟବସ୍ଥା । ଯଦିଓ ଏହି ବ୍ୟାପକ ତର୍କଶାସ୍ତ୍ରରେ ଜୈନ-ବୁଦ୍ଧଙ୍କ ଦ୍ୱାରା ବିଶେଷ ପ୍ରଗତି ଘଟିଥିଲା କିନ୍ତୁ ଏହି ବ୍ୟବସ୍ଥା ମଧ୍ୟ ବହୁ ବର୍ଷ ପୂର୍ବରୁ ବୈଦିକ ଋଷିମାନଙ୍କର ନାସଦୀୟ ସୂକ୍ତ ବା ଭଗବଦ୍ ଗୀତାରେ ପରମ ସତ୍ୟର ଅନୁସନ୍ଧାନରେ ପରିସ୍ଫୁଟ, ଯେତେବେଳେ ସେମାନେ ପରମ ସତ୍ୟର ଅନ୍ୱେଷଣ କରନ୍ତି ମହାଶୂନ୍ୟତା ଓ ମହାପୂର୍ଣ୍ଣତା ମାଧ୍ୟମରେ । ପରମ ସତ୍ୟ ଯାହା ଏକ ଓ ଅନନ୍ୟ କେବଳ ସ୍ୟାଦ୍ ବାଦର ନିମ୍ନ ତର୍କରେ ବିଶ୍ଳେଷଣ କରିବା ଶ୍ରେୟସ୍କର ମନେ ହୁଏ ।

"ସ୍ୟାଦ୍ ନାସ୍ତି ଅସ୍ତି ଚ ଅବ୍ୟକ୍ତୋଽୟମ୍"

ଏହି ସୂତ୍ର ଅନୁସାରେ ପରମ ସତ୍ୟ ହେଉଛି ନିର୍ଗୁଣ ବ୍ରହ୍ମନ (ଶୂନ୍ୟତା) ଓ ସଗୁଣ ବ୍ରହ୍ମନ୍ (ପୂର୍ଣ୍ଣତା)ର ସମନ୍ୱୟରେ ସଂଗଠିତ, ଅଥଚ ଏହା ଅବର୍ଣ୍ଣନୀୟ ।

ଶୂନ୍ୟତାର ଗର୍ଭାଶୟର ଜୀବନ୍ତ ଭ୍ରୁଣରୁ ଭୌତିକ ଜଗତର ସୃଷ୍ଟି । ବିଭିନ୍ନ ପର୍ଯ୍ୟାୟରେ ନିରାକାର ହୁଏ ବିଭିନ୍ନ ଆକାରଯୁକ୍ତ; ଜୀବନ୍ତ ବୀଜର ଅଙ୍କୁରୋଦ୍‌ଗମ ହୁଏ, ନିରବତା ପରିଣତ ହୁଏ ଧ୍ୱନିରେ; ବିଶ୍ରାମରୁ ସମୟ ପ୍ରବାହିତ ହୁଏ; ସ୍ଥିରତା କର୍ମମୁଖରତାରେ ପରିଣତ ହୁଏ, ଇତ୍ୟାଦି ଇତ୍ୟାଦି । ଏହା ହିଁ ଭୌତିକ ଜଗତ୍ ବା ସଗୁଣ ବ୍ରହ୍ମନ ।

ପୁନଶ୍ଚ ଯେତେବେଳେ ଆକାର ସବୁ ଲୀନ ହୋଇଯିବ ନିରାକାରରେ, ପ୍ରାଣୀ ଜଗତ ବୀଜ ମଧ୍ୟରେ, ସମସ୍ତ କର୍ମ ମୁଖରତା ସ୍ଥିରତାରେ ସେତେବେଳେ ସୃଷ୍ଟିର ବିଲୟ ଘଟିବ; ସମସ୍ତ ବିରୋଧାଭାସ ଯଥା ଅସ୍ତିତ୍ୱ ବା ନାସ୍ତିତ୍ୱର ତଫାତ୍ ଲୀନ ହେବ; ସମୟ ହେବ ସ୍ଥିର, ସଗୁଣ ବ୍ରହ୍ମନ୍ ନିର୍ଗୁଣ ବ୍ରହ୍ମନ୍‌ର ଅନ୍ତଃସ୍ଥଳକୁ ଫେରିଯିବ ଏବଂ ଆତ୍ମା ସୁପ୍ତ ଅବସ୍ଥାରେ ବୀଜ ମଧ୍ୟରେ ପୁଣି କେବେ ସର୍ଜନା ସମ୍ଭାବନାରେ ଜୀବିତ ଓ ସୁରକ୍ଷିତ ହୋଇରହିଯିବ । ଏହି ସୁପ୍ତ ଅବସ୍ଥା ବିଷ୍ଣୁଙ୍କର ଅନନ୍ତ ଶୟନ ନାମରେ ବିଦିତ ।

ଏହାର କୌଣସି ବ୍ୟାପ୍ତି ନ ଥିବାରୁ ଏହାର ମହାଶୂନ୍ୟ ଅବସ୍ଥା; ଅର୍ଥାତ୍ ଏହି ଶୂନ୍ୟତାର ଆତ୍ମା ରହିଛି, ଅସୀମ ଶକ୍ତି ରହିଛି ସୁପ୍ତ ଅବସ୍ଥାରେ । ସଗୁଣ ବ୍ରହ୍ମନ ହେଉଛି ବୀଜରୁ ଅଙ୍କୁରୋଦ୍‌ଗମ ହୋଇ ବୃକ୍ଷ, ପତ୍ର, ପୁଷ୍ପ ଓ ଫଳରେ ଲଦି ହେଲା ପରି ଭୌତିକ ଜଗତରେ ପରିପ୍ରକାଶ ହୋଇଥାଏ । ଜଗତର ନିର୍ଗୁଣ ବ୍ରହ୍ମନ୍‌ରୁ ସଗୁଣ ବ୍ରହ୍ମନକୁ ଆସିବା ହିଁ ସୃଷ୍ଟି । ସଗୁଣ ବ୍ରହ୍ମନରୁ ନିର୍ଗୁଣ ବ୍ରହ୍ମନକୁ ଫେରିଯିବା ପ୍ରଳୟ । ଏହି ତାତ୍ତ୍ୱିକ ଲୀଳାକୁ ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ମାଧ୍ୟମରେ ଆରାଧନା କରାଯାଏ । ଏହି ପରିପ୍ରେକ୍ଷୀରେ ନିର୍ଗୁଣ ବ୍ରହ୍ମନ୍ ହେଉଛି ସୃଷ୍ଟି ପାଇଁ ଏକ ଜୀବନ୍ତ ବୀଜ; ଏହାହିଁ ହେଉଛି ଆତ୍ମା । ଆତ୍ମାର ପରିପ୍ରକାଶ ସଗୁଣ ବ୍ରହ୍ମନ୍ ହେଉଛି ଯାହା ମାୟା; କେବଳ ସତ୍ୟ ହେଉଛି ଏହାର ଗର୍ଭରେ ଥିବା ଅନ୍ତର୍ନିହିତ ଶକ୍ତି ବା ଆତ୍ମା । ତେଣୁ ଏହି ଅର୍ଥରେ ଆତ୍ମନ୍ ଓ ବ୍ରହ୍ମନ୍ ଅନନ୍ୟ;

ସୋଽଅହଂମ୍; (ସେ ହେଉଛି ମୁଁ)

ତତ୍ତ୍ୱ ମସି; (ଛାନ୍ଦୋଗ୍ୟ ଉପନିଷଦ)

ଓଁ ଅହଂ ବ୍ରହ୍ମୋସ୍ମି (ଯର୍ଜୁବେଦ)

ନିର୍ଗୁଣ ବ୍ରହ୍ମନ୍ ସଗୁଣ ବ୍ରହ୍ମନ୍‌ରେ ପରିଣତ ହେବା ବା ଶୂନ୍ୟତାରୁ ପୂର୍ଣ୍ଣତା ପ୍ରାପ୍ତି ହେବାର ଅର୍ଥ ହେଉଛି ଶୂନ୍ୟତା ଅମାପ ଶକ୍ତି ସମ୍ପନ୍ନ, ସଦା ଚଳଚଞ୍ଚଳ, ଜୀବନ୍ତ, ସୃଜନଶୀଳ ଅଥଚ ସୁପ୍ତ । ଅଣୁ ତତ୍ତ୍ୱରେ ଉଦ୍ଭାବକ ମୁନି କଣାଦ ନ୍ୟାୟ ବୈଶେଷିକ ଶାସ୍ତ୍ରରେ ଅଣୁ ବା 'ପିଲଭ'ର ସକ୍ରିୟତାରେ ସୃଷ୍ଟିର ସର୍ଜନା ପରିକଳ୍ପନା କରିଛନ୍ତି ।

ଜାଣି ଆଶ୍ଚର୍ଯ୍ୟ ଲାଗେ ଯେ କିପରି ପାଞ୍ଚ ହଜାର ବର୍ଷ ପୂର୍ବେ ପ୍ରାଚୀନ ଜ୍ଞାନୀ ଋଷିମାନେ ଋକ୍‌ବେଦର ନାସଦୀୟ ସୂକ୍ତରେ ଓ ପରବର୍ତ୍ତୀ କାଳରେ ଲିଖିତ ଉପନିଷଦ ଓ ଅଦ୍ୱୈତ ବେଦାନ୍ତରେ ସୃଷ୍ଟି ସମ୍ପର୍କରେ, ଶୂନ୍ୟତା ସମ୍ପର୍କରେ ଯେଉଁ ପ୍ରକାର ତତ୍ତ୍ୱ ଉପସ୍ଥାପନା କରିଥିଲେ ସେହି ତତ୍ତ୍ୱ ଆଡ଼କୁ କ୍ରମଶଃ ଆଧୁନିକ ପଦାର୍ଥ ବିଜ୍ଞାନ ଯଥା ଯୁଗାନ୍ତକାରୀ ଅଣୁ ବିଜ୍ଞାନ ଆପେକ୍ଷିକ ତତ୍ତ୍ୱ କ୍ରମଶଃ ଅଗ୍ରସର ହେଉଛି । ସତର ଶହ ଶତାବ୍ଦୀ ପର୍ଯ୍ୟନ୍ତ ପଦାର୍ଥ ବିଜ୍ଞାନୀମାନେ ଆରିଷ୍ଟୋଟଲୀୟ ଧାରଣା ସହ ଏକମତ ହୋଇ ଭାବିଥିଲେ ଯେ ଶୂନ୍ୟତା ନିରର୍ଥକ । ଶୂନ୍ୟସ୍ଥାନରେ କୌଣସି ପଦାର୍ଥ ନାହିଁ କିମ୍ବା ବିକୀରଣ ନାହିଁ । ଉଣେଇଶି ଶହ ଶତାବ୍ଦୀ ବେଳକୁ ଶୂନ୍ୟ କହିଲେ ବୁଝାଗଲା ଯେ ସେ ସ୍ଥାନରେ ପଦାର୍ଥ ନାହିଁ, ତାପ ଥିବା ବିକୀରଣ ନାହିଁ ଅଥଚ ତାପଶୂନ୍ୟ ବିକୀରଣ ଅଛି । ଅର୍ଥାତ୍ ଶୂନ୍ୟତା ପର୍ଯ୍ୟାପ୍ତ ପରିମାଣରେ ବିକୀରଣ ବା ଶକ୍ତି ଯୁକ୍ତ କିନ୍ତୁ ଏହାର ତାପ ନାହିଁ । ବିଂଶ ଶତାବ୍ଦୀରେ ଏହି ଧାରଣା ଆହୁରି ଘନୀଭୂତ ହୋଇଛି; ଶୂନ୍ୟତାରେ ଭରି ରହିଛି ଅମାପ ତାପଶୂନ୍ୟ ଶକ୍ତି ଓ ସେ ଶକ୍ତି ଅହରହ, କଣିକା – ପ୍ରତି କଣିକା ରୂପରେ ପଦାର୍ଥରେ ପରିଣତ ହେଉଛି ଓ ନିମିଷକରେ ସେହି ପଦାର୍ଥ ପୁଣି ଶକ୍ତି ରୂପକୁ ଫେରି ଯାଉଛି । ଏହିପରି ଭାବରେ ଅସୀମ ଶକ୍ତି ରୂପକ ଶୂନ୍ୟତା ସ-ରତି ଲୀଳାରେ ସଦା ଚଳ ଚଞ୍ଚଳ ।

ଅମାପ ଶକ୍ତି ସମ୍ପନ୍ନ ସଦା ଚଳଚଞ୍ଚଳ ଅବସ୍ଥାକୁ ଶୂନ୍ୟତା କହିବାର ଯଥାର୍ଥତା ଜଣେ ନିମ୍ନ ପ୍ରକାରରେ ହୃଦୟଙ୍ଗମ କରିପାରେ । କୌଣସି ପରୀକ୍ଷା ନିରୀକ୍ଷା ଦ୍ୱାରା ଏହାର କୌଣସି ଭୌତିକ ଗୁଣ ଯଥା ଶକ୍ତି ବା ତାପ ବା ଶକ୍ତି-ପଦାର୍ଥ-ଶକ୍ତିର ରୂପାନ୍ତରୀକରଣ ପ୍ରକ୍ରିୟା ଇତ୍ୟାଦିକୁ ପର୍ଯ୍ୟବେକ୍ଷଣ କରିହେବ ନାହିଁ । ତେଣୁ ପରୀକ୍ଷା ଦୃଷ୍ଟିରୁ ସବୁ ଶୂନଶାନ୍ କେବଳ ଶୂନ୍ୟ ହିଁ ଶୂନ୍ୟ – ମହାଶୂନ୍ୟ; ଏହି ଶୂନ୍ୟତାର ପରାକାଷ୍ଠା କେବଳ ତତ୍ତ୍ୱ ଦୃଷ୍ଟିରେ ହିଁ ଅନୁଭବନୀୟ ଯେପରି ନାସଦୀୟ ସୂକ୍ତ ।

ପରମ ସତ୍ୟ ଅବ୍ୟକ୍ତ, ଅବର୍ଣ୍ଣନୀୟ, ଅଜ୍ଞେୟ । ପରମ ସତ୍ୟକୁ ବିରୋଧାଭାସର ସମନ୍ୱୟରେ ଅନୁଭବ କରାଯାଇପାରେ; ତାହା କେବଳ ଆଂଶିକ ଭାବରେ; ସମ୍ପୂର୍ଣ୍ଣ ଭାବରେ ନୁହେଁ ଯେପରି ପ୍ରଳୟ ଓ ସ୍ଥିତି, ଅଶାନ୍ତ ଓ ଶାନ୍ତ ।

ଏହି ପରିପ୍ରେକ୍ଷୀରେ ନିମ୍ନ ଶ୍ଲୋକରେ ଏକ ବିଶ୍ଳେଷଣ କରାଯାଇପାରେ:

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।
ଏଇ ପୂର୍ଣ୍ଣ (ମହାଶୂନ୍ୟ ବା ନିର୍ଗୁଣ ବ୍ରହ୍ମନ)

ସେ ପୂର୍ଣ୍ଣ (ଶୂନ୍ୟତାରୁ ଜନ୍ମ ଭୌତିକ ଜଗତ; ନିର୍ଗୁଣ ବ୍ରହ୍ମନରୁ ଜନ୍ମ ସଗୁଣ ବ୍ରହ୍ମନ) ତେଣୁ ପୂର୍ଣ୍ଣ (ଶୂନ୍ୟ)ରୁ ବା ନିର୍ଗୁଣ ବ୍ରହ୍ମନରୁ ପୂର୍ଣ୍ଣ (ସଗୁଣ ବ୍ରହ୍ମନ) ବା ଭୌତିକ ଜଗତ ବାଦ୍ ଦେଲେ ଯାହା ରହେ ତାହା ହିଁ ମଧ୍ୟ ପୂର୍ଣ୍ଣ, (ନିର୍ଗୁଣ ବ୍ରହ୍ମନ ବା ଶୂନ୍ୟତା)

ଏହିପରି ଭାବରେ କାଳକ୍ରମେ ନାସଦୀୟ ସୂକ୍ତ ଓ ପୁରୁଷ ସୂକ୍ତର ସମନ୍ୱୟରେ ବିଭିନ୍ନ ଯୁଗରେ, ବହୁ ବିବର୍ତ୍ତନ ପରେ ନାସଦୀୟ ସୂକ୍ତର ଶୂନ୍ୟ ତତ୍ତ୍ୱରୁ ଓ ପୁରୁଷ ସୂକ୍ତର ପୁରୁଷ ତତ୍ତ୍ୱରୁ ଜନ୍ମ ନେଲା 'ଶୂନ୍ୟ ପୁରୁଷ' ତତ୍ତ୍ୱ ଓ ତାହା ସଂଗଠିତ ହେଲା ଭଗବଦ୍ ଗୀତାରେ ।

ଶୂନ୍ୟ ପୁରୁଷ ତତ୍ତ୍ୱକୁ ଆହୁରି ଶାଣିତ କଲେ ବୁଦ୍ଧଦେବ ନିର୍ବାଣ ତତ୍ତ୍ୱରେ । ତାଙ୍କ ମତରେ ସାଧାରଣ ମନୁଷ୍ୟର ସୁସ୍ଥ ଜୀବନ ଯାପନ ପାଇଁ ଆବଶ୍ୟକ ଏକ ମଧ୍ୟମ ପନ୍ଥା, ଚରମ ପନ୍ଥା ନୁହେଁ । ପ୍ରକୃତିକୁ ମଧ୍ୟମ ପନ୍ଥାରେ ବେଶୀ ପରିମାଣରେ ହୃଦୟଙ୍ଗମ କରିହୁଏ । ଶୂନ୍ୟତାକୁ ପରିକଳ୍ପନା କରିବା କଷ୍ଟ, ସମ୍ପୂର୍ଣ୍ଣ ଭାବରେ ପରିକଳ୍ପନା କରିବା ଅସମ୍ଭବ କିନ୍ତୁ ପ୍ରକୃତିକୁ ଆଂଶିକ ଶୂନ୍ୟତା ଓ ଆଂଶିକ ପୂର୍ଣ୍ଣତାରେ ପରିକଳ୍ପନା କରିବା ସହଜ । ତେଣୁ ଶୂନ୍ୟ-ପୁରୁଷ ତତ୍ତ୍ୱକୁ ଶୂନ୍ୟତା ଓ ପୂର୍ଣ୍ଣତାର ଏକ ମଧୁର ସମନ୍ୱୟ ତତ୍ତ୍ୱ ଭାବରେ ଗ୍ରହଣ କରାଯାଇଥିବାରୁ ଏହା ଅଧିକ ଆକର୍ଷଣୀୟ, ରହସ୍ୟମୟ ଓ ରୋମାଞ୍ଚକର ହୋଇଛି ।

ଯାହା ମନେହୁଏ ଏହି ଲୋକପ୍ରିୟ ମନୋବୃତ୍ତିରୁ ଶୂନ୍ୟ ପୁରୁଷ ତତ୍ତ୍ୱ ଜନ୍ମ ଦେଲା ଏକ ଈଶ୍ୱରଙ୍କୁ ଯେ ପରମ ସତ୍ୟ, ଶୂନ୍ୟତାର ବା ନିର୍ଗୁଣ ବ୍ରହ୍ମନ୍‌ର ପ୍ରତୀକ; ଯେ ପୁରୁଷୋତ୍ତମ; ଆଉ ସେ ହେଉଛନ୍ତି-

"ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ";

ଏହାଙ୍କ ଉଦ୍ଦେଶ୍ୟରେ ଶଙ୍କରାଚାର୍ଯ୍ୟ ଖ୍ରୀଷ୍ଟାବ୍ଦ ୮୦୦ରେ ରଚନା କରିଥିଲେ ଏକ କମନୀୟ କବିତା 'ଜଗନ୍ନାଥାଷ୍ଟକ' ଏଥିରେ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କର ଭିନ୍ନ ଏକ ରୂପାନ୍ତରୀକରଣ ହେଉଛି ଜଗନ୍ନାଥଙ୍କର ପରିକଳ୍ପନା । ଏହି ପରିପ୍ରେକ୍ଷୀରେ ଜଗନ୍ନାଥାଷ୍ଟକର ଆଠଟି ଶ୍ଳୋକରୁ ନିମ୍ନ ଶ୍ଳୋକଟି ତାତ୍ପର୍ଯ୍ୟପୂର୍ଣ୍ଣ:

ନବୈପ୍ରାର୍ଥ୍ୟଂ ରାଜ୍ୟଂ ନ ଚ
କନକତାଂ ଭୋଗବିଭବଂ
ନ ଯାଚେଽହଂ ରମ୍ୟାଂ ନିଖିଳ ଜନକାମ୍ୟାଂ ବରବଧୂମ୍
ସଦା ଯାଚେ କାଳେ ପ୍ରଥମ ପତିନା ଗୀତଚରିତୋ
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।

ମୁଁ ରାଜ୍ୟ ପାଇବା ପାଇଁ ପ୍ରାର୍ଥୀ ନୁହେଁ ସୁବର୍ଣ୍ଣମୟ ଭୋଗ ବୈଭବ ପ୍ରାର୍ଥୀ

ନୁହେଁ, ସକଳ ଜନ ସ୍ପୃହଣୀୟା, ରମଣୀୟା ଦିବ୍ୟ ସ୍ତ୍ରୀ ମଧ୍ୟ ମୁଁ ମାଗୁନାହିଁ, ଶିବ ଯାହାଙ୍କର ନାମ ଗାନ କରୁଛନ୍ତି, ସେହି ପ୍ରଭୁ ଜଗନ୍ନାଥ ମୋର ନୟନ ପଥରେ ରହନ୍ତୁ ।

ଜଣେ ଭକ୍ତ ନିଜକୁ କାମନା ରହିତ କରି, ନିଜକୁ ନିଃସ୍ୱ କରି ନିଃସ୍ୱ ଦେବତାଙ୍କୁ ପ୍ରାର୍ଥନା କରୁଛି ଯେ ସେ କେବଳ ତାଙ୍କର ନୟନ ପଥରେ ରହନ୍ତୁ, ନିଜର ସ୍ମରଣରେ ରହନ୍ତୁ ।

ସଗୁଣ ବ୍ରହ୍ମନ୍ ବା ସୃଷ୍ଟି ସଦା ସର୍ବଦା ଅସଂପୂର୍ଣ୍ଣ । ବିସ୍ତାରିତ ହେଉଥିବା ବିଶ୍ୱ ଜଗତ ସଦା ସର୍ବଦା ଅସଂପୂର୍ଣ୍ଣ, ସଦା ସର୍ବଦା ଭଙ୍ଗା, ଗଢ଼ା ପଦ୍ଧତିରେ ସଂପୂର୍ଣ୍ଣ ଭାବରେ ପ୍ରକଟିତ ହୋଇପାରି ନାହିଁ । ପରିବର୍ତ୍ତନ ତଥା ଆବର୍ତ୍ତନ ସର୍ବଦା କ୍ରିୟାଶୀଳ; ପ୍ରଜ୍ଞା, ଜ୍ଞାନ, ବିଜ୍ଞାନ, ଚେତନା କ୍ରମ ବର୍ଦ୍ଧନଶୀଳ ସଂପୂର୍ଣ୍ଣ ପଲ୍ଲବୀତ ହୋଇ ନ ଥିବା ବୃକ୍ଷ, ଝରିପଡୁଥିବା ବର୍ଷା, ପ୍ରକୃତିର ଅର୍ଦ୍ଧ ମୁକୁଳିତ ଅପୂର୍ବ ସମ୍ଭାର ଗତିଶୀଳ ପ୍ରକୃତିର ଏକ ଏକ ଉଦାହରଣ । ଏହିପରି କ୍ରିୟାଶୀଳ ସୃଷ୍ଟିର ଅନେକ ନିତ୍ୟ ନୂତନ ସର୍ଜ୍ଜନାରେ ବିଶ୍ୱ ଝଙ୍କୃତ । ଏହାର ସମାପ୍ତି କାହିଁ । ସୃଷ୍ଟିର ଯବନିକା ପତନ ହୋଇନାହିଁ; ସବୁ ଯେପରି ଅଧାଗଢ଼ା ।

ତାହାହେଲେ ଜଗତରନାଥ ଜଗନ୍ନାଥଙ୍କ ମୂର୍ତ୍ତି ସଂପୂର୍ଣ୍ଣ ହେବ କିପରି ?

ଜଗତରନାଥ ଜଗନ୍ନାଥଙ୍କ କାଳିଆ ମୁହଁ ନାସଦୀୟ ସୂକ୍ତରେ ବର୍ଣ୍ଣିତ ସୃଷ୍ଟି ପୂର୍ବର ଅନ୍ଧକାରର ପ୍ରତୀକ ହୋଇପାରେ; ଆଉ ଚକାଆଖି ଜୀବନ୍ତ ବୀଜର । ହାତ ଓ ଗୋଡ଼ ନ ଥିବା ଦାରୁ ବିଗ୍ରହ ତେଣୁ ଅସଂପୂର୍ଣ୍ଣ ସର୍ଜ୍ଜନାର ପ୍ରତୀକ । କିନ୍ତୁ ଦାରୁ ବିଗ୍ରହର ନାଭି କେନ୍ଦ୍ରରେ ଲୁକ୍କାୟିତ ଦାରୁବ୍ରହ୍ମ ବା ନିର୍ଗୁଣ ବ୍ରହ୍ମନ୍‌ର ପ୍ରତୀକ ବୋଲି ବଶ୍ୱାସ କରାଯାଏ ।

ଏହି ଦୃଷ୍ଟିକୋଣରୁ ସ୍ୱୟଂ ଜଗନ୍ନାଥ, ଯେ କି ସଂପୂର୍ଣ୍ଣ ବିଶ୍ୱ ବ୍ରହ୍ମାଣ୍ଡର ପ୍ରତୀକ ନିଜେ ଅସଂପୂର୍ଣ୍ଣ ଭାବରେ ପ୍ରକଟିତ ରହି ଏକ ଅସଂପୂର୍ଣ୍ଣ ବିଶ୍ୱ ବ୍ରହ୍ମାଣ୍ଡର ଉଦାହରଣ ସମଗ୍ର ବିଶ୍ୱବାସୀଙ୍କୁ ଦେଉଛନ୍ତି ଏବଂ ଅସଂପୂର୍ଣ୍ଣତାରୁ ସଂପୂର୍ଣ୍ଣତାକୁ ଅଗ୍ରସର କରିବା ପାଇଁ ପ୍ରେରଣାର ଉତ୍ସ ହୋଇଛନ୍ତି ।

ତେଣୁ ଜଗନ୍ନାଥ ତତ୍ତ୍ୱ ହେଉଛି ରୂପରୁ ଅରୂପକୁ, ଆକାରରୁ ନିରାକାରକୁ, ଅସଂପୂର୍ଣ୍ଣରୁ ସଂପୂର୍ଣ୍ଣକୁ, ସଗୁଣ ବ୍ରହ୍ମନ୍‌ର ନିର୍ଗୁଣ ବ୍ରହ୍ମନ୍‌କୁ ଯିବାର ଏକ ଆହ୍ୱାନ; ମୋକ୍ଷ ବା ନିର୍ବାଣ ପ୍ରାପ୍ତିର ଏକ ମାର୍ଗ ।

ଅନେକ ପାଶ୍ଚାତ୍ୟ ଦାର୍ଶନିକ ଭାରତର ଆଧ୍ୟାତ୍ମିକବାଦକୁ ଭୁଲ୍ ଭାବରେ ତର୍ଜମା କରନ୍ତି, କଦର୍ଥ କରନ୍ତି । ଏହା ହୁଏତ ସେମାନଙ୍କର ଅଜ୍ଞତା ଦୃଷ୍ଟିରୁ ହୋଇପାରେ ବା ହୁଏତ ହୋଇପାରେ ଉପନିବେଶିକ ମାନସିକତାରୁ, ଔଦ୍ଧତ୍ୟରୁ । ଯେଉଁମାନେ ଭାବନ୍ତି

ଭାରତର ଆଧ୍ୟାତ୍ମିକତା ହିଁ ବୈରାଗ୍ୟ ଓ ବୈରାଗ୍ୟ ହେଉଛି କର୍ମ ବିମୁଖତା ତାହା ସଂପୂର୍ଣ୍ଣ ଭୁଲ୍ ତର୍ଜମା । କେଉଁ ଅର୍ଥରେ କୁହାଯାଇଛି ଜଗତ ମିଥ୍ୟା; ଜଗତ ମାୟା ! ଭୌତିକ ଜଗତ ଯାହା ସଗୁଣ ବ୍ରହ୍ମନ୍‌ର ଏକ ରୂପାନ୍ତର, ତାହାର ପ୍ରକୃତ ଅନ୍ତର୍ନିହିତ ଶକ୍ତି ହେଉଛି ନିର୍ଗୁଣ ବ୍ରହ୍ମନ୍; ଯାହା ପରମ ସତ୍ୟ ଯାହାର ଅନୁସନ୍ଧାନ କରିଛନ୍ତି ବୈଜ୍ଞାନିକମାନେ ଆଦିମ ଯୁଗରୁ ଏ ପର୍ଯ୍ୟନ୍ତ । ଲାଳସା, ଆସକ୍ତି, କାମନା, ମାୟା ପ୍ରବୃତ୍ତିରୁ ନିବୃତ୍ତ ରହିବା, ବୀତସ୍ପୃହ ହେବା ଆଧ୍ୟାତ୍ମିକତାର ଲକ୍ଷଣ । ଯେ ବୈରାଗ୍ୟର ଚରମ ପ୍ରତୀକ, ସେ ତପସୀ, ସ୍ଥିତପ୍ରଜ୍ଞ, ସମାଧିସ୍ଥ; ସେ ପୁଣି କେତେ ତତ୍ପର, ସୃଷ୍ଟିର ବିନାଶରୂପୀ ଗରଳକୁ ପାନ କରି, ସୃଷ୍ଟିକୁ ରକ୍ଷା କରିବାରେ; ତାଣ୍ଡବ ରଚନା କରି ପ୍ରଳୟ ସୃଷ୍ଟି କରିବାରେ । ପୁନଶ୍ଚ ଯେ ମହାଯୋଗୀ, ମହାତ୍ୟାଗୀ ପୁରୁଷୋତ୍ତମ ଶ୍ରୀକୃଷ୍ଣ, ତାଙ୍କର ସାରା ଜୀବନ କର୍ମ ମୁଖର । ସ୍ୱୟଂ ସେ ଏକ ସ୍ନେହଶୀଳ ପଶୁ ପାଳକ, ବାଲ୍ୟତ କାଳରେ ଯାହାଙ୍କୁ ପଶୁପକ୍ଷୀମାନେ ଝୁରନ୍ତି; ସେ ଜଣେ ସୂକ୍ଷ୍ମ ବଂଶୀବାଦକ ଯାହାର ବଂଶୀର ସ୍ୱନରେ ଗୋପପୁରର ନରନାରୀ ବିମୁଗ୍ଧ ହୁଅନ୍ତି; ତାଙ୍କର ମୁଖରେ ଲହୁଣି ନ ଦେଲେ ସାରା ଗୋପପୁରର ମାତୃ ହୃଦୟ କ୍ରନ୍ଦନ କରେ । ସେ ଉଜ୍ଜୟିନୀର ବିନ୍ଧ୍ୟ ପାର୍ବତ୍ୟାଞ୍ଚଳରେ, ଶାନ୍ତ, ସୁନ୍ଦର, ପ୍ରକୃତିର ପରିବେଶ ମଧ୍ୟରେ ଓ ଦୀପ୍ତିମନ୍ତ, ମହାଜ୍ଞାନୀ, ସନ୍ଦିପନୀ ଋଷିଙ୍କର ଗୁରୁକୁଳ ଆଶ୍ରମରେ ସର୍ବ ପ୍ରତିଭାସମ୍ପନ୍ନ ଏକ ଶିଷ୍ୟ । ସେ ଶିକ୍ଷା ଲାଭ କରିଥିଲେ ସମସ୍ତ ବିଦ୍ୟା ଯାହା ତାଙ୍କୁ ପରବର୍ତ୍ତୀ ଜୀବନରେ ଏକ ମହାଜ୍ଞାନୀ ଓ ପୁରୁଷୋତ୍ତମ ହିସାବରେ ଅଧିଷ୍ଠିତ କରିଥିଲା । ସେ ହେଲେ ଏକ ଅଦ୍ୱିତୀୟ କଳାକାର, ରାଜନୀତିଜ୍ଞ, କୂଟନୀତିଜ୍ଞ; ସମସ୍ତଙ୍କର ସ୍ନେହ ଭାଜନ; ଅଧର୍ମର ବୈରୀ; ଧର୍ମର ପ୍ରତୀକ, ଶାନ୍ତିର ଦୂତ ଏବଂ ଗୀତାର ପ୍ରବଚକ ।

ଯେ ଜୀବନସାରା କର୍ମମୁଖର, ସୃଜନଶୀଳ ସେ କ'ଣ କେବେ କର୍ମବିମୁଖତାକୁ ପ୍ରଶ୍ରୟ ଦେଇପାରେ ?

ପ୍ରାଗ୍ ଐତିହାସିକ ଯୁଗରୁ, ନାସଦୀୟ ସୂକ୍ତ ଯୁଗରୁ - ଗୀତା ତତ୍ତ୍ୱରୁ, ଜୈନ ବୌଦ୍ଧ ଦର୍ଶନରୁ ଆରମ୍ଭ କରି ଶଙ୍କରାଚାର୍ଯ୍ୟ, ରାମାନୁଜ, ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ନିଗମାନନ୍ଦ, ଶ୍ରୀଅରବିନ୍ଦ, ସତ୍ୟସାଇ ଓ ଯୋଗୀ ରାମଦେବଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ବାଣୀରେ ସେହି ଗୋଟିଏ ଆଧ୍ୟାତ୍ମିକ କଥା, ଦିବ୍ୟ ଜ୍ଞାନ ଓ ଦିବ୍ୟ ଚେତନା । ସମସ୍ତଙ୍କ ବାଣୀରେ ସମାଜର ସାମଗ୍ରିକ ଗଠନ ମୂଳକ ଓ ମଙ୍ଗଳମୟ କାର୍ଯ୍ୟ ପାଇଁ ପ୍ରେରଣା; ଏହା ଅବଶ୍ୟ ବିଭିନ୍ନ ଭାଷାରେ, ବିଭିନ୍ନ ଅନୁଭବରେ, ବିଭିନ୍ନ ସ୍ଥାନ, କାଳ ଓ ପାତ୍ରର ଆବଶ୍ୟକତା ଅନୁସାରେ ।

ସୃଷ୍ଟିର ଉଦ୍ଦେଶ୍ୟ କ'ଣ ? ସୃଷ୍ଟିକର୍ତ୍ତା କିଏ ? ସୃଷ୍ଟିକର୍ତ୍ତା କ'ଣ ସୃଷ୍ଟି ମଧ୍ୟରେ ଅନ୍ତର୍ଭୁକ୍ତ ନା ସୃଷ୍ଟିର ବହିଃସ୍ଥ ? ଏହା ଯଦି ସୃଷ୍ଟିରୁ ବହିଃସ୍ଥ ହୁଏ ତେବେ ସୃଷ୍ଟି ଓ ସୃଷ୍ଟିକର୍ତ୍ତା ଏ ଦ୍ୱୟକୁ ନିୟନ୍ତ୍ରଣ କରିବା ପାଇଁ କ'ଣ ଆଉ ଏକ ପରମ କର୍ତ୍ତା ଆବଶ୍ୟକ, ଯାହା ସୃଷ୍ଟିକର୍ତ୍ତାଙ୍କର ପ୍ରାଧାନ୍ୟକୁ କ୍ଷୁର୍ଣ୍ଣ କରିବ ।

ପରମ ସତ୍ୟକୁ ଆବିଷ୍କାର କରିବା ପାଇଁ ମାନବ ସଭ୍ୟତା ବିଭିନ୍ନ ଦୃଷ୍ଟିକୋଣ ଅବଲମ୍ବନ କରୁଛି । ପଦାର୍ଥ ବିଜ୍ଞାନ ଜ୍ୟୋତିର୍ବିଜ୍ଞାନ, ରସାୟନ ବିଜ୍ଞାନ, ଗଣିତ ଇତ୍ୟାଦି ସମସ୍ତ ଜ୍ଞାନ ବିଭାଗ ନିଜ ନିଜର ପରିସର ମଧ୍ୟରେ ଆଂଶିକ ସତ୍ୟ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିଛନ୍ତି ଓ ସମସ୍ତ ବିଭାଗର ଆଂଶିକ ସତ୍ୟକୁ ଏକତ୍ରିତ କରି ତାହାର ସମନ୍ୱୟରେ ମାନବ ସମାଜ ଭାବୁଛି ସେ ଏକ ବିପୁଳ ଜ୍ଞାନ ସମ୍ପତ୍ତିର ଅଧିକାରୀ; ହେଲେ ମଧ୍ୟ ଏହା ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ ।

ପରମ ସତ୍ୟ ଜୀବନ୍ତ; କାରଣ ଆମେ ଜୀବନ୍ତ; ପରମସତ୍ୟ ନିର୍ଜୀବ ହେଲେ ଆମେ ଜୀବନ୍ତ ହୋଇ ରହିପାରିବା ନାହିଁ; କାରଣ ଆମେ ମଧ୍ୟ ପରମ ସତ୍ୟର ଅଂଶ ବିଶେଷ । ପରମ ସତ୍ୟର ଆତ୍ମା ଅଛି, ମନ ମସ୍ତିଷ୍କ ଅଛି, ସୃଜନଶୀଳତା ଅଛି, ପ୍ରଜ୍ଞା ରହିଛି କାରଣ ଏଗୁଡ଼ିକ ମଧ୍ୟ ମନୁଷ୍ୟର ରହିଛି । ସମସ୍ତ ଭୌତିକ ଜଗତ ବା ସଗୁଣ ବ୍ରହ୍ମନ୍‌ର ପ୍ରତ୍ୟେକ ଅଂଶ ଏକ ଏକ ପ୍ରମାଣ ନିର୍ଗୁଣ ବ୍ରହ୍ମନ୍‌ର । କିନ୍ତୁ ସଗୁଣ ବ୍ରହ୍ମନ୍ ଜରିଆରେ ନିର୍ଗୁଣ ବ୍ରହ୍ମନର ପୂର୍ଣ୍ଣାନୁଭବ ସମ୍ଭବ ନୁହେଁ କାରଣ ମନୁଷ୍ୟର ପ୍ରଜ୍ଞା ସୀମିତ, ସୀମିତ ପ୍ରଜ୍ଞାରେ ସେ ପରମ ସତ୍ୟର କେବଳ ସୀମିତ ପ୍ରଜ୍ଞାକୁ ବୁଝିପାରେ; ସୀମିତ ଶକ୍ତି ଅସୀମ ଶକ୍ତିର କଳନା କରିପାରେ ନାହିଁ; ସୀମିତ ଆତ୍ମା ପରମାତ୍ମାକୁ ଲାଭ କରିପାରେ ନାହିଁ; ସେହିପରି ଆଂଶିକ ସଗୁଣ ବ୍ରହ୍ମନ ଯାହା ମାନବ ଜାତିର ବୋଧଗମ୍ୟ ତାହା ଆଂଶିକ ଭାବରେ ନିର୍ଗୁଣ ବ୍ରହ୍ମନ ଲବ୍ଧ ହୁଏ; ସମ୍ପୂର୍ଣ୍ଣ ବ୍ରହ୍ମନ୍ ନୁହେଁ ।

ଯାହା ଲବ୍ଧ ତାହା ଆଂଶିକ ସତ୍ୟ ବା ଅର୍ଦ୍ଧ ସତ୍ୟ, ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ଏହା ନିରାକାର; ପ୍ରକଟିତ ହେଲେ ଆକାର ଯୁକ୍ତ ହେବ । ଏହା ସର୍ବଶକ୍ତିମାନ; ଏହାକୁ ବାଦ୍ ଦେଇ କୌଣସି ଶକ୍ତି ତିଷ୍ଠି ପାରେ ନାହିଁ; ଯଦି ତିଷ୍ଠିବ, ତାହାହେଲେ ଏ ଦୁଇ ଶକ୍ତିକୁ ନିୟନ୍ତ୍ରଣ କରିବା ପାଇଁ ଆଉ ଏକ ମହାଶକ୍ତି ଆବଶ୍ୟକ; ଏହା ସର୍ବବ୍ୟାପ୍ତ; ଯଦି କୌଣସି ସ୍ଥାନରେ ଏହାର ବ୍ୟାପ୍ତି ନ ଥାଏ ତେବେ ଏ ଦୁଇଟି ବ୍ୟାପ୍ତିକୁ ସଂଯୋଗ କରି ଏକ ମହାବ୍ୟାପ୍ତି ସୃଷ୍ଟି ହୋଇପାରେ । ଏହା ପାଇଁ ସମସ୍ତ ପ୍ରକାର ବିଶେଷଣ ନିରର୍ଥକ, କାରଣ କୌଣସି ବିଶେଷଣ ଏହାକୁ ସୀମିତ କରି ଦିଏ; ସମସ୍ତ ପ୍ରକାର ବିରୋଧାଭାସ ସହାବସ୍ଥାନ କରେ, ଯେପରି ଏହାର ଅସ୍ତିତ୍ୱ ନାହିଁ, ନାହିଁ ଅବା ନାସ୍ତିତ୍ୱ । ତେଣୁ

ପରମସତ୍ୟ ସର୍ବଦା ରହସ୍ୟମୟ, ଅଜ୍ଞାତ ଓ ଅଜ୍ଞେୟ; ଯାହା ଜ୍ଞାତ ବା ଜ୍ଞାନ ଲବ୍ଧ ତାହା ଅର୍ଦ୍ଧ ସତ୍ୟ ଓ ସୀମିତ, ବିଭିନ୍ନ ବିଶେଷଣର ବିଭୂଷଣରେ ସୁଶୋଭିତ ।

ତଥାପି ପରିସ୍ଥିତି ଏତେ ନୈରାଶ୍ୟଜନକ ନୁହେଁ; ଏତେ ବିଷାଦମୟ ନୁହେଁ । ଭଗବତ ଗୀତାରେ ଭଗବାନ ଶ୍ରୀକୃଷ୍ଣ ପରମ ସତ୍ୟର ମହିମା ବର୍ଣ୍ଣନା ସହିତ ପରମ ସତ୍ୟକୁ ପ୍ରାପ୍ତ ହେବା ପାଇଁ ସ୍ଥିତ, ପ୍ରଜ୍ଞସମାଧି, ଜ୍ଞାନ ଯୋଗ, କର୍ମ ଯୋଗ, ଧ୍ୟାନ ଯୋଗ, ଭକ୍ତି ଯୋଗ ମାଧ୍ୟମରେ ସୁଚିନ୍ତିତ ପନ୍ଥା ନିରୂପଣ କରିଛନ୍ତି ।

ପରମ ସତ୍ୟ ପ୍ରାପ୍ତି ପାଇଁ ପନ୍ଥା ଅନେକ ଅନେକ ଧର୍ମ, ଅନେକ କର୍ମ, ଅନେକ ଜ୍ଞାନ, କିନ୍ତୁ ସମସ୍ତ ମାର୍ଗ ଏକମୁଖୀ – ସତ୍ୟର ସନ୍ଧାନରେ । ସତ୍ୟ ଏକ ଓ ଅନନ୍ୟ ।

ପରମ ସତ୍ୟ ଯେତେବେଳେ ଯେଉଁ ଆକାରରେ ପ୍ରକୃତିର ବିଭିନ୍ନ ରୂପରେ ପ୍ରକଟିତ ହେଉଛି ସେହି ପ୍ରକଟିତ ପ୍ରକୃତିକୁ ବିଶ୍ଳେଷଣ କରି ଓ ସେ ପ୍ରକୃତିର ସମସ୍ୟାର ସମ୍ମୁଖୀନ ହୋଇ ସମାଧାନ କରିବାକୁ ବିଭିନ୍ନ ଜ୍ଞାନ ସୃଷ୍ଟି କରାଯାଇଛି । ପ୍ରକୃତି ଭିନ୍ନ ରୂପରେ ପ୍ରକଟିତ ହେଲେ ଜ୍ଞାନ ଭିନ୍ନ ରୂପରେ ସୃଷ୍ଟି କରାହେବ ।

ପରମ ସତ୍ୟ ସେଥିପାଇଁ ସର୍ବଦା ରହସ୍ୟମୟ । ଅଦ୍ୱୈତ ବେଦାନ୍ତରେ ସୃଷ୍ଟି ଓ ସୃଷ୍ଟିକର୍ତ୍ତା ଅନନ୍ୟ ଓ ଅଭିନ୍ନ ବୋଲି ପରିକଳ୍ପନା କରିବା ଯଥାର୍ଥ ଓ ଏହା ହିଁ ପରମ ସତ୍ୟ । ଏହାକୁ ଈଶ୍ୱର ନାମରେ ଆରାଧନା କରାଯାଇପାରେ । ଏହି ରହସ୍ୟମୟୀ ସତ୍ୟ, ଆଂଶିକ ଭାବରେ ଉନ୍ମୋଚିତ ହେଉଥିଲେ ମଧ୍ୟ ସର୍ବଦା, ଅଜଣା ଓ ଅଜ୍ଞେୟ ହୋଇ ରହିଥିବ । କେବଳ ଭକ୍ତି ଯୋଗରେ ଏହା ଉପରେ ଏକ ଦୃଢ଼ ବିଶ୍ୱାସ, ପ୍ରତିଷ୍ଠା ଓ ଅନୁଭବ କରାଯାଇପାରେ ।

"ସର୍ବଧର୍ମାନ ପରିତ୍ୟଜ୍ୟ ମାମେକଂ ଶରଣଂବ୍ରଜ"

(ଶ୍ରୀମଦ୍ ଭାଗବତ୍ ଗୀତା)

ମନୁଷ୍ୟର ପ୍ରଜ୍ଞା ସୀମିତ । ତେଣୁ ତା'ର ଜ୍ଞାନର ପରିସର ମଧ୍ୟ ସୀମିତ, ଯଦିଓ ଏ ପରିସର କ୍ରମାଗତ ଭାବେ ଗବେଷଣା ଜରିଆରେ ସଂପ୍ରସାରିତ ହେଉଥାଏ । ଜ୍ଞାନର ସୀମିତ ପରିସର ମଧ୍ୟରେ ଜ୍ଞାନ ଯୋଗୀ ସର୍ବଦା ସମସ୍ତ ସମସ୍ୟାର ସମାଧାନ ପନ୍ଥା ସନ୍ଧାନ କରିପାରେ ନାହିଁ । ସେ ଅନୁଭବ କରେ ଲବ୍ଧ ଜ୍ଞାନର ସଂକୀର୍ଣ୍ଣତା । ପ୍ରକୃତ ଜ୍ଞାନୀ ଲୋକ ଜ୍ଞାନୀ ହେବାର ଆତ୍ମବଡ଼ିମାକୁ ପରିହାର କରି ନମ୍ର ହୁଏ, ବିନୀତ ହୁଏ । ତା'ପରେ ସେ ଭକ୍ତି ମାର୍ଗକୁ ଆଦରି ନିଏ । ସେ ଯେଉଁ ସତ୍ୟ ଉପଲବ୍ଧି କରେ ତାହା ଜ୍ଞାନ ମାର୍ଗରେ ପ୍ରକାଶ କରିବା ସମ୍ଭବ ହୁଏ ନାହିଁ । ଏହି ଭକ୍ତି ମାର୍ଗ ବା ଭକ୍ତି ଯୋଗ ହେଉଛି ଆତ୍ମବିଶ୍ୱାସର ଯୋଗ । ଏହାର ପରିସର ଜ୍ଞାନର ପରିସର ପରି

ସୀମିତ ନୁହେଁ । 'ବ୍ରହ୍ମ' ବା ଶେଷ ସତ୍ୟ ଉପଲବ୍ଧି ପାଇଁ ଏହା ଏକ ବିଶ୍ୱାସର ସୀମାହୀନ ପରିସର ।

ମଧ୍ୟଯୁଗୀୟ ଭକ୍ତିମାର୍ଗ ସନ୍ଥମାନେ ହେଲେ : କବିର, ନାନକ (ଉତ୍ତର ପ୍ରଦେଶ), ତୁକାରାମ, ଜ୍ଞାନେଶ୍ୱର (ମହାରାଷ୍ଟ୍ର), ଶଙ୍କର ଦେବ (ଆସାମ), ସାରଳା ଦାସ (ଓଡ଼ିଶା ଚତୁର୍ଦ୍ଦଶ ଶତାବ୍ଦୀ), ପଞ୍ଚସଖା (ଅଚ୍ୟୁତାନନ୍ଦ, ଦୀନକୃଷ୍ଣ, ଜଗନ୍ନାଥ, ବଳରାମ, ଅନନ୍ତ, ଯଶୋବନ୍ତ), ଭୀମଭୋଇ, ଶ୍ରୀଚୈତନ୍ୟ। ଏମାନେ ଯେଉଁ ଭକ୍ତି ମାର୍ଗ ସୃଷ୍ଟି କଲେ ତାହା ମୁଖ୍ୟ ସନାତନ ଧର୍ମ, ବୌଦ୍ଧ ଧର୍ମ, ବୈଷ୍ଣବ ଧର୍ମ, ଶୈବ ଧର୍ମ ପ୍ରଭୃତି ସମସ୍ତ ଧର୍ମର ସମନ୍ୱୟରେ ଓ ବିବର୍ତ୍ତନରେ ଭାରତର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପରିମାଣରେ ଶୂନ୍ୟ-କେନ୍ଦ୍ରିକ ଧର୍ମ ଭାବରେ ପ୍ରତିଷ୍ଠିତ ହେଲା । ଓଡ଼ିଶାର ମହିମା ଧର୍ମ (ଅଲେଖ ଧର୍ମ) ମଧ୍ୟ ଶୂନ୍ୟ କୈନ୍ଦ୍ରିକ ।

ସାରଳା ଦାସଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ନିରାକାର, ନିର୍ଗୁଣ, ଅଲେଖ, ନିରଞ୍ଜନ ବା ଶୂନ୍ୟ-ପୁରୁଷ । ସାରଳା ଦାସ ମହାଭାରତ (ଭୀଷ୍ମପର୍ବ ପଦ ୧୨୦, ୧୨୨-୨୩) କାବ୍ୟରେ କହନ୍ତି :

ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି ଭୁବନେ ସେ ହରି
ମେଘ ମହାଶୂନ୍ୟ ସେ ନିରାକାର ଆଦରି
ବ୍ରହ୍ମ ସ୍ୱରୂପରେ ରୂପ ରେଖ ଧରି
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆଦିକରି
କାଷ୍ଠ ପାଷାଣ ମୂର୍ତ୍ତି କାହିଁ ସେହି
ଯୋଗ ବ୍ରହ୍ମ ନିରାକୂଳ ନିଜେ ଶୂନ୍ୟଦେହୀ ।

ଏହି ମର୍ମରେ ଅଚ୍ୟୁତାନନ୍ଦ କହନ୍ତି:

ଅଣାକାରଂ ମହାଶୂନ୍ୟଂ ଶୂନ୍ୟ ମଧ୍ୟେ ନିରାମୟ
ନିରାମୟମଧ୍ୟେ ଜ୍ୟୋତିଃ ତଦ୍‌ଜ୍ୟୋତି ର୍ଭଗବାନୟମ୍ ।
ଭଲାପଚାରିଲୁ ଗୁପତ ସନ୍ଧି
ଶୂନ୍ୟ ପୁରୁଷ ଶୂନ୍ୟ ପରେବନ୍ଦୀ
ଶୂନ୍ୟ ପୁରୁଷ ଉଦାସରେ ରହେ
ଶୂନ୍ୟ ପୁରୁଷ ସବୁ ମାୟା ବହେ ।
(ଶୂନ୍ୟ ସଂହିତା, ୨ୟ ଅଧ୍ୟାୟ)

'ଧନମାଳୀ' ବୋଲି ବ୍ୟାକୁଳ ହୃଦୟରେ ଶ୍ରୀକୃଷ୍ଣ ବାତ୍ସଲ୍ୟ ପ୍ରେମରେ ଦ୍ରବୀଭୂତ ମାତୃତ୍ୱ ଜଗନ୍ନାଥଙ୍କୁ ପ୍ରାପ୍ତ ହେବା ପାଇଁ ବିଳାପ କରେ; ରାଧା ଓ ମୀରାବାଈ କୃଷ୍ଣ ପ୍ରେମରେ ପ୍ରଗଲ୍ଭା ଓ ଉନ୍ମତ୍ତା ହୋଇ ଜଗନ୍ନାଥଙ୍କୁ ସ୍ୱାମୀ ରୂପେ ପ୍ରାପ୍ତ ହେବାକୁ ପ୍ରୟାସ କରନ୍ତି । ସୁଦାମାଙ୍କ କୃଷ୍ଣ ବନ୍ଧୁତ୍ୱର ଭକ୍ତି ନେଇ କେହି କେବେ ଜଗନ୍ନାଥଙ୍କୁ ହୃଦୟଙ୍ଗମ କରିବାକୁ ତପସ୍ୟାରତ । ଭକ୍ତମାନେ ଜଗନ୍ନାଥଙ୍କ ପ୍ରେମରେ ବିହ୍ୱଳ କାରଣ ଜଗନ୍ନାଥ ପରିକଳ୍ପନା ସବୁଠାରୁ ରହସ୍ୟମୟ । ଭକ୍ତମାନେ ପ୍ରତିଦିନ ନୂଆ ନୂଆ ମନଲାଖି ବିଶେଷଣ ପଦମାନ ଜଗନ୍ନାଥଙ୍କ ପାଇଁ ସୃଷ୍ଟି କରନ୍ତି ଯଥା: ଚକାଡୋଳିଆ, ଜଗାକାଳିଆ, ନୀଳାଚଳିଆ, କାଳିଆଜହ୍ନ ଏଇମିତି ଅନେକ । ଜଗନ୍ନାଥଙ୍କ ପାଇଁ ପ୍ରତିଦିନ ନୂଆ, ନୂଆ କାବ୍ୟ କବିତା ରଚନା, ସାହିତ୍ୟ ସୃଷ୍ଟି, ଢୋଲ ମୃଦଙ୍ଗ, ବାଦ୍ୟଯନ୍ତ୍ର ମାଧ୍ୟମରେ ଭକ୍ତି ସଂଗୀତ ପରିବେଷଣ କରାଯାଏ ଓ ତ୍ରିଭଙ୍ଗୀ ଠାଣିରେ ନୃତ୍ୟ ପରିବେଷଣ କରାଯାଏ; ତଥାପି ଏସବୁ ଭକ୍ତର ମନକୁ ପାଏନା, ଯେପରି ଅନୁଭବ ହୁଏ ଆଉ କିଛି ବାକି ରହିଗଲା, କିଛି ହୁଏ କଳ୍ପନାତୀତ, କିଛି କାଳାତୀତ । ଆମର ଅତି ପ୍ରିୟ ଠାକୁର, ହୃଦୟର ମଣି, ଜଗତର ବନ୍ଧୁ, ଅଭାଗାର ଭାଗ୍ୟ, ଏତେ ନିଜର, ଏତେ ପାଖର ଅଥଚ ଏତେ ଦୂରର, ଆମେ ଚିହ୍ନିବି ପାରୁନା । ସେ ଜ୍ଞାନ ଯୋଗରେ ଆଂଶିକ ଭାବରେ ଉପଲବ୍ଧ; ଆଉ ଅବଶିଷ୍ଟ ଭକ୍ତି ଯୋଗରେ - ଯାହା ବିଶ୍ୱାସର ଏକ ସୀମାହୀନ ପରିସର ।

ଏହିପରି ଭାବରେ ପ୍ରାଗ୍ ବୈଦିକ ଯୁଗରୁ ଆରମ୍ଭ କରି ବୈଦିକ ଯୁଗ, ଜୈନ-ବୁଦ୍ଧଦେବଙ୍କ ଯୁଗ ଶଙ୍କରାଚାର୍ଯ୍ୟଙ୍କ ଯୁଗ, ମଧ୍ୟ ଯୁଗ, ଆଧୁନିକ ଯୁଗ ପର୍ଯ୍ୟନ୍ତ ଭାରତରେ ବହୁ ବିଭିନ୍ନତା ସତ୍ତ୍ୱେ ଏକ ବଳିଷ୍ଠ ଶୂନ୍ୟ କୈନ୍ଦ୍ରିକ ସାଂସ୍କୃତିକ ଚିନ୍ତାଧାରା ନିରବଚ୍ଛିନ୍ନ ଭାବରେ ପ୍ରବାହିତ ହୋଇଆସୁଅଛି । ଏହାହିଁ ଭାରତର ଆଧ୍ୟାତ୍ମିକ ଶକ୍ତିର ପ୍ରାଣକେନ୍ଦ୍ର । ଏହି 'ଶୂନ୍ୟତା' ସଂସ୍କୃତି ମଧ୍ୟ ଜନ୍ମଦେଲା ସାର୍ବଜନୀନ ଅର୍ଥାତ୍ ପ୍ରଭାବଶାଳୀ ଏକମାତ୍ର ଆଧ୍ୟାତ୍ମିକ ସଂଖ୍ୟା ଶୂନକୁ ଯାହା ବର୍ତ୍ତମାନ ସାରା ପୃଥିବୀର ସମ୍ପତ୍ତି ।

କିନ୍ତୁ ପୃଥିବୀର ସମସ୍ତ ଭୌତିକ, ବୈଷୟିକ ବା ବସ୍ତୁବାଦୀ ମାୟା ସଭ୍ୟତାର ଅନ୍ତରାଳେ ଲୁକ୍କାୟିତ ଚିରନ୍ତନ ପରମସତ୍ୟ ହେଉଛି ଶୂନ୍ୟତା ବା ନିର୍ଗୁଣବ୍ରହ୍ମନ୍ ବା ଶୂନ୍ୟପୁରୁଷ ଶ୍ରୀଜଗନ୍ନାଥ । ସେ ଉଭୟ ଶୂନ୍ୟଜଗତ ଓ ପୂର୍ଣ୍ଣ ଜଗତର ନାଥ ଜଗନ୍ନାଥ । ଏହାର ଜନ୍ମ କାଳାତୀତ, ଅବ୍ୟକ୍ତ, ଅବର୍ଣ୍ଣନୀୟ ଓ ଅଜ୍ଞେୟ ।

ଶ୍ରୀଜଗନ୍ନାଥ, ସ୍ୱତନ୍ତ୍ର ସଂଖ୍ୟା, ୨୦୧୪



# ଗଣିତ ବିଶେଷଜ୍ଞ : ଶ୍ରୀ ଗଣେଶ

ବିଦ୍ୟାର ଦେବତା ଶ୍ରୀ ଗଣେଶ ଯେ ଅତ୍ୟନ୍ତ ବୁଦ୍ଧିମାନ୍ ଏହା ନିମ୍ନ ଉଦାହରଣରୁ ସୁସ୍ପଷ୍ଟ । ଏକଦା ଦେବ ଦେବ ଶ୍ରୀ ମହାଦେବ ତାଙ୍କର ଦୁଇପୁତ୍ର ଗଣେଶ ଓ କାର୍ତ୍ତିକେୟଙ୍କର ବୁଦ୍ଧି ପରୀକ୍ଷା କରିବା ନିମନ୍ତେ ଏକ ଯୋଜନା ସ୍ଥିର କଲେ । ତଦନୁଯାୟୀ ଦୁଇ ଭାଇଙ୍କ ମଧ୍ୟରୁ ଯେ ବିଶ୍ୱବ୍ରହ୍ମାଣ୍ଡ ପ୍ରଦକ୍ଷିଣ କରି ପ୍ରଥମେ ପ୍ରତ୍ୟାବର୍ତ୍ତନ କରିବ, ସେ ହିଁ ଅଧିକ ବୁଦ୍ଧିମାନ ବିବେଚିତ ହେବ । କାର୍ତ୍ତିକଙ୍କର ବାହନ ମୟୂର ଯେ କି କ୍ଷିପ୍ରଗତିରେ ଉଡ଼ିପାରେ । କିନ୍ତୁ ଗଣେଶଙ୍କର ବାହନ କ୍ଷୁଦ୍ର ମୂଷିକଟିଏ ମାତ୍ର । ବିଶାଳ ବିଶ୍ୱକୁ କ୍ଷୁଦ୍ର ମୂଷିକ ପରିକ୍ରମା କରିବା ଅତ୍ୟନ୍ତ ଦୁରୂହ ବିଷୟ । ଏହି କ୍ଷୁଦ୍ର ମୂଷିକ ବାହନରେ ଉପବେଶନ କରି ଗଣେଶ ବୃହତ୍ ବିଶ୍ୱ ପରିକ୍ରମା କରିବା ସଂପୂର୍ଣ୍ଣ ଅସମ୍ଭବ । ନିଜର ବିଜୟ ସୁନିଶ୍ଚିତ; ଏହା ଭାବି କାର୍ତ୍ତିକ ମନେ ମନେ ପୁଲକିତ ହେଲେ । ପିତାଙ୍କ ଆଦେଶ ମାତ୍ରେ କାଳ ବିଳମ୍ୱ ନ କରି ବିଜୟ ଲାଭର ଆଶାନେଇ ଉତ୍ଫୁଲ୍ଲ ଚିତ୍ତରେ ମୟୂର ବାହନରେ ଉପବେଶନ କରି କାର୍ତ୍ତିକ ବିଶ୍ୱ ପରିକ୍ରମା ନିମନ୍ତେ ଅଗ୍ରସର ହେଲେ ।

କାର୍ତ୍ତିକ ଆଖିରୁ ଅଦୃଶ୍ୟ ହୋଇଗଲା ପରେ ଗଣେଶ, ମୂଷିକ ପୃଷ୍ଠରେ ଆରୋହଣ କରି ଧୀରେ ଧୀରେ ପିତାଙ୍କ ଚତୁଃପାର୍ଶ୍ୱରେ ଘୂରି ଆସିଲେ । ଅକ୍ଲେଶରେ ପିତାଙ୍କୁ ପ୍ରଦକ୍ଷିଣ କରି ବିନମ୍ରରେ ଯୋଡ଼ହସ୍ତ ସହ ପିତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ ।

ବିଶ୍ୱ ପରିକ୍ରମା କରି ବିଜୟ ଗର୍ବରେ ଉଲ୍ଲସିତ ହୋଇ ପିତାଙ୍କ ନିକଟକୁ କାର୍ତ୍ତିକ ପ୍ରତ୍ୟାବର୍ତ୍ତନ କଲେ । ପିତାଙ୍କ ସମ୍ମୁଖରେ ଗଣେଶଙ୍କୁ ଦେଖି ନିଜର କୃତି ପାଇଁ ସଗର୍ବରେ ପିତାଙ୍କ ମୁଖକୁ ଚାହିଁ ରହିଲେ ବୁଦ୍ଧିମତ୍ତାର ସ୍ୱୀକୃତି ଅପେକ୍ଷାରେ ।

ଅଳ୍ପ ହସି ମହାଦେବ ଗଣେଶଙ୍କୁ ଜିଜ୍ଞାସା କଲେ– "କାର୍ତ୍ତିକ ସମଗ୍ର ବିଶ୍ୱ ପରିକ୍ରମା କରି ଫେରିଆସିବା ସ୍ଥଳେ ତୁମେ ତ କେବଳ ମୋ ଚତୁଃପାର୍ଶ୍ୱରେ କେତେଥର ଘୂରି ଆସିଛ ।"

ବିନୟ ପୂର୍ବକ ଗଣେଶ ଉତ୍ତର ଦେଲେ, "ଯେ ସମଗ୍ର ବିଶ୍ୱର ନିୟନ୍ତା, ବିଶ୍ୱ ବ୍ରହ୍ମାଣ୍ଡ ଯାହାଙ୍କର ପଦତଳେ ତାଙ୍କୁ ପ୍ରଦକ୍ଷିଣ କରିବାର ଅର୍ଥ ଏକାଧିକବାର ବିଶ୍ୱ ପ୍ରଦକ୍ଷିଣ ସହ ସମାନ ନୁହେଁ କି ?"

ଦେବ ଦେବ ମହାଦେବ ଚମତ୍କୃତ ହୋଇଥିଲେ ଗଣେଶଙ୍କର ଅସାଧାରଣ ବୁଦ୍ଧିମତ୍ତାର ପରିଚୟ ପାଇଁ । ବୁଦ୍ଧିବଳରେ ବିଶ୍ୱବ୍ରହ୍ମାଣ୍ଡର ଚତୁଃପାର୍ଶ୍ୱ ପରିକ୍ରମା ନ କରି ମଧ୍ୟ ଗଣେଶ ବିଶ୍ୱବିଜୟୀ ହୋଇପାରିଥିଲେ । ପିତାଙ୍କର ଆଶୀର୍ବାଦ ଓ ବରଦାନ ଲାଭ କରି ଶ୍ରୀଗଣେଶ ଗଣପତି ନାମରେ ନାମିତ ହୋଇଥିଲେ ତଥା ସର୍ବ ଦେବତାଙ୍କ ଅଗ୍ର ଭାଗରେ ପୂଜାଅର୍ଚ୍ଚନା ଲାଭ କରିବାର ସୌଭାଗ୍ୟ ପ୍ରାପ୍ତ ହୋଇଥିଲେ । ଗଜ ମସ୍ତକ ଧାରଣ କରି ମଧ୍ୟ ଅସାଧାରଣ ବୁଦ୍ଧିର ପରିଚୟ ଦେଇ ଶ୍ରୀଗଣେଶ ସମଗ୍ର ବିଶ୍ୱରେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ସୃଷ୍ଟି କରିଛନ୍ତି ।

ଶ୍ରୀଗଣେଶ ମଧ୍ୟ ବିଘ୍ନରାଜ । ସମସ୍ତ ବିଘ୍ନକୁ ସେ ଖଣ୍ଡନ କରିଥାଆନ୍ତି ।

'ନିର୍ବିଘ୍ନଂ କୁରୁମେ ଦେବ ସର୍ବ କାର୍ଯ୍ୟେସୁ ସର୍ବଦା'

କାରଣ ସେ ଗଣିତଜ୍ଞ ହୋଇଥିବାରୁ ସବୁକାର୍ଯ୍ୟ କରିବା ପୂର୍ବରୁ ଆବଶ୍ୟକ ଆକଳନ କରିଥାଆନ୍ତି । ହିନ୍ଦୁ ସଂସ୍କୃତି ଅନୁସାରେ ବିଭିନ୍ନ ଦେବ-ଦେବୀଙ୍କୁ ଭିନ୍ନ ଭିନ୍ନ କାର୍ଯ୍ୟ ନିମନ୍ତେ ପୂଜା, ଆରାଧନା କରାଯାଇଥାଏ । କିନ୍ତୁ ପ୍ରତ୍ୟେକ ପୂଜାର ପ୍ରାରମ୍ଭରେ ସର୍ବ ପ୍ରଥମେ କଳସ ସ୍ଥାପନା କରି ଶ୍ରୀ ଗଣେଶଙ୍କୁ ଆବାହନ କରି ପୂଜା ଅର୍ଚ୍ଚନା କରାଯାଇଥାଏ । ସର୍ବ ଦେବତାଙ୍କ ଅଗ୍ରଭାଗରେ ପୂଜା ପାଉଥିବାରୁ ସେ ଗଣପତି । ସେ ମଧ୍ୟ ବିଘ୍ନନାଶନ ବିଘ୍ନରାଜ । ପ୍ରତ୍ୟେକ କାର୍ଯ୍ୟରେ ସର୍ବଦା ସହାୟ ହୋଇ ନିର୍ବିଘ୍ନରେ କାର୍ଯ୍ୟ ସମାପନାର୍ଥେ ତାଙ୍କୁ ଧ୍ୟାନ କରାଯାଏ ।

ଗଣେଶଙ୍କୁ ବିଦ୍ୟାର ଦେବତା ରୂପେ ପୂଜା କରାଯାଏ ମଧ୍ୟ । ସେ ବିଦ୍ୟାଦାତା । ସକଳ ବିଦ୍ୟାର ଆଧାର । ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଗଣିତ ମଧ୍ୟ ସମସ୍ତ ବିଦ୍ୟାର ଆଧାର । ସକଳ ବିଦ୍ୟାରେ ଗଣିତର ପ୍ରୟୋଗ ଅପରିହାର୍ଯ୍ୟ ।

ଯଥାଶିଖା ମୟୂରାଣାଂ ନାଗାଣାମ୍ ମଣୟୋଃ ଯଥା

ତଦ୍‌ବତ୍ ବେଦାଙ୍ଗ ଶାସ୍ତ୍ରାଣାଂ ଗଣିତ ମୂର୍ଦ୍ଧନିସ୍ଥିତିମ୍ ।

(ବେଦାଙ୍ଗ ଜ୍ୟୋତିଷ) ଖ୍ରୀଷ୍ଟପୂର୍ବ ୫୦୦

ମୟୂର ମସ୍ତକର ଶିଖା ତା'ର ଶୋଭା ବର୍ଦ୍ଧନ କରିଥାଏ । ସର୍ପରାଜ ନାଗର ମସ୍ତକରେ ଥିବା ମଣି ତାକୁ ନାଗରାଜର ଆଖ୍ୟା ଦେଇଥାଏ । ମୟୂରର ଶିଖା ନାଗର ମଣି ଭଳି ସମସ୍ତ ବିଦ୍ୟାରେ ଗଣିତର ମହତ୍ତ୍ୱ ପ୍ରତିପାଦିତ ହୁଏ । ସମସ୍ତ ବେଦ

ଶାସ୍ତ୍ରରେ ଗଣିତ, ମଣିର ମାନ୍ୟତା ଲାଭ କରିଛି। ସକଳ ଶାସ୍ତ୍ରରେ ମଧ୍ୟ ଗଣିତକୁ ପ୍ରାଧାନ୍ୟ ଦିଆଯାଇଅଛି । ଗଣିତର ପ୍ରୟୋଗ ସବୁ ବେଦ ଶାସ୍ତ୍ରରେ ଦେଖାଯାଏ ।

ମନୁଷ୍ୟର ଦୈନନ୍ଦିନ ଜୀବନରେ ଗଣିତର ଭୂମିକା ଅପରିହାର୍ଯ୍ୟ । ଗୃହ ନିର୍ମାଣ ଠାରୁ ଆରମ୍ଭ କରି ଯଜ୍ଞବେଦୀ ନିର୍ମାଣ, କ୍ରୟ-ବିକ୍ରୟ, ଗ୍ରହ ନକ୍ଷତ୍ରମାନଙ୍କର ଗତିବିଧ ନିରୂପଣ ଆଦି ଅନେକ ପ୍ରଖର କାର୍ଯ୍ୟରେ ଗଣିତର ଆବଶ୍ୟକତା ରହିଛି ।

ଗଣପତି, ଦେବତାମାନଙ୍କର ପତି । ଗଣପତି ମଧ୍ୟ ଗଣନାର ପତି । ଗଣନ ଅର୍ଥାତ୍ ଗଣିତ ସହ ଗଣେଶଙ୍କର ସଂପର୍କ ନିବିଡ଼ । ଆଧୁନିକ ଯୁଗରେ ଗଣନା ନିମନ୍ତେ ଗଣନଯନ୍ତ୍ର ବା କମ୍ପ୍ୟୁଟର ବ୍ୟବହୃତ ହେଲାଣି । ଏହାକୁ ଆଧାର କରି ଅନେକ କଷ୍ଟସାଧ କାର୍ଯ୍ୟ ସହଜ ଓ ସୁଲଭ ଭାବରେ ସମାଧାନ ହୋଇପାରୁଛି । କମ୍ପ୍ୟୁଟର ମାଧ୍ୟମରେ ମନୁଷ୍ୟ ଜ୍ଞାନର ଚରମ ଶିଖରରେ ଉପନୀତ ହୋଇପାରିଛି । ନୋବେଲ୍ ବିଜେତା ପାକିସ୍ତାନୀ ପଦାର୍ଥ ବିଜ୍ଞାନୀ ଡକ୍ଟର ଅବଦୁଲ୍ ସାଲେମ୍‌ଙ୍କ ମତରେ ଡିଜିଟାଲ୍ କମ୍ପ୍ୟୁଟର ଶ୍ରୀ ଗଣେଶ ହେଲେ ଏହାର ମାଉସ୍ ଗଣେଶଙ୍କ ବାହନ ମୂଷିକ । ମୂଷା ପୃଷ୍ଠରେ ବିରାଜମାନ କରି ଗଣେଶ ବିଶ୍ୱପ୍ରଦକ୍ଷିଣ କରିବା ଭଳି ମାଉସ୍‌କୁ ବ୍ୟବହାର କରି କମ୍ପ୍ୟୁଟର୍ ବିଶ୍ୱବ୍ରହ୍ମାଣ୍ଡର ତଥ୍ୟ ଯୋଗାଇ ଦେଉଛି । ଏଣୁ ଆଧୁନିକ ଯୁଗର ଗଣନ ଯନ୍ତ୍ର କମ୍ପ୍ୟୁଟର୍ ଶ୍ରୀ ଗଣେଶ ଓ ଏହାର ମାଉସ୍ ହେଉଛି ଗଣେଶଙ୍କର ବାହନ ମୂଷିକ । ଅତଏବ ଗଣେଶ ହେଉଛନ୍ତି ଗଣନ ବିଦ୍ୟା (ଗଣିତ)ର ଈଶ ।

ବିଦ୍ୟାଳୟ ଠାରୁ ଆରମ୍ଭ କରି ମହାବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟ ସ୍ତରରେ ଗଣେଶଙ୍କର ପୂଜା ଆରାଧନା କରାଯାଏ । ହସ୍ତରେ ଲଡୁ ଧାରଣ ପୂର୍ବକ ହସହସ ମୁଖରେ ଛାତ୍ରଛାତ୍ରୀମାନଙ୍କୁ ସ୍ୱାଗତ କରନ୍ତି ପ୍ରଭୁ ଲମ୍ବୋଦର । ବିଦ୍ୟାର ଦେବତାଙ୍କ ହସ୍ତରେ ଯଷ୍ଟି ପରିବର୍ତ୍ତେ ଲଡୁ ଶୋଭାପାଉଛି । ଏହାର ଗୂଢ଼ତତ୍ତ୍ୱକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ବିଦ୍ୟା ଲଡୁ ପରି ମିଷ୍ଟ ଓ ସ୍ୱାଦିଷ୍ଟ । ଅନ୍ୟ ଅର୍ଥରେ ବିଦ୍ୟାଦାତା ଦଣ୍ଡ ମାଧ୍ୟମରେ ନୁହେଁ, ମିଷ୍ଟାନ୍ନ ମାଧ୍ୟମରେ ବିଦ୍ୟାଦାନ କରିବାର ପଦ୍ଧତି ଦ୍ୱାରା ଛାତ୍ରଛାତ୍ରୀମାନଙ୍କୁ ବିଦ୍ୟାପ୍ରତି ଆକୃଷ୍ଟ କରାଇବାର ଏକ ସୁନ୍ଦର ପ୍ରଥା ଅବଲମ୍ବନ କରିଛନ୍ତି । ଏହା ମନୁଷ୍ୟ ସମାଜକୁ ଶ୍ରୀଗଣେଶଙ୍କର ବାର୍ତ୍ତା । ଦଣ୍ଡ ବିଧାନ ପରିବର୍ତ୍ତେ କୋମଳମତି ବାଳକ ବାଳିକାମାନଙ୍କୁ ମିଷ୍ଟ ଭାଷା ଦ୍ୱାରା ବଶୀଭୂତ କରାଇ ବିଦ୍ୟା ପ୍ରତି ଆକୃଷ୍ଟ କରାଇବା । ଶିଶୁକୁ ମିଷ୍ଟଭାଷ ସହିତ ମିଷ୍ଟାନ୍ନ କିମ୍ବା ସେହି ଭଳି କିଛି ଉପାୟ ଦ୍ୱାରା ପ୍ରଲୋଭିତ କରି ତଥା ବଶୀଭୂତ କରାଇ ବିଦ୍ୟାପ୍ରତି ଆକୃଷ୍ଟ କରାଯାଇପାରେ ।

ଏହି ଉପାୟ ଅବଲମ୍ବନ କରି ଗ୍ରୀକ୍ ଗଣିତଜ୍ଞ ଥେଲସ୍ ଏକ ଶିଶୁକୁ ବିଦ୍ୟାପ୍ରତି ଆକୃଷ୍ଟ କରାଇବାର ଏକ ଜ୍ୱଳନ୍ତ ଉଦାହରଣ ସର୍ବ ସମ୍ମୁଖରେ ଦେଇ ପାରିଛନ୍ତି । ଏକଦା ବାଣିଜ୍ୟ ଉପଲକ୍ଷେ ଗ୍ରୀକ୍ ବଣିକ ଥେଲସ୍ ମିଶର ଦେଶକୁ ଆସିବା ଅବସରରେ ଉପଲବ୍ଧି କଲେ ଯେ ମିଶରବାସୀ ଜ୍ୟାମିତି ବିଦ୍ୟାରେ ଅତୀବ ଦକ୍ଷ । ନୀଳନଦୀରେ ପ୍ରତିବର୍ଷ ବନ୍ୟାସୃଷ୍ଟି ହେବା ଦ୍ୱାରା ଚାଷଜମିର ସୀମାରେଖା ସ୍ୱରୂପ ଦିଆଯାଇଥିବା ହିଡ଼ଗୁଡ଼ିକ ବନ୍ୟାରେ ପ୍ଲାବିତ ହୋଇ ଭାଙ୍ଗି ନଷ୍ଟ ହୋଇଯାଏ । ବନ୍ୟା ଛାଡ଼ିଗଲା ପରେ ପୁନରାୟ ଜମିର ସୀମା ରେଖା ନିରୂପଣ କରି ହିଡ଼ ତିଆରି କରିବାକୁ ହୁଏ । ସେଥି ନିମନ୍ତେ ମାପଚୁପ ବ୍ୟବସ୍ଥାକୁ ପ୍ରାଧାନ୍ୟ ଦିଆଯାଇ କ୍ଷେତର ପରିମିତି ଅନୁସାରେ ହିଡ଼ ଦିଆଯାଇଥାଏ । ଚାଷଜମିର ଏହି ଭଙ୍ଗାଗଢ଼ା ଆବଶ୍ୟକତା ଦୃଷ୍ଟିରୁ ମିଶରରେ ଦକ୍ଷ ଜ୍ୟାମିତିକ ଜ୍ଞାନର ସୃଷ୍ଟି ।

ଏହା ଅବଲୋକନ ପୂର୍ବକ ହୃଦୟଙ୍ଗମ କରି ଏହି ବିଦ୍ୟା ପ୍ରତି ଥେଲସ୍ ଆକୃଷ୍ଟ ହେଲେ । ଏହି ବିଦ୍ୟାକୁ ଆହରଣ କରିବାର ଚେଷ୍ଟାରେ ନିଜକୁ ବିନିଯୋଗ କଲେ । ଜ୍ୟାମିତିକ ଜ୍ଞାନଲାଭ କରି ଗ୍ରୀସ୍‌କୁ ଫେରିବା ଅବସରରେ ସେଠାରେ ଏହି ଜ୍ଞାନ କିପରି ବିତରଣ ହୋଇପାରିବ, ସେହି ପ୍ରୟାସରେ ଲାଗି ପଡ଼ିଲେ ।

ସର୍ବ ପ୍ରଥମେ ସେ ଏକ ବାଳକକୁ ମାଧ୍ୟମ କରି ତା' ଜରିଆରେ ଜ୍ୟାମିତି ବିଦ୍ୟାର ପ୍ରସାର ନିମନ୍ତେ ଚେଷ୍ଟା ଚଳାଇଲେ । ଅତି ଯତ୍ନରେ ନିଜର ସମସ୍ତ ଆଗ୍ରହକୁ ବିନିଯୋଗ କରି ବାଳକଟିକୁ ଜ୍ୟାମିତି ଶିକ୍ଷା ଦେବାକୁ ଆରମ୍ଭ କଲେ । କିନ୍ତୁ ଶିଶୁଟି ନିଜର ଅନାଗ୍ରହ ପ୍ରକାଶ କରି ଜ୍ୟାମିତି ବିଦ୍ୟା ପ୍ରତି ବିତସ୍ପୃହ ହେଲା । ଶିଶୁଟିର ଏତାଦୃଶ ଚିନ୍ତା ଧାରାରେ ବ୍ୟଥିତ ହୋଇ ଥେଲ୍‌ସ ବ୍ୟତିବ୍ୟସ୍ତ ହୋଇପଡ଼ିଲେ ।

ଏକଦା ଜ୍ୟାମିତି ଶିକ୍ଷା ଦେବାର ଉପାୟ ଚିନ୍ତା କରୁ କରୁ ସେ ଏକ ସିଦ୍ଧାନ୍ତରେ ଉପନୀତ ହେଲେ । ହଠାତ୍ ତାଙ୍କର ଚିନ୍ତାଗ୍ରସ୍ତ ମୁଖରୁ ବିଷାଦର ବାଦଲ ଅପସରି ଯାଇ ଆଶାର ଆଲୋକରେ ସମଗ୍ର ମୁଖମଣ୍ଡଳ ଆଲୋକିତ ହେଲା । ମନରେ ଆଶାର କ୍ଷୀଣ ରେଖାଟିଏର ଝଲକ ଉଦ୍ରେକ ହେଲା ।

ଉକ୍ତ ଶିଶୁଟିକୁ ଜ୍ୟାମିତି ପ୍ରତି ଆକୃଷ୍ଟ କରାଇବା ନିମନ୍ତେ ପ୍ରତିଦିନର ବିଦ୍ୟାଶିକ୍ଷାର ପ୍ରତିଦାନ ସ୍ୱରୂପ ମୁଦ୍ରାଟିଏ ପ୍ରଦାନ କରିବାର ପ୍ରସ୍ତାବ ରଖିଲେ । ଏହି ଅଭିନବ ଉପାୟରେ ଶିଶୁଟିକୁ ରାଜି କରାଇ ପାରିବାର ଆନନ୍ଦରେ ଥେଲସ୍ ଅଭିଭୂତ ହୋଇଗଲେ । ଶିଶୁଟି ମୁଦ୍ରାର ଲୋଭ ସମ୍ବରଣ କରି ନ ପାରି ପ୍ରତିଦିନ ଶିକ୍ଷା ଗ୍ରହଣ ନିମନ୍ତେ ଆସିବାକୁ ଲାଗିଲା । କିଛି କିଛି ପରିମାଣରେ ଜ୍ୟାମିତି ଶିକ୍ଷା ଲାଭ କରି ଫେରିଲା । କିଛି ଦିନ ଉତ୍ତାରୁ ଥେଲସ୍ ନିରୀକ୍ଷଣ କଲେ, ଶିଶୁଟି ଜ୍ୟାମିତି ପ୍ରତି

ଧୀରେ ଧୀର ଆକୃଷ୍ଟ ହେବାରେ ଲାଗିଛି ଓ ଅଧିକରୁ ଅଧିକ ଜ୍ୟାମିତି ଶିକ୍ଷା ଲାଭ କରିବାର ଆଗ୍ରହ ପରିପ୍ରକାଶ କରୁଛି ।

ଶିଶୁଟିକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ କୌତୂହଳରେ ଏକଦା ଥେଲସ୍ ଆଉ ଅଧିକ ଜ୍ୟାମିତି ଶିକ୍ଷା ଦେଇ ପାରିବେ ନାହିଁ ବୋଲି ଘୋଷଣା କଲେ । ଥେଲ୍‌ସଙ୍କର ଏହି ପ୍ରକାର ସିଦ୍ଧାନ୍ତରେ ବାଳକଟି ଦୁଃଖରେ ମ୍ରିୟମାଣ ହୋଇ ଉଠିଲା ଓ ମନେ ମନେ ଏକ ଉପାୟ ଚିନ୍ତାକଲା । ଥେଲସ୍‌ଙ୍କୁ ବିନମ୍ର ସହକାରେ କହିଲା ଯେ ସେ ବିଦ୍ୟାଗ୍ରହଣ ନିମନ୍ତେ ଗୁରୁଦକ୍ଷିଣା ସ୍ୱରୂପ ଥେଲସ୍‌ଙ୍କୁ ପ୍ରତିଦିନ ମୁଦ୍ରାଟିଏ ଭେଟି ଦେବ । ପିଲାଟିର ବିଦ୍ୟାଗ୍ରହଣର ଏତାଦୃଶ ଆଗ୍ରହ ଅନୁଭବ କରି ଥେଲସ୍ ମନେ ମନେ ପୁଲକିତ ହେଲେ । ଅତ୍ୟନ୍ତ ଆନନ୍ଦର ସହ ମୁଦ୍ରା ବିନିମୟରେ ଶିକ୍ଷା ଦେବାଲାଗି ତତ୍‌କ୍ଷଣାତ୍ ସମ୍ମିତି ପ୍ରଦାନ କଲେ ।

ଏହି ପଦ୍ଧତି ଅନୁସାରେ ଥେଲସ୍ ବାଳକଟିକୁ ପ୍ରଦାନ କରିଥିବା ସମସ୍ତ ମୁଦ୍ରା ଫେରସ୍ତ ପାଇଲା ପରେ ମଧ ଅନେକ ଅଧିକ ମୁଦ୍ରା ପ୍ରାପ୍ତ ହେଲେ ।

ଥେଲସ୍‌ଙ୍କର ଏହି ଛାତ୍ରଟି କାଳକ୍ରମେ ଜଣେ ଦକ୍ଷ ଗଣିତଜ୍ଞ ଭାବରେ ପରିଚିତ ହେଲେ । ସେ ହେଉଛନ୍ତି ସ୍ୱନାମଧନ୍ୟ ପ୍ରସିଦ୍ଧ ଗ୍ରୀସ୍ ଗଣିତଜ୍ଞ 'ପିଥାଗୋରାସ୍' ।

ଥେଲସ୍‌ଙ୍କର ଶିକ୍ଷାଦାନ କରିବାର ଏହି ଅଦ୍ଭୁତ ପ୍ରଣାଳୀ ଦ୍ୱାରା ଗ୍ରୀସ୍‌ର ମହାନ୍ ଗଣିତଜ୍ଞ ସୃଷ୍ଟି ହୋଇ ପାରିଥିଲେ । ପିଲାଙ୍କୁ ଶିକ୍ଷାପ୍ରତି ଆକୃଷ୍ଟ କରାଇବାର ଅନେକ ସରଳ ପଦ୍ଧତି ଥିବା ସତ୍ତ୍ୱେ ଦଣ୍ଡ ମାଧମରେ ଶିକ୍ଷା ଦାନ କରିବା ଆଦୌ ଗ୍ରହଣୀୟ ନୁହେଁ । ଏହା ଦ୍ୱାରା ପିଲାଙ୍କର ସୁସ୍ଥ ମାନସିକତା ହ୍ରାସ ପାଏ ତଥା ବିଦ୍ୟାପ୍ରତି ଅନାଗ୍ରହ ସୃଷ୍ଟି ହୁଏ ।

ଥେଲସ୍‌ଙ୍କର ଶିକ୍ଷାଦାନରେ ଅସୀମ ଧୈର୍ଯ୍ୟ ହେତୁ ଗ୍ରୀସ୍ ଦେଶ ପିଥାଗୋରାସ୍‌ଙ୍କ ଭଳି ପୃଥିବୀ ପ୍ରସିଦ୍ଧ ଗଣିତଜ୍ଞ ଲାଭ କରି ବିଶ୍ୱରେ ଖ୍ୟାତି ଲାଭ କରିପାରିଲା । ଶିକ୍ଷକମାନଙ୍କର ଶିକ୍ଷା ଜଗତକୁ ଏହିପରି ଅବଦାନ ରହିଲେ ଭବିଷ୍ୟତରେ ଅନେକ ପିଥାଗୋରାସ୍ ସୃଷ୍ଟି ହୋଇ ପାରିବେ ଏଥିରେ ସନ୍ଦେହ ନାହିଁ । ଗଣେଶଙ୍କ ହସ୍ତରେ ଲଡ଼ୁ ଓ ଥେଲ୍‌ସଙ୍କର ମୁଦ୍ରା ଶିକ୍ଷକ ଓ ବିଦ୍ୟାର୍ଥୀମାନଙ୍କୁ ଏକ ନୂତନ ମାର୍ଗ ଦର୍ଶାଇବାରେ ସାହାଯ୍ୟ କରିବ ବୋଲି ଆଶା କରେ ।

ଗଣିତ ବିଚିତ୍ରା, ଜୁନ୍ ୨୦୧୪



# ସଂଗୀତ ବିଶେଷଜ୍ଞା : ମାତା ସରସ୍ୱତୀ

ତମସା ନଦୀ କୂଳରେ ମହର୍ଷି ବାଲ୍ମିକିଙ୍କର ଆଶ୍ରମ । ଏକଦା ଭ୍ରମଣ କରିବା ଅବସରରେ ବ୍ୟାଧ ଦ୍ୱାରା ଶରବିଦ୍ଧ ରକ୍ତରଞ୍ଜିତ ଏକ କ୍ରୌଞ୍ଚପକ୍ଷୀ ଯନ୍ତ୍ରଣାରେ ଛଟପଟ ହୋଇ ଧୀରେ ଧୀରେ ତାଙ୍କ ନିକଟରେ ଭୂପତିତ ହୋଇ କରୁଣ ବିଳାପ କରିବାକୁ ଲାଗିଲା । ପକ୍ଷୀଯୁଗଳଙ୍କର ଏହି ଦୟନୀୟ ଅବସ୍ଥା ଅବଲୋକନକରି ମହର୍ଷି ବାଲ୍ମିକିଙ୍କର ହୃଦୟ ଦୟା କରୁଣାରେ ବିଗଳିତ ହେବାକୁ ଲାଗିଲା । ଚରମ ଦୁଃଖରେ ଦ୍ରବୀଭୂତ ବାଲ୍ମିକିଙ୍କର ହୃଦୟକନ୍ଦରରୁ ଝରି ଆସିଲା ଶୋକର ଉଚ୍ଛ୍ୱାସ । ଏହି ଉଚ୍ଛ୍ୱାସରୁ ସୃଷ୍ଟି ହେଲା ଶ୍ଳୋକର ନିର୍ଯାସ:

"ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତଃ ସମାଃ,
ଯତ କ୍ରୌଞ୍ଚ ମିଥୁନାଦେକମବଧଃ କାମ ମୋହିତମ୍" ।

ଏହା ବାଲ୍ମିକିଙ୍କର କଣ୍ଠ ନିଃସୃତ ସରସ୍ୱତୀଙ୍କ କୃପାର ପ୍ରସାଦ । କୃପା ପ୍ରଦାନ ନିମନ୍ତେ ମାତା ସରସ୍ୱତୀ ଯୋଗ୍ୟ ବ୍ୟକ୍ତିର ଅନ୍ୱେଷଣ ନିମନ୍ତେ ପୃଥିବୀ ପୃଷ୍ଠରେ ପରିକ୍ରମା କରୁଥିବା ଅବସରରେ, ମହର୍ଷି ବାଲ୍ମିକିଙ୍କୁ ଯୋଗ୍ୟ ବ୍ୟକ୍ତି ରୂପେ ଚୟନ କଲେ । ତାଙ୍କର ଅସାଧାରଣ ପ୍ରତିଭାରେ ମୁଗ୍ଧା ସରସ୍ୱତୀ ତାଙ୍କ କଣ୍ଠରେ ବିଜେ କରିଥିଲେ । ଯାହା ଫଳରେ ଏହି ଛନ୍ଦମୟ ଶ୍ଳୋକ ବାଲ୍ମିକିଙ୍କର କଣ୍ଠରୁ ନିର୍ଗତ ହୋଇଥିଲା । ମାତା ସରସ୍ୱତୀଙ୍କ କୃପା ଲାଭକରି ହୃଦୟର ଶୋକ, ଶ୍ଳୋକ ରୂପରେ ଝରିଆସିଥିଲା । ଏହା ହେଉଛି ଆଦିଶ୍ଳୋକ ଓ ଏହାର ସ୍ରଷ୍ଟା ମହର୍ଷି ବାଲ୍ମିକି ଆଦିକବି ନାମରେ ଖ୍ୟାତ ।

ଏହି ଶ୍ଳୋକ ମାଧ୍ୟମରେ ଦେବୀ ସରସ୍ୱତୀ ଜଗତର କଲ୍ୟାଣ ସାଧନ କରିଥିଲେ । ବୁଦ୍ଧି, ଜ୍ଞାନ ଓ ବିଦ୍ୟା ରୂପରେ ସମଗ୍ର ଜଗତ ତାଙ୍କର କୃପାକୁ ଅନୁଭବ କଲେ ।

ଶୁଭ୍ରବସ୍ତ୍ର ପରିହିତା ମରାଳବାହିନୀ ମାଆ ସରସ୍ୱତୀ ଏକାଧାରରେ ବିଦ୍ୟା ଓ କଳାର ଦେବୀ । ତାଙ୍କର ଏକ ହସ୍ତରେ ପୁସ୍ତକ ଶୋଭା ପାଉଥିବା ସ୍ଥଳେ ଅପର

ହସ୍ତରେ ବୀଣା ଶୋଭାପାଏ । ଦେବଗୁରୁ ବୃହସ୍ପତିଙ୍କ ସହ ମାତା ସରସ୍ୱତୀଙ୍କର ତୁଳନା କରାଯାଇଅଛି । ଦେବଗୁରୁ ବୃହସ୍ପତି ଯେଉଁ ଭଳି ବାକ୍‌ପଟୁ, ବିଦ୍ୱାନ, ଦେବୀ ସରସ୍ୱତୀ ମଧ ବିଦୂଷୀ, ବାଙ୍ମୟୀ । ଅଜ୍ଞାନ ତିମିର ଦୂରକରି ଜ୍ଞାନର କିରଣ ବିକିରଣ କରିବା ନିମନ୍ତେ ମାତା ସରସ୍ୱତୀଙ୍କୁ ପୂଜା, ଅର୍ଚ୍ଚନା ତଥା ଆରାଧନା କରାଯାଏ । ଧବଳ ବର୍ଣ୍ଣା, ବିଦ୍ୟା ପ୍ରଦାୟିନୀ ଦେବୀ ସରସ୍ୱତୀ ସକଳ ବିଦ୍ୟାର ଆଧାର । ଧବଳବର୍ଣ୍ଣ ଏକ ସାତ୍ତ୍ୱିକ ବର୍ଣ୍ଣ । ତେଣୁ ସାତ୍ତ୍ୱିକ ଭାବର ପ୍ରତୀକ ମାଆ ସରସ୍ୱତୀ ସଦା ମଙ୍ଗଳ କାରିଣୀ ।

ଋକ୍‌ବେଦରେ ବାଗ୍‌ଦେବୀଙ୍କ ନାମ ସରସ୍ୱତୀ । ଏହି ଦେବୀଙ୍କ ଉପାସନାରେ ସମସ୍ତ ପ୍ରକାର ସିଦ୍ଧିଲାଭ ହୋଇଥାଏ । ସଂଗୀତ ଶାସ୍ତ୍ରର ଅଧିଷ୍ଠାତ୍ରୀ ଏହି ଦେବୀ ସରସ୍ୱତୀ ସପ୍ତବିଧ ସ୍ୱରଜ୍ଞାନ ପ୍ରଦାୟିନୀ । ଏହି ସପ୍ତବିଧ ସ୍ୱର ପ୍ରଦାନ କରୁଥିବାରୁ ସେ ସରସ୍ୱତୀ । ତାଳ, ସ୍ୱର, ଲୟ, ରାଗ ଆଦିର ସେ ସୃଷ୍ଟିକାରିଣୀ ।

ଭାଗବତରେ ଲେଖାଅଛି – ଶ୍ରୀକୃଷ୍ଣଙ୍କ ଜିହ୍ୱାର ଅଗ୍ରଭାଗରେ ମାତା ସରସ୍ୱତୀ ପ୍ରକଟିତ ହୋଇଥିଲେ । ସଂସାରରେ ସରସ୍ୱତୀଙ୍କ ପୂଜା ଶ୍ରୀକୃଷ୍ଣ ହିଁ ପ୍ରଚାର କରିଥିଲେ । ଶ୍ରୀକୃଷ୍ଣ ଭଗବାନ ନାରାୟଣଙ୍କୁ, ସରସ୍ୱତୀଙ୍କୁ ସମର୍ପଣ କରିଥିଲେ । ଗଙ୍ଗାଙ୍କ ଦ୍ୱାରା ଶାପଗ୍ରସ୍ତା ହୋଇ ସରସ୍ୱତୀ ନଦୀ ରୂପ ଧାରଣ କରି ଭୂପୃଷ୍ଠରେ ପ୍ରବାହିତ ହେଲେ, କିନ୍ତୁ ପାପୀମାନଙ୍କ ଭୟରେ ସେ ଅନ୍ତଃସଲ୍ଲିଳା ।

ଶ୍ଳୋକରେ ଅଛି-

"କରାଗ୍ରେ ବସତେ ଲକ୍ଷ୍ମୀ, କରମୂଳେ ସରସ୍ୱତୀ
କରମଧ୍ୟେ ତୁ ଗୋବିନ୍ଦଃ, ପ୍ରଭାତେ କର ଦର୍ଶନମ୍ ।"

ଅର୍ଥାତ୍ ନାରାୟଣଙ୍କ ଦୁଇ ପାର୍ଶ୍ୱରେ ଯଥାକ୍ରମେ ଲକ୍ଷ୍ମୀ ଓ ସରସ୍ୱତୀ ଅବସ୍ଥାନ କରନ୍ତି । ହସ୍ତର ଅଗ୍ରଭାଗରେ ଲକ୍ଷ୍ମୀ ଓ ମୂଳଭାଗରେ ସରସ୍ୱତୀ ତଥା ମଧ ସ୍ଥଳରେ ନାରାୟଣ ଅବସ୍ଥାନ କରୁଥିବାରୁ, ପ୍ରଭାତରେ ଶଯ୍ୟାତ୍ୟାଗ ଅନ୍ତେ ହସ୍ତକୁ ସର୍ବ ପ୍ରଥମେ ନିରୀକ୍ଷଣ କରିବାର ବିଧି ରହିଛି । ଏହା ଦ୍ୱାରା ଏକତ୍ର ଭଗବାନ ନାରାୟଣ, ଦେବୀ ଲକ୍ଷ୍ମୀ ଓ ସରସ୍ୱତୀଙ୍କର ଦର୍ଶନ ଲାଭ ହୁଏ । ପ୍ରଭାତରେ ଈଶ୍ୱର ଦର୍ଶନ ଓ ଆରାଧନା କଲେ, ଦିନଚର୍ଯ୍ୟାର ପ୍ରାରମ୍ଭ ଶୁଭଦାୟକ ହୋଇଥାଏ ।

ଲକ୍ଷ୍ମୀ, ଧନର ଦେବୀ ଓ ସରସ୍ୱତୀ, ବିଦ୍ୟାର ଦେବୀ ରୂପେ ସଂସାରରେ ପୂଜା ପାଆନ୍ତି । ଧନ ଓ ବିଦ୍ୟାର ଏହି ଦୁଇ ଦେବୀଙ୍କୁ ସ୍ୱୟଂ ଭଗବାନ କରର ମଧ୍ୟସ୍ଥାନରେ ଅବସ୍ଥାନ କରି ନିୟନ୍ତ୍ରଣ କରନ୍ତି । ଉପରୋକ୍ତ ଶ୍ଳୋକ ସୂଚାଇଦିଏ ଯେ ଧନ ଓ ବିଦ୍ୟା

ମନୁଷ୍ୟର କର ମଧ୍ୟରେ ନିହିତ । ଏହାର ସଦୁପଯୋଗ କରି ମନୁଷ୍ୟ ଉଭୟ ଧନ ଓ ବିଦ୍ୟା କରାୟତ କରିପାରେ ।

ଅଙ୍ଗୁଳି ଦ୍ୱାରା ଧନ ଆହରଣ ଓ ବିତରଣ କରାଯାଏ । କରମୂଳେ ସରସ୍ୱତୀ ଅବସ୍ଥାନ କରି ଜ୍ଞାନ ଓ ଶକ୍ତି ବଳରେ ଅଙ୍ଗୁଳି ଚଳାନା କରିଥାଆନ୍ତି । କରର ମଧ୍ୟ ସ୍ଥଳରେ ନାରାୟଣ । ବିଜ୍ଞାନ ଓ କାରିଗରୀ ବିଦ୍ୟାର ଆଧାର । ଅର୍ଥାତ୍ Science and technology ।

ବିଦ୍ୟାର ଦେବତା ଗଣେଶଙ୍କ ହସ୍ତରେ ଲଡୁ ଶୋଭାପାଉଥିବା ସ୍ଥଳେ, ବିଦ୍ୟାର ଦେବୀ ମାତା ସରସ୍ୱତୀଙ୍କ ହସ୍ତରେ ବୀଣା ଓ ପୁସ୍ତକ ଶୋଭାପାଏ । ତେଣୁ ବିଦ୍ୟା ଲଡୁପରି ମିଠା ଓ ସଂଗୀତ ପରି ମଧୁର । ବିଦ୍ୟା ଯେ କ୍ଳିଷ୍ଟ ନୁହେଁ ତାହା ବୀଣା ମାଧ୍ୟମରେ ଦେବୀ ସରସ୍ୱତୀ ପ୍ରତିପାଦିତ କରିଛନ୍ତି । ଲଡୁପରି ମିଠା ଓ ବୀଣାର ତାନପରି ମଧୁର ଯେଉଁ ବିଦ୍ୟା, ତାହା ବିଦ୍ୟାର୍ଥୀମାନଙ୍କୁ ବିଦ୍ୟା ଆହରଣ କରିବାରେ ପ୍ରୋତ୍ସାହିତ କରିବା ପରିବର୍ତ୍ତେ, ମନ ମଧ୍ୟରେ ଭୟର ସଞ୍ଚାର କରାଉଛି କାହିଁକି ? ବିଶେଷତଃ ଗଣିତ ବିଦ୍ୟା ପ୍ରତି ଅନେକ ବିଦ୍ୟାର୍ଥୀଙ୍କର ଅହେତୁକ ଭୟ । ଏହାର ଉତ୍ତର ହେଉଛି ଆମର ଶିକ୍ଷାଦାନ ପ୍ରଣାଳୀ ତ୍ରୁଟିପୂର୍ଣ୍ଣ । ବିଦ୍ୟାକୁ ରସାଳ କରିବାକୁ ହେଲେ, ତନ୍ମଧ୍ୟରେ ତଲ୍ଲୀନ ରହି ତା'ର ସ୍ୱାଦକୁ ଆହରଣ କରି ମଧୁର ଭାବରେ ବିଦ୍ୟାର୍ଥୀମାନଙ୍କ ମଧ୍ୟରେ ବିତରଣ କଲେ, ଭୟର କୁହେଳୀ ନିଶ୍ଚୟ ଅପସରି ଯିବ । ମନେ ହେବ ବିଦ୍ୟା ଲଡୁପରି ମିଠା ଓ ସଂଗୀତ ପରି ମଧୁର । ବିଦ୍ୟାଦାନର ସୁଲଭ ମାର୍ଗର ପଥ ପ୍ରଦର୍ଶକ ଓ ପ୍ରଦର୍ଶୀକା ଏହି ଦୁଇ ଦେବଦେବୀଙ୍କ ପୂଜା ଅର୍ଚ୍ଚନା ସାଧାରଣତଃ ବିଦ୍ୟାଳୟମାନଙ୍କରେ ଅନୁଷ୍ଠିତ ହୋଇଥାଏ ।

ବିଦ୍ୟା ସାଧାରଣତଃ ଦୁଇ ପ୍ରକାରର । ନିରବଚ୍ଛିନ୍ନ (continuous) ଓ ବିଚ୍ଛିନ୍ନ (discontinuous ବା discrete) । ନିରବଚ୍ଛିନ୍ନ ଭାବରେ ପ୍ରକଟିତ ହେଉଥିବା ଜ୍ଞାନ ନିମ୍ନଲିଖିତ ଧାରାରେ ପର୍ଯ୍ୟବସିତ । ଯଥା- ସଂଗୀତର ଲହରୀ, ସାଗରର ଉର୍ମି, ଭାସମାନ ବାଦଲ, ଝରଣାର ଗତି, ପୃଥିବୀର ଘୂର୍ଣ୍ଣନ, ପ୍ରବାହିତ ବାୟୁ ।

ଏହି ନିରବଚ୍ଛିନ୍ନତାର ମୌଳିକ ତଥ୍ୟକୁ ଆଧାର କରି Calculus ଓ Analysisର ସୃଷ୍ଟି ଓ ଏହା ମାଧ୍ୟମରେ ଗବେଷଣା ତଥା ଜ୍ଞାନ ଆହରଣ । ଏହି ଜ୍ଞାନର କୌଶଳକୁ ବ୍ୟବହାର କରି ନୌକା ଓ ଜାହାଜ ଆଦିର ନିର୍ମାଣ ।

ଗଣନ ପ୍ରକ୍ରିୟା । ତବଲା ବାଦନ, ଚେସ୍ ଆଦି ବିଚ୍ଛିନ୍ନ ବା discreteର ଅନ୍ତର୍ଭୁକ୍ତ । ସଂଗୀତ ସାଥିରେ ବେହେଲା ବା ବୀଣା ଓ ତବଲାର ସୁମଧୁର ତାନର

ସମନ୍ୱୟରେ ଶ୍ରୁତି ମଧୁର ସଂଗୀତ ସୃଷ୍ଟି ହୁଏ । ଠିକ୍ ସେହିପରି ବୀଜଗଣିତ (Algebra) ବିଛିନ୍ନ ଓ Analysis ନିରବଚ୍ଛିନ୍ନ ବିଦ୍ୟାର ସମ୍ମିଶ୍ରଣରେ Functional Analysisର ସୃଷ୍ଟି । ତେଣୁ ଏହି ଦୁଇପ୍ରକାର ନିରବଚ୍ଛିନ୍ନ ଓ ବିଚ୍ଛିନ୍ନ ଜ୍ଞାନର ସମନ୍ୱୟରେ ଅନେକ ପ୍ରକାର ନୂତନ ଜ୍ଞାନର ସୃଷ୍ଟି ।

ସଂଗୀତ ନିରବଚ୍ଛିନ୍ନ । ମାତା ସରସ୍ୱତୀ ସଂଗୀତର ଦେବୀ । Digital computer କୁ ଗଣିତ ବିଶେଷଜ୍ଞ ଶ୍ରୀଗଣେଶଙ୍କ ସହ ତୁଳନା କରାଗଲେ ସଂଗୀତ ବିଶେଷଜ୍ଞା ମାତା ସରସ୍ୱତୀ Analogue computer ସହ ତୁଳନୀୟ । ସଦା ପରିବର୍ତ୍ତନଶୀଳ ନିରବଚ୍ଛିନ୍ନ ଭୌତିକ ଜଗତର ରୂପରେଖ ନିରୂପଣ କରେ । ଯେଉଁ କାର୍ଯ୍ୟ ନିମନ୍ତେ Digital computer ଅକ୍ଷମ, ତାହା ଅକ୍ଲେଶରେ Analogue computer ଦ୍ୱାରା ସମ୍ପାଦିତ ହୋଇଥାଏ । ଗଣନ ଦେବତା ଶ୍ରୀଗଣେଶ ତଥା ବିଦ୍ୟା ଓ ସଂଗୀତର ଦେବୀ ମାତା ସରସ୍ୱତୀଙ୍କର ଆଶୀର୍ବାଦ ଏକାଧାରରେ କେହି କେହି ଅନୁଭବ କରିଥାଆନ୍ତି । ଗଣିତ ଓ ସଂଗୀତ ଏହି ଦେବା-ଦେବୀଙ୍କର କୃପାର ଦାନ । ସଂଗୀତର ମଧୁର ସ୍ୱନ ପରି ଗଣିତ ମଧ୍ୟ ମଧୁର ।

ଭାଦ୍ରବମାସ ଚତୁର୍ଥୀ ତିଥିରେ ଶ୍ରୀ ଗଣେଶ ଓ ମାଘମାସ ଶୁକ୍ଳପକ୍ଷ ପଂମୀ ତିଥିରେ ଦେବୀ ସରସ୍ୱତୀଙ୍କର ପୂଜା ଅର୍ଚ୍ଚନା କରାଯାଇଥାଏ । ତୁଳସୀଦାସଙ୍କ ରଚିତ ରାମ ଚରିତ ମାନସର ମଙ୍ଗଳାଚରଣରେ ଏହି ଦୁଇ ଦେବ-ଦେବୀଙ୍କୁ ଏକତ୍ର ପୂଜା କରାଯିବାର ସୂଚନା ମିଳେ ।

ବେଦାନ୍ତ ଏକାଧାରରେ ନିରବଚ୍ଛିନ୍ନ ଓ ବିଚ୍ଛିନ୍ନ ଜ୍ଞାନର ଉତ୍ସ । ବେଦାନ୍ତରେ ସନ୍ନିହିତ ରସ ହିଁ ସରସ୍ୱତୀ । ତେଣୁ ସରସ୍ୱତୀ ଉଭୟ ନିରବଚ୍ଛିନ୍ନ ଓ ବିଚ୍ଛିନ୍ନ ତତ୍ତ୍ୱର ଅଧିକାରିଣୀ । ସଂଗୀତ ଓ ବିଦ୍ୟା ଉଭୟ ଶାସ୍ତ୍ରରେ ନିପୁଣା ସରସ୍ୱତୀ ସଦା ମଙ୍ଗଳମୟୀ । ବୀଣାର ସୁମଧୁର ତାନରେ ବଶୀଭୂତ କରାଇ ବିଦ୍ୟା ପ୍ରଦାନ କରିବାର ଅପରୂପ ପ୍ରଣାଳୀର ପ୍ରତୀକ ସ୍ୱରୂପ ମାତା ସରସ୍ୱତୀଙ୍କର ଏକ ହସ୍ତରେ ବୀଣା ଓ ଅପର ହସ୍ତରେ ପୁସ୍ତକ ବିରାଜମାନ ।

ବୀଣା, ପୁସ୍ତକ ରଞ୍ଜିତ ହସ୍ତେ,
ଭଗବତୀ, ଭାରତୀ ଦେବୀ ନମସ୍ତେ ।

ଗଣିତ ବିଚିତ୍ରା, ମାର୍ଚ୍ଚ ୨୦୧୫



# ବିରଜା ଓ ଜଗନ୍ନାଥ ପଞ୍ଜିକା ଅଭ୍ୟୁଦୟ

ଓଡ଼ିଶାରେ ଗଣନା ନିମିତ୍ତ ସାଧାରଣତଃ ଦୁଇଟି ପଞ୍ଜିକା ବ୍ୟବହୃତ ହୁଏ । ବିରଜା ପାଞ୍ଜି ଓ ଜଗନ୍ନାଥ ପାଞ୍ଜି । ଯାଜପୁର ସହିତ ଉତ୍ତର ଓଡ଼ିଶା ତଥା ଦକ୍ଷିଣ ଓଡ଼ିଶାରେ ଏ ପର୍ଯ୍ୟନ୍ତ ବିରଜା ପାଞ୍ଜି ସହାୟତାରେ ଗଣନା କାର୍ଯ୍ୟ ନିରୂପଣ କରାଯାଉଅଛି । କିନ୍ତୁ ଓଡ଼ିଶାର ଅନ୍ୟ ଅଞ୍ଚଳମାନଙ୍କରେ ଜଗନ୍ନାଥ ପାଞ୍ଜିକୁ ଆଧାର କରି ଗଣନା କାର୍ଯ୍ୟ କରାଯାଏ । ତିଥି, ବାର, ସଂକ୍ରାନ୍ତି, ଚନ୍ଦ୍ରଗ୍ରହଣ, ସୂର୍ଯ୍ୟ ପରାଗ ଇତ୍ୟାଦି ନିରୂପଣ କରିବା କ୍ଷେତ୍ରରେ ଏହି ଦୁଇଟି ପାଞ୍ଜିକା ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି ତଥା ଅନେକ ଅମେଳ ମଧ୍ୟ ରହିଛି । ସେଥି ନିମନ୍ତେ ନିଜ ନିଜର ସୁବିଧା ଅନୁଯାୟୀ କେହି କେହି ଏହି ଦୁଇ ପାଞ୍ଜିକାକୁ ଆବଶ୍ୟକ ସ୍ଥଳେ ବ୍ୟବହାର କରିଥାନ୍ତି ।

ପ୍ରଶ୍ନଉଠେ, ଯେହେତୁ ପାଞ୍ଜି ଗାଣିତିକ ଗଣନା ଉପରେ ପର୍ଯ୍ୟବେସିତ, ଏହି ଦୁଇ ପାଞ୍ଜି ଏତେ ଅମେଳ କେଉଁଥି ପାଇଁ ଓ କାହିଁକି ?

ନିକଟରେ ଡକ୍ଟର 'ସୁଧୀରା ପଣ୍ଡା'ଙ୍କର 'ବିସ୍ମୃତ ଗର୍ଭରେ ଓଡ଼ିଆ ଗଣିତଜ୍ଞ' ସନ୍ଦର୍ଭଟି ପାଠ କରିବା ଅବସରରେ ମୋ' ମନରେ ଉଙ୍କିମାରିଥିବା ସନ୍ଦେହ ଦୂରିଭୂତ ହେଲା ।

ପୁରୀର 'ଶତାନନ୍ଦ' ହେଉଛନ୍ତି ଏକ ମହାନ ଜ୍ୟୋର୍ତିବିଜ୍ଞାନୀ ଏବଂ ତତ୍ ସଂଗେ ସଂଗେ ଏକ ଗଣିତଜ୍ଞ ମଧ୍ୟ । ଜଗନ୍ନାଥଧାମ ପୁରୀ ନିବାସୀ ମାତା ସରସ୍ୱତୀ ଓ ପିତା ଶଙ୍କରଙ୍କର ଔରସରୁ ୧୦୬୮ ଖ୍ରୀଷ୍ଟାବ୍ଦରେ ଶତାନନ୍ଦ ଜନ୍ମଗ୍ରହଣ କରିଥିଲେ । ୧୦୯୯ ମସିହାରେ ସେ ଭାସ୍ୱତୀ ନାମକ ଲକ ଜ୍ୟୋର୍ତିବିଜ୍ଞାନ ଗ୍ରନ୍ଥ ରଚନା କରିଥିଲେ ।

ସମ୍ଭବତଃ ଖ୍ରୀଷ୍ଟପୂର୍ବ ୧୪୧୨ ଶତାବ୍ଦୀର ମଧ୍ୟଭାଗର କୌଣସି ଏକ ସମୟରେ ଋଷି ଲଗଧାଙ୍କ ଦ୍ୱାରା ଲିଖିତ 'ସୂର୍ଯ୍ୟ ସିଦ୍ଧାନ୍ତ' ନାମକ ପୁସ୍ତକର ସହାୟତା ନେଇ ଶତାନନ୍ଦ 'ଭାସ୍ୱତୀ' ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥରେ ଗ୍ରହ ନକ୍ଷେତ୍ରମାନଙ୍କ ଗତି ଓ ଅବସ୍ଥିତି ସଂପର୍କରେ ସେ ଦଶମିକ ପଦ୍ଧତି ବ୍ୟବହାର କରି ସଠିକ୍ ଗଣନା କରିବାରେ ସଫଳ ହୋଇଥିଲେ । ଏହା କାଳକ୍ରମେ ବିରଜା ପାଞ୍ଜିକାର ନାମ ଧାରଣ କରିଥିଲା ଏବଂ ସମଗ୍ର ଓଡ଼ିଶା ଏହାକୁ ଅନୁସରଣ କରୁଥିଲା ।

ଶତାନନ୍ଦ ମଧ୍ୟ ବରାହ ମିହିର (୫୦୫- ୫୮୭ ଖ୍ରୀଷ୍ଟାବ୍ଦ)ଙ୍କ ଦ୍ୱାରା ଆବିଷ୍କୃତ ଯନ୍ତ୍ରଦ୍ୱାରା ଗ୍ରହମାନଙ୍କୁ ପର୍ଯ୍ୟବେକ୍ଷଣ କରୁଥିଲେ । ବରାହ ମିହିର ଥିଲେ ଆର୍ଯ୍ୟଭଟ୍ଟଙ୍କ ପରବର୍ତ୍ତୀ ଗଣିତଜ୍ଞ ଓ ଜ୍ୟୋର୍ତିବିଜ୍ଞାନୀ । ବରାହ ମିହିର 'ପଞ୍ଚ ସିଦ୍ଧାନ୍ତ ଟିକା', ବୃହ ସଂହିତା ଓ ଭାରତୀ ସଂହିତା ଇତ୍ୟାଦି ରଚନା କରିଥିଲେ ।

ସେହି କାଳରୁ ଶତାନନ୍ଦଙ୍କ ଲିଖିତ ପାଞ୍ଜିର ଗଣନା ଅନୁସାରେ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ନୀତି ନିର୍ଦ୍ଧାରିତ ହେଉଥିଲା ଓ ଏହା ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ବ୍ୟବହୃତ ହେଉଥିଲା ।

କିଛି କାଳ ଅନ୍ତେ 'ମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର' ବା ସଂକ୍ଷେପରେ ପଠାଣି ସାମନ୍ତ (୧୮୩୫-୧୯୦୪) ଏକ କାଳଜୟୀ ଜ୍ୟୋର୍ତିବିଜ୍ଞାନ ପୁସ୍ତକ ରଚନା କରେ । ଏହି ପୁସ୍ତକ 'ସିଦ୍ଧାନ୍ତ ଦର୍ପଣ' ।

ଦ୍ୱିତୀୟ ଭାସ୍କର (୧୧୧୪-୧୧୮୫) ସିଦ୍ଧାନ୍ତ ଶିରୋମଣି ନାମକ ଏକ ପୁସ୍ତକ ରଚନା କରିଥିଲେ । ଏହି ପୁସ୍ତକର ପ୍ରଥମ ଅଧ୍ୟାୟ ଲୀଳାବତୀ, ଏହା ପାଟିଗଣିତ ଓ ଜ୍ୟାମିତି ସଂପର୍କିତ । ଦ୍ୱିତୀୟ ଅଧ୍ୟାୟରେ ବୀଜଗଣିତ ସନ୍ନିହିତ ଓ ଅନ୍ୟ ଅଧ୍ୟାୟଗୁଡ଼ିକ ଜ୍ୟୋର୍ତିବିଜ୍ଞାନ ସମ୍ବନ୍ଧିତ ।

ପଠାଣି ସାମନ୍ତଙ୍କ ଦ୍ୱାରା ଲିଖିତ 'ସିଦ୍ଧାନ୍ତ ଦର୍ପଣ' ପୁସ୍ତକଟିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେ ଦ୍ୱିତୀୟ ଭାସ୍କରଙ୍କର 'ସିଦ୍ଧାନ୍ତ ଶିରୋମଣି' ପୁସ୍ତକଟିକୁ ଉତ୍ତମ ଭାବରେ ଅଧ୍ୟୟନ କରିଛନ୍ତି । ପଠାଣି ସାମନ୍ତଙ୍କ ଜ୍ୟୋର୍ତିବିଜ୍ଞାନରେ ସିଦ୍ଧାନ୍ତଗୁଡ଼ିକୁ ପରୀକ୍ଷା କରିବା ନିମନ୍ତେ ସ୍ୱହସ୍ତ ନିର୍ମିତ ୧୯ ଗୋଟି ଯନ୍ତ୍ର, ବାଉଁଶ ନଳୀ ଓ କାଠିକୁ ବ୍ୟବହାର କରି ପ୍ରସ୍ତୁତ କରିଛନ୍ତି । ଏହାଦ୍ୱାରା ତାଙ୍କର ପର୍ଯ୍ୟବେକ୍ଷଣ ସିଦ୍ଧାନ୍ତଗୁଡ଼ିକୁ ଆଧୁନିକ ଗଣନା ସହ ସମାନ ।

ପରିଶେଷରେ ପଠାଣି ସାମନ୍ତଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ପାଞ୍ଜିକୁ ଶ୍ରୀମନ୍ଦିରର ମୁକ୍ତିମଣ୍ଡପ, ଶ୍ରୀ ଜଗନ୍ନାଥଙ୍କ କାର୍ଯ୍ୟନିର୍ଘଣ୍ଟ ନିମନ୍ତେ ଉପଯୁକ୍ତ ବିବେଚନା କରି ଗ୍ରହଣ କଲେ ।

ଏହା ପରଠାରୁ ପଠାଣି ସାମନ୍ତଙ୍କ ପାଞ୍ଜି, ଜଗନ୍ନାଥଙ୍କ ପାଞ୍ଜି ଭାବରେ ଗ୍ରହଣ କରାଗଲା ଓ ଶତାନନ୍ଦଙ୍କ ପାଞ୍ଜି ବିରଜା ପାଞ୍ଜି ନାମରେ ଗୃହିତ ହେଲା । ଏବେ ମଧ୍ୟ ବିରଜା ପାଞ୍ଜିକାର ପ୍ରଚଳନ ଯାଜପୁର, ଉତ୍ତର ଓ ଦକ୍ଷିଣ ଓଡ଼ିଶାରେ ଅଛି ।

ରତ୍ନଗର୍ଭା, ୨୦୧୫, ପ୍ରଗତି କ୍ଲବ



# ମହାବାହୁ - ମହାବାତ୍ୟା

ଏହା ଥିଲା ୧୯୯୯ ମସିହା ଅକ୍ଟୋବର ୨୯-୩୦ ତାରିଖର ମହାବାତ୍ୟା । ସାକ୍ଷୀ ମହାବାହୁ-ନୀଳାଚଳ ନିବାସୀ ଓ ତାଙ୍କ ଭାଇ, ଭଉଣୀ । ସେହି ସମୟରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ।

ମହାବାତ୍ୟା ପାରାଦ୍ୱୀପ ବନ୍ଦର ନିକଟରେ କେନ୍ଦ୍ରୀଭୂତ ହୋଇ ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରଭୂତ କ୍ଷତି କରିଥିବା କଥା ଜନମାନସପଟରୁ ଏପର୍ଯ୍ୟନ୍ତ ଲିଭିନଥିବ । କିନ୍ତୁ ମୁଁ କେବଳ ବାଣୀବିହାର ଦୁର୍ଦ୍ଦଶା କଥା କହୁଛି ।

ଅକ୍ଟୋବର ୨୮ ତାରିଖ ରାତ୍ର ପ୍ରାୟ ନଅଟା । ନିନି, ମୁଁ ଓ ଲୋନି କଟକରୁ ଫେରୁଥାଉ । ଜନଗହଳି କଟକ ସହର ଜନଶୂନ୍ୟ । ଚତୁର୍ଦ୍ଦିଗ ନିସ୍ତବ୍ଧ । ଦୋକାନ ବଜାର ସବୁ ବନ୍ଦ । ଶୂନ୍‌ଶାନ୍ ରାସ୍ତା । କାଁ ଭାଁ ଗାଡ଼ି ଅଥବା ଦୁଇ ଚକିଆ ଯାନଟିଏ ସମଗ୍ର ବାତାବରଣକୁ ମୁଖରିତ କରି ଯାତାୟତ ହେଉଥାଏ । ପବନ ନିଶ୍ଚଳ । ଗୁମ୍‌ସୁମ୍ ପରିବେଶ । ସତେକି ଖଣ୍ଡପ୍ରଳୟର ପ୍ରାରମ୍ଭିକ ସୂଚନା । ବାତ୍ୟା ଆସୁଛି ବୋଲି ସମ୍ବାଦ ସରବରାହ ସଂସ୍ଥାର ଡାକବାଜି ଯନ୍ତ ଗର୍ଜନ କରି ଚାଲିଛି, ଜନସମୁଦାୟ ସଚେତନ, ସଭିଏଁ ଭୟଭୀତ । ଆଗାମୀ ବିପଦର ଆଶଙ୍କାରେ ଜନବହୁଳ ଚଳଚଞ୍ଚଳ ।

ପ୍ରାଣ ପ୍ରାଚୁର୍ଯ୍ୟରେ ଭରା କଟକ ସହର ପ୍ରାଣହୀନ ମନେହେଉଥାଏ । ସତେ ଯେପରି କେଉଁ ଅଜଣା ରାକ୍ଷସର ମନ୍ତବଳରେ ସାରା ସହରଟା ସନ୍ଧ୍ୟା ପ୍ରହରରୁ ଶୋଇଯାଇଛି । ଅଜଣା ଆଶଙ୍କାରେ ମନ ଦବି ଦବି ଯାଉଥାଏ ।

ମଧ୍ୟରାତ୍ରରୁ ଆରମ୍ଭ ହେଲା ବାତ୍ୟା ଓ କ୍ରମଶଃ ତେଜିୟାନ ହୋଇ ପରିଣତ ହେଲା ମହାବାତ୍ୟାରେ । ସରକାରୀ କଳ ଓ ଜନସାଧାରଣ ବାତ୍ୟାର ମୁକାବିଲା ନିମନ୍ତେ ସତର୍କ ଥିଲେ । କିନ୍ତୁ ଏ ମହାବାତ୍ୟା ତ କଳ୍ପନାତୀତ ଏହି ମହାବାତ୍ୟାକୁ ସାମ୍ନା କରିବା ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ପ୍ରକୃତିର ଏ ତାଣ୍ଡବଲୀଳା ସମ୍ମୁଖରେ ଛାରମାନବ କ'ଣ ବା କରିପାରେ । ପ୍ରଖର ଜଳସ୍ରୋତରେ କୁଟାଖିଅଟିଏ ଭାସିଗଲା ଭଳି ସମସ୍ତ ପ୍ରକାର ଆୟୋଜନ ବ୍ୟର୍ଥ । ବାତ୍ୟା ସାଙ୍ଗକୁ ପ୍ରଚଣ୍ଡ ବର୍ଷା, ପବନର ତାଣ୍ଡବ ନୃତ୍ୟ ପ୍ରକୃତିକୁ

ଭୟଙ୍କର କରି ତୋଳିଥାଏ । ଏହି ମହାବାତ୍ୟାକୁ ମୁକାବିଲା କରିବା ନିମନ୍ତେ କାହା ନିକଟରେ କୌଣସି ସ୍ଥାନ ନ ଥିଲା । ବିପଦ ପଡ଼ିଲେ ଅସହାୟ ମନୁଷ୍ୟ ଈଶ୍ୱରଙ୍କର ଶରଣ ପଶେ । ସମସ୍ତେ ଭରସା କରି ରହିଲେ ନୀଳାଦ୍ରିବିହାରୀ ପ୍ରଭୁ ଜଗନ୍ନାଥ, ମହାବାହୁଙ୍କୁ ।

ଈଶ୍ୱର ସବୁ ସମୟରେ ଦୟାଳୁ । ମନୁଷ୍ୟର ଅଜାଣତରେ ବାଟବଣା ହେବା ପୂର୍ବରୁ ଭଗବାନ ଠିକ୍ ସମୟରେ ଦିଗ୍‌ଦର୍ଶନ ଦିଅନ୍ତି । ଆସନ୍ନ ବିପଦ ସମୟରେ ଉଦ୍ଧାର ପାଇବାର ରାସ୍ତା ଦେଖାଇ ଦିଅନ୍ତି । ଅଯାଚିତ କରୁଣା ବର୍ଷଣ କରନ୍ତି ।

ଅକ୍ଟୋବର ପ୍ରଥମ ସପ୍ତାହରେ ଆରମ୍ଭ ହେଲା ଇତିହାସ ବିଭାଗ ଛାତ୍ରମାନଙ୍କ ତରଫରୁ ଆନ୍ଦୋଳନ, ସେମାନଙ୍କର ପରୀକ୍ଷାଫଳକୁ କେନ୍ଦ୍ରକରି । ସେମାନଙ୍କ ଦାବୀଥିଲା ପ୍ରତ୍ୟେକ ଛାତ୍ରକୁ ପ୍ରତିପରୀକ୍ଷା ଖାତାରେ ଦଶ ନମ୍ବର କରି ଆଠଟା ପରୀକ୍ଷା ଖାତାରେ ଅଶୀ ନମ୍ବର ପର୍ଯ୍ୟନ୍ତ ଗ୍ରେସ୍ ନମ୍ବର ଦିଆଯାଉ । ଏହି ପ୍ରସଙ୍ଗରେ ଛାତ୍ର ସଂସଦ ସଭାପତି ସହିତ ଅନ୍ୟ କେତେ ଜଣ ମିଳିତ ହୋଇ ଚକ୍ରାନ୍ତ ଚଳାଇଥିଲେ ପ୍ରଶାସନକୁ ଦୋହଲାଇବା ପାଇଁ । ଠିକ୍ ସେହି ସମୟରେ ପରିସଂଖ୍ୟାନ ବିଭାଗର ପରୀକ୍ଷା ଫଳ ମଧ୍ୟ ପ୍ରକାଶ ପାଇଲା । ଏହି ଛାତ୍ରମାନେ ସୁଯୋଗକୁ ଅପେକ୍ଷା କରି ରହିଥିଲେ । ଇତିହାସ ବିଭାଗର ଆନ୍ଦୋଳନରେ କିଛି ଫାଇଦା ମିଳିଲେ ସେହି ଦାବୀ ସେମାନେ ମଧ୍ୟ ଉପସ୍ଥାପନ କରିବେ । ଏହି ଅନୈତିକ ଆନ୍ଦୋଳନକୁ ମୁଁ ଦୃଢ଼ଭାବରେ ପ୍ରତ୍ୟାଖାନ କରିଥିଲି । କେବଳ ପରାମର୍ଶ ଦେଇଥିଲି ଛାତ୍ରମାନେ ସେମାନଙ୍କର ପରୀକ୍ଷା ଖାତାର ନକଲ ନେଇ ସେମାନଙ୍କର ବାପା-ମାଆଙ୍କୁ ଦେଖାନ୍ତୁ ତଥା କୌଣସି ଇତିହାସ ଅଧ୍ୟାପକଙ୍କ ଦ୍ୱାରା ପୁନରାୟ ଯାଞ୍ଚ କରାଇ ପରାମର୍ଶ ନିଅନ୍ତୁ । ତାହାହେଲେ ସେମାନେ ସ୍ୱୟଂ ହୃଦୟଙ୍ଗମ କରିପାରିବେ ସେମାନଙ୍କର ଦାବୀର ଯଥାର୍ଥତା କେତେ ? ଶ୍ରେଣୀରେ ଉପସ୍ଥିତ ନ ରହି ପାଠ ନ ପଢ଼ି ପରୀକ୍ଷାରେ ପୂର୍ଣ୍ଣ ନମ୍ବର ପାଇବାର ଦାବୀ କେତେଦୂର ଯୁକ୍ତିଯୁକ୍ତ ଏକଥା ସର୍ବସାଧାରଣ କହିବେ ।

ଶୁଣିବାକୁ ପାଇଲି ଜନୈକ ଶିକ୍ଷକ ନେତା ସେମାନଙ୍କୁ ପରାମର୍ଶ ଦେଇଥିଲେ । କୁଳପତିଙ୍କ ନିକଟରେ ଏହିପରି ଏକ କ୍ଷମତା ଅଛି ଯେଉଁ କ୍ଷମତାର ନାମ ୬(୧୫); ଏହାକୁ ପ୍ରୟୋଗ କରି ସେ ଯେକୌଣସି କାର୍ଯ୍ୟ ଅକ୍ଳେଶରେ କରିଦେଇ ପାରିବେ । ଏ ବିଷୟ ଛାତ୍ର ସଂସଦର ସଭାପତି ମୋ ସହିତ ଆଲୋଚନା ଜାରି ରହିଥିବା ସମୟରେ, ଅନେକ ଶିକ୍ଷକ ତଥା ଛାତ୍ରମାନଙ୍କ ସମ୍ମୁଖରେ, ପ୍ରକାଶ କରିଥିଲା । ବିନା ଦ୍ୱିଧାରେ ପ୍ରକାଶ ମଧ୍ୟ କରିଥିଲା ଏହି ଅବାନ୍ତର ଉପଦେଶ ଦେଇଥିବା ଶିକ୍ଷକଙ୍କର ନାମ ।

ମନେ ପକାଇଲି ଗ୍ରୀଷ୍ମବକାଶରେ ମଧ୍ୟ ଇତିହାସ ବିଭାଗର ଏହି ଅବୁଝା ଛାତ୍ରମାନେ ଆସି ଦାବି କରିଥିଲେ ସେମାନଙ୍କର ଶ୍ରେଣୀରେ ଉପସ୍ଥାନ କମ୍ ହୋଇଥିବାରୁ ସେମାନଙ୍କୁ ପରୀକ୍ଷା ଦେବାରୁ ବଞ୍ଚିତ କରାଯାଇଅଛି । କେତେକଙ୍କ ପରାମର୍ଶରେ ସେମାନେ କୁଳପତିଙ୍କୁ ଘେରାଉ କରିଥିଲେ, ଶ୍ରେଣୀରେ ଉପସ୍ଥିତ ନ ରହି ମଧ୍ୟ ପୂର୍ଣ୍ଣ ଉପସ୍ଥାପନର ଦାବୀ ନେଇ । ଏହି ପ୍ରସଙ୍ଗରେ ଇତିହାସ ବିଭାଗ ଅଧ୍ୟାପକମାନଙ୍କୁ ଡକାଇଥିଲି । ସେମାନଙ୍କ ମଧ୍ୟରୁ କେତେଜଣ ଆସିଲେ, କେତେକ ଆସିଲେ ନାହିଁ । କେତେକ ଛାତ୍ରମାନଙ୍କୁ ଇନ୍ଧନ ଯୋଗାଉଥିଲେ କୁଳପତିଙ୍କ ବିରୁଦ୍ଧରେ । ସମସ୍ତଙ୍କ ସମ୍ମୁଖରେ ମୋର ସ୍ପଷ୍ଟ ମତବ୍ୟକ୍ତ କରିଥିଲି ଯାହା ନିୟମର ଅନ୍ତର୍ଭୁକ୍ତ । କୁଳପତି ଉପସ୍ଥାନ ଦିଅନ୍ତି ନାହିଁ; ଶିକ୍ଷକମାନେ ଉପସ୍ଥାନ ଦିଅନ୍ତି । ଆବଶ୍ୟକ ହେଲେ ଶିକ୍ଷକମାନେ ଅଧିକ କ୍ଲାସ ନେଇ ଛାତ୍ରଛାତ୍ରୀମାନଙ୍କର କୋର୍ସ ଶେଷ କରନ୍ତି ଓ ଉପସ୍ଥାନ ଦିଅନ୍ତି । ଏକଥା ସେମାନେ ଯେ ଅବଗତ ନୁହନ୍ତି ତାହାନୁହେଁ । ସେମାନେ ହୁଏତ କେବଳ କୁଳପତିଙ୍କର ଦକ୍ଷତା ପରୀକ୍ଷା କରିବା ନିମନ୍ତେ ଅଥବା ଅଯଥାରେ ଅନ୍ୟାନ୍ୟ ପ୍ରସଙ୍ଗ ଭଳି ଏ ପ୍ରସଙ୍ଗ ଉଠାଇବା ମତଲବରେ ଥିଲେ । କ୍ଲାସରେ ଉପସ୍ଥାପନ ସମସ୍ୟା ସୃଷ୍ଟି ହୋଇଛି । କେବଳ ଶିକ୍ଷକମାନେ ହିଁ ଏହାର ସମାଧାନ କରିପାରିବେ । ଅଯଥାରେ ସେମାନଙ୍କ କରଣୀୟ କାର୍ଯ୍ୟକୁ କୁଳପତିଙ୍କ ଉପରେ ଲଦି ଦେଇ ଭୁଲ ଆରୋପ ଲଗାଇବା ଉଚିତ୍ ନୁହେଁ । ଶ୍ରେଣୀଗୃହର ସମସ୍ୟା ସେହି ବିଭାଗର ଶିକ୍ଷକମାନଙ୍କଦ୍ୱାରା ସମାଧାନ ହେବା ଉଚିତ୍ ।

ଛାତ୍ରନେତାଟିକୁ କୌଣସି ପ୍ରଶ୍ନ ପଚାରିଲେ ସେ ମୋବାଇଲ୍‌ରେ ଜନୈକ ରାଜନେତାକୁ ଫୋନ୍ କରି ତାଙ୍କଠାରୁ ପରାମର୍ଶ ନେଇ ମୋତେ ଉତ୍ତର ଦିଏ । ରାଜନେତାଙ୍କ ପାଦତଳେ ମୁଣ୍ଡ ବିକି ଥିବା ଛାତ୍ରନେତାର ବୁଦ୍ଧି ଅବା କେତେ ? ମାଗି ଆଣିଲା ତିଅଣ କେତେ କାମକୁ ?

ଏହି ପ୍ରସଙ୍ଗରେ ମଧ୍ୟ ମନକୁ ଆସିଲା ଇତିହାସ ବିଭାଗର ଛାତ୍ରୀଟିଏର ପିତାମାତା ଏକଦା କୁଳପତି ଭବନକୁ ଆସିଥିଲେ । ଅଫିସ୍‌ରୁ ଫେରି କ୍ଲାନ୍ତ ଦେହ ଓ ମନକୁ ତାଜା କରିବା ପାଇଁ ବଗିଚାର ଲନ୍‌ରେ ମୁଁ ଶୋଇଯାଏ କିଛି ସମୟ ପାଇଁ । ସେହି ସମୟରେ ମନ ମଧ୍ୟରେ ଅନେକ ଭାବନାର ଅଡୁଆ ଖିଅକୁ ସଜାଡୁ ସଜାଡୁ ଆଖି ଆଗରେ ଭାସିଉଠେ ମୋ ପିଲାଦିନ, ସ୍କୁଲ, କଲେଜ ଜୀବନ । ନୀତିନିୟମର ବଳୟ ମଧ୍ୟରେ ଶୃଙ୍ଖଳିତ ଛାତ୍ରଜୀବନ । ଛାତ୍ରଟିର ଅବିଭାବକଙ୍କର ଆସିବାର ଅଭିପ୍ରାୟ ଅବଗତ ହେଲାପରେ ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଝିଅଟିର ଉପସ୍ଥାନ ଆବଶ୍ୟକତା

ଠାରୁ ଯଥେଷ୍ଟ କମ୍ ଥିଲା । ଝିଅଟି କିପରି ମୋ ଦ୍ୱାରା ପୂର୍ଣ୍ଣ ଉପସ୍ଥାନ ପାଇପାରିବ ଏହା ହିଁ ତାଙ୍କର ଅନୁରୋଧ । ଝିଅଟିର ବାପା ଓକିଲ । ମା' କୌଣସି ଏକ କଲେଜରେ ଅଧ୍ୟାପିକା । ଉଚ୍ଚ ଶିକ୍ଷିତ ପିତାମାତା ନିୟମ ବାହାରର ପ୍ରସଙ୍ଗ ଉତ୍ଥାପିତ କରିବା କେତେଦୂର ସମୀଚିନ ଏହାଭାବି ମନରେ ପ୍ରଚଣ୍ଡ ଦୁଃଖ ହୋଇଥିଲା ।

ଏହି ପ୍ରସଙ୍ଗରେ କୁଳପତି କୌଣସି ପ୍ରକାରର ସାହାଯ୍ୟ କରିପାରିବେ ନାହିଁ ବରଂ ଇତିହାସ ବିଭାଗର ଶିକ୍ଷକମାନେ ହୁଏତ କିଛି ସାହାଯ୍ୟ କରିପାରନ୍ତି, ଏହା ମୋର ସ୍ପଷ୍ଟ ଉକ୍ତିଥିଲା । ଭାବିଲି ଏହିପରି ଅବିଭାବକ କେଉଁ ପ୍ରକାରର ଦୁର୍ନୀତିମୁକ୍ତ ସମାଜ ଗଢ଼ିପାରିବେ ତାହା ସହଜରେ ଅନୁମେୟ । ଯେଉଁ ସନ୍ତାନ ପାଇଁ କୁଳପତିଙ୍କର ଦ୍ୱାରସ୍ଥ ହୋଇଛନ୍ତି, ସେହି ସନ୍ତାନ ନିକଟରେ ପିତାମାତାଙ୍କର କେଉଁ ପ୍ରକାରର ଭାବମୂର୍ତ୍ତି ରହିବ ? ଉତ୍ତରାଧିକାରୀ ସୂତ୍ରରେ ସନ୍ତାନଟିଏ ମନରେ ଅନ୍ୟାୟ ଓ ଦୁର୍ନୀତି ରୂପକ ବୀଜର ଅଙ୍କୁରୋଦ୍‌ଗମ ହୋଇ କାଳକ୍ରମେ ଏହା ମହାଦ୍ରୁମରେ ପରିଣତ ହେବ ।

ଶ୍ରେଣୀଗୃହରେ ଛାତ୍ରମାନଙ୍କର ଅନୁପସ୍ଥିତିର କାରଣ ଯାହାହେଉନା କାହିଁକି ଯେକୌଣସି ବିଭାଗରେ ସ୍ଥାନ ସଂରକ୍ଷଣ କରି ଅନ୍ୟାନ୍ୟ କାର୍ଯ୍ୟରେ ଲିପ୍ତ ରହିବା ସଙ୍ଗତ ନୁହେଁ । ଏହି ଅସୁସ୍ଥ ପରମ୍ପରାରେ ଶିକ୍ଷାୟତନ ରୁଗ୍‌ଣ ହୋଇଯାଏ ।

ଭାବନା ରାଜ୍ୟରୁ ଫେରି ଆସିଲି । ସବୁ ଆଲୋଚନା ବିଫଳ ହୋଇ ଆସୁଥିଲା । ଏହି ଆନ୍ଦୋଳନ ଇତିହାସ ବିଭାଗରୁ ଆରମ୍ଭ ହୋଇ ଅନ୍ୟାନ୍ୟ ବିଭାଗକୁ ବ୍ୟାପ୍ତ ହେବାର ହୀନଚକ୍ରାନ୍ତ ଚାଲୁଥିଲା । ଏକ ଅନୈତିକ ଦାବି ଦୃଢ଼ଭାବରେ ଉଠୁଥିଲା ।

ଚକାଡୋଳାଙ୍କୁ ସ୍ମରଣକରି ସମସ୍ତ ବିଭାଗକୁ ଅନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ବନ୍ଦ କରିଦେବାର ନିଷ୍ପତ୍ତି ନେଲି । ବାଣୀବିହାରରେ ସାଇନ୍-ଡାଏ ଘୋଷିତ ହେଲା । ହଷ୍ଟେଲ୍‌ରେ ଥିବା ବାଣୀବିହାରର ସମସ୍ତ ଛାତ୍ରଛାତ୍ରୀମାନଙ୍କୁ ତୁରନ୍ତ ହଷ୍ଟେଲ ତ୍ୟାଗ କରିବାକୁ ପଡ଼ିଲା । ମୋର ଇଚ୍ଛା ନ ଥିଲା । କାରଣ ଗୋଟିଏ ବିଭାଗର ଅନୈତିକ ଦାବି ପାଇଁ ଅଗଣିତ ନିରୀହ ଛାତ୍ରଛାତ୍ରୀମାନଙ୍କର ଅଧ୍ୟାପନାରେ ବ୍ୟାଘାତ ଘଟିଲା । ଅଯଥାରେ ଛାତ୍ରଛାତ୍ରୀମାନଙ୍କୁ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ଆନ୍ଦୋଳନରେ ବିଶ୍ୱବିଦ୍ୟାଳୟର କ୍ଷୟକ୍ଷତିକୁ ଆଖି ଆଗରେ ରଖି ବାଧହୋଇ ମୋର ଇଚ୍ଛା ବିରୁଦ୍ଧରେ ମୋତେ ଏହି ନିଷ୍ପତ୍ତି ନେବାକୁ ପଡ଼ିଲା ।

ମୋର ସମସ୍ତ ପ୍ରମୁଖ ସିଦ୍ଧାନ୍ତଗୁଡ଼ିକ ମହାବାହୁଙ୍କୁ ସ୍ମରଣ କରି ତାଙ୍କ ପାଦତଳେ ଉତ୍ସର୍ଗ କରି ମୁଁ ନେଇଥାଏ । ବାଣୀବିହାରରେ ଭି.ସି. କୋଠିର ଉପରମହଲାର ବାରଣ୍ଡାର ଏକ ପାର୍ଶ୍ୱରେ ଶ୍ରୀଜଗନ୍ନାଥ ଓ ଅପରପାର୍ଶ୍ୱରେ ଅଫିସ୍ ଫାଇଲ୍ ଭର୍ତ୍ତି ଟେବୁଲ । ଆମେ ସାମ୍ନାସାମ୍ନି ବସିଥାଉ କଥାବାର୍ତ୍ତା ହେଲାଭଳି । ସେହି ସମୟରେ ମୁଁ ଜାଣି ନ ଥିଲି

ସେ ମୋତେ ଏହି ସିଦ୍ଧାନ୍ତ ନେବା ଦିଗକୁ ମୁହାଁଇଦେଇ ଜଗନ୍ନାଥ କ'ଣ ପ୍ରତିପାଦନ କରିବାକୁ ଚାହୁଁଛନ୍ତି ।

ଏ ହେଲା ଅକ୍ଟୋବର ପ୍ରଥମ ସପ୍ତାହର ଘଟଣା । ଅକ୍ଟୋବର ୨୯ ତାରିଖର ମହାବାତ୍ୟାରେ ବାଣୀବିହାରର ଛାତ୍ରୀନିବାସର ସୁରକ୍ଷାବଳୟ ଧୂଳିସାତ୍ । ଉଭୟ ଛାତ୍ର ଓ ଛାତ୍ରୀ ନିବାସର ଝରକା ଓ ଦ୍ୱାର କ୍ଷତିଗ୍ରସ୍ତ । ବାଣୀବିହାର ସମ୍ପୂର୍ଣ୍ଣ ଅନ୍ଧକାରରେ ବୁଡ଼ି ରହିଥିଲା । ବିଦ୍ୟୁତ୍ ଖୁଣ୍ଟ ଉପୁଡ଼ି ଯିବା ଫଳରେ ବିଦ୍ୟୁତ୍ ସରବରାହ ବନ୍ଦ । ତେଣୁ ପାନୀୟ ଜଳ ଦୁଷ୍ପ୍ରାପ୍ୟ । ଦୋକାନ ବଜାର ଧ୍ୱସ୍ତ ବିଧ୍ୱସ୍ତ । ଝୁମ୍ପୁଡ଼ିରେ ରହୁଥିବା ଲୋକମାନେ ଜୀବନ ବିକଳରେ ପରିବାରସହ ବାଣୀବିହାରର ସ୍ୱାସ୍ଥ୍ୟକେନ୍ଦ୍ରରେ ଆଶ୍ରିତ । ଏହି ଘୋର ବିପତ୍ତି ସମୟରେ ଜଣେ ଅନ୍ତଃସତ୍ତ୍ୱା ମହିଳା ପ୍ରସବ ବେଦନାରେ ଛଟପଟ ।

ନିନି ତା'ର ସମସ୍ତ ଅତିରିକ୍ତ ବସ୍ତ୍ର (ନୂଆ ଓ ପୁରୁଣା) ଓ କିଛି ଖାଦ୍ୟ ହସ୍‌ପିଟାଲ ସାରା ଭର୍ତ୍ତି ଲୋକଙ୍କ ନିମନ୍ତେ ଦେଇଦେଲାଣି । ସାଇନ୍-ଡାଏ ହେତୁ କୁଳପତି ଭବନରେ ସରକାରଙ୍କ ତରଫରୁ ପୋଲିସ୍ ମୁତୟନ ହୋଇଥାଏ । ଆମ୍ଭମାନଙ୍କ ନିମନ୍ତେ ବଳକା ଯାହା ଖାଦ୍ୟ ଥିଲା ଡେରା ପକାଇଥିବା ପୋଲିସ୍ କୋଠିରେ ଅଟକି ରହିଥିବା ୱାଚ୍‌ମ୍ୟାନ୍ ସମସ୍ତେ ମିଳିମିଶି ବାଣ୍ଟିକୁଣ୍ଟି ଖାଇ ରହିଲୁ ।

ୟୁଜିସିର ସେକ୍ରେଟାରୀ ଦଣ୍ଡପାଟ ମହୋଦୟ ସେହି ସମୟରେ ଆମ କୋଠିରେ । ସେ ଦିଲ୍ଲୀ ଯିବା ପୂର୍ବରୁ ପାଞ୍ଚ ଦଶ ମିନିଟ୍ ପାଇଁ ମୋତେ ଦେଖା କରିବାକୁ ଆସିଥିଲେ । ପ୍ରବଳ ବାତ୍ୟାରେ ଉଡ଼ାଜାହାଜ ଉଡ଼ାଣ ବାତିଲ ହୋଇଯାଇଥିଲା । ସେ ଅଟକିଗଲେ କୋଠିରେ । ପ୍ରବଳ ବାତ୍ୟାରେ କାର୍ଯ୍ୟରତ ୱାଚ୍‌ମ୍ୟାନ୍ ଘରକୁ ଫେରି ନ ପାରି ଅଟକି ଗଲେ । ଲୋନି, ନିନି, ମୁଁ ଓ ଦଣ୍ଡପାଟଙ୍କ ସହିତ ୱାଚ୍‌ମ୍ୟାନ୍ ଓ ପୋଲିସ୍ । ହାରାହାରି ୨୦ ଜଣ ଗାଁରୁ ଆସିଥିବା ବସ୍ତାଏ ଚୁଡ଼ା ଆମ୍ଭମାନଙ୍କ ଲାଗି ଅଳ୍ପକିଛି ରଖି ବାକି ଚୁଡ଼ା ନିନି ହସ୍ପିଟାଲରେ ଆଶ୍ରିତ ବୁଭୁକ୍ଷୁ ଲୋକମାନଙ୍କ ନିମନ୍ତେ ପଠାଇଦେଲା ।

ଚୁଡ଼ା ମୁଢ଼ି ଖାଇ ଆମେ ରହୁଥିଲୁ । ବଗିଚାରେ ଜମି ରହିଥିବା ବର୍ଷାପାଣିକୁ ଫୁଟାଇ ଛାଣି ପିଉଥିଲୁ । ଭଗବାନଙ୍କ ଦୟାରୁ ରନ୍ଧନ ଗ୍ୟାସ୍ ଥିଲା ।

ଦଣ୍ଡପାଟ ଗୋଡ଼ରେ ପ୍ରବଳ ଯନ୍ତ୍ରଣା । ବାତ୍ୟାଜନିତ କଷ୍ଟ ସାଙ୍ଗକୁ ଶାରିରୀକ ଯନ୍ତ୍ରଣାରେ ସେ ଅସ୍ତବ୍ୟସ୍ତ ହୋଇପଡୁଥିଲେ । ନିନିର ସେବାରେ କିଛିଟା ଯନ୍ତ୍ରଣା ଉପଶମ ହେବାରୁ, ସେ ଆଶ୍ୱସ୍ତ ହୋଇ ଆବେଗରେ କହିପକାଇଲେ ପରିବାର ଠାରୁ ଦୂରରେ ଅଛି ବୋଲି ମୋର ଅନୁଭବ ହେଉ ନାହିଁ । ବାହାରେ ଏତେ ବର୍ଷା ଓ ବାତ୍ୟା

ସତ୍ତ୍ୱେ କୋଠୀ ଭିତରେ ବନ୍ଦୀ ହୋଇ ରହିଥିବା ସମସ୍ତ ବ୍ୟକ୍ତି ଅନ୍ତରଙ୍ଗତାର ମୁହୂର୍ତ୍ତଗୁଡ଼ିକୁ ସାଉଁଟି ଧରି ଏକତ୍ର ବାତ୍ୟାର ପ୍ରକୋପକୁ ମୁକାବିଲା କରୁଥିଲେ । ସେ ମୁହୂର୍ତ୍ତଗୁଡ଼ିକ ଅବିସ୍ମରଣୀୟ । ବାତ୍ୟାର କରାଳରୂପ ଅତୀବ ଭୟଙ୍କର । କୋଠୀର କରିଡ଼ରରେ ଥିବା ଝରକା ଉପୁଡ଼ି ଯାଇ ପବନରେ ଉଡ଼ିଯାଉଥିଲା । ଝରକାର କାଚସବୁ ଝଣଝଣ ଶବ୍ଦ କରି ଭାଙ୍ଗି ଗଦା ହୋଇପଡୁଥିଲା । ବିରାଟ ବିରାଟ ଝାଉଁଗଛ ଶୋଇଗଲା । ବାତ୍ୟାର ପ୍ରକୋପ ସମ୍ଭାଳି ନ ପାରି କୋଠି ଭିତରେ ଆମେ ଅସହାୟ ହୋଇ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରିବା ସମୟରେ ଜ୍ୱାଇଁ ବାପି ବର୍ଷାରେ ତିନ୍ତିବୁଡ଼ି ତାହାର ଅଢ଼ େଇ ମାସର ଝିଅଟିକୁ କୋଳରେ ଜାକି ଆସି ପହଞ୍ଚିଲା । ବର୍ଷା ମାଡ଼ରେ ଟିକି ନାତୁଣୀଟି ଆମର ଘାଇଲା ହୋଇଯାଇଥିଲା ।

ବାପି କଥାରୁ ଜାଣିଲୁ ସେ ଦାଣ୍ଡପଟେ, ବାଡ଼ିପଟେ ଡାକି ଡାକି ଥକି ଯାଇଥିଲା । ବର୍ଷା ମାଡ଼ରେ କୁନି ଝିଅଟି ସହ ଥରି ଥରି ନିରାଶ ହୋଇ ଯାଇଥିଲା । ତାହାର ଆତୁର ଡାକ କାହାରି କର୍ଣ୍ଣ ଗହ୍ୱରରେ ପ୍ରବେଶ କରିପାରିନଥିଲା, ବାତ୍ୟା ଓ ବର୍ଷାର ପ୍ରଚଣ୍ଡ ଗର୍ଜନରେ । ଆଚାର୍ଯ୍ୟ ବିହାରରେ ତାଙ୍କ ଘର ଭିତରେ ଛାତିଏ ପାଣି । ଏକ ମହଲା ଘର । ସମସ୍ତେ ସିଡ଼ି ଘରେ ଆଶ୍ରୟ ନେଇଛନ୍ତି । ତା' ବାପା ବୋଉ ଭାଇଭାଉଜ ଓ ଆମ ଝିଅ ମିତା । ନାତୁଣୀ ରିମ୍‌ଝିମ୍‌କୁ କେଉଁଠି ଶୁଆଇବେ ଏହି ବିପତ୍ତିରୁ ଝିଅକୁ ରକ୍ଷା କରିବାକୁ ଯାଇ ପ୍ରଚଣ୍ଡ ଝଡ଼ବାତ୍ୟାକୁ ଖାତିର ନ କରି ନିଜ ଜୀବନକୁ ବିପନ୍ନ କରି କେତେବେଳେ ଉପୁଡ଼ି ପଡ଼ିଥିବା ଗଛ ଉପରେ ଚଢ଼ି ତ କେଉଁ ତାଳ ତଳେ ଗଳି ପାଣିସୁଅ କାଟିକାଟି ସେ ଆସି ପହଞ୍ଚିଛି । ଥଣ୍ଡାରେ ଠକ୍‌ଠକ୍ ହୋଇ ଥରୁଛି ଗୋଟିପଣ । ଝିଅର ଅବସ୍ଥା ତଦ୍ରୂପ । ଏମିତି ଏକ ବର୍ଷଣ ମୁଖର ରାତିରେ କଂସ ବନ୍ଦୀଶାଳାରୁ ଭଗବାନ ଶ୍ରୀକୃଷ୍ଣଙ୍କୁ ବଞ୍ଚାଇବା ନିମନ୍ତେ ପ୍ରଚଣ୍ଡ ବର୍ଷାକୁ ଖାତିର ନ କରି ବସୁଦେବ ମଥୁରାରୁ ଗୋପପୁର ଅଭିମୁଖେ ବାହାରିଥିଲେ ।

ଆଜି ରାକ୍ଷସରୂପୀ ପ୍ରଚଣ୍ଡ ବାତ୍ୟା ଓ ବର୍ଷାର ଦାଉରୁ ବାପି ତା' ଝିଅକୁ ରକ୍ଷା କରିବା ପାଇଁ କୋଳରେ ଜାକିଧରି ସମସ୍ତ ବାଧାବିଘ୍ନକୁ ଏଡ଼ାଇ କୋଠିରେ ପହଞ୍ଚିଛି । ପିତାର ବାତ୍ସଲ୍ୟମମତା ପ୍ରକୃତିର ସମସ୍ତ ପ୍ରତିରୋଧକୁ ପରାହତ କରିଛି, ମୁହୂର୍ତ୍ତେ ମାତ୍ର କାଳବିଳମ୍ବ ନ କରି ଝିଅକୁ ନିନି କୋଳରେ ଦେଇ ଆମର ଶତବାଧା ସତ୍ତ୍ୱେ ବାପି ପୁନରାୟ ସେହି ଅବାରିତ ବର୍ଷାରେ ଫେରିଗଲା । ପିତାର କର୍ତ୍ତବ୍ୟ ପରେ ପୁତ୍ରର କର୍ତ୍ତବ୍ୟ ପାଳନ ନିମନ୍ତେ, ତା' ବାପା ବୋଉ ଯେ ସିଡ଼ି ଘରେ ଅପେକ୍ଷାରତ ।

କାଳବିଳମ୍ବ ନ କରି ନିନି, ରିମ୍‌ଝିମ୍‌କୁ ପୋଛିପାଛି ଦେଇ ଗରମ କପଡ଼ାରେ ଆବୃତ୍ତ କରିପକାଇଲା । ଳୁଳୁଳୁ କରି ଚାହିଁଥାଏ ରିମ୍‌ଝିମ୍ । ନିରୀହ ଚାହାଣିରେ

ଅବାକ୍ ଅବାକ୍ ଭାବ । କାନ୍ଦି ପାରୁ ନ ଥାଏ । ତେଲ ଗରମ କରି ରିମ୍‌ଝିମ୍‌ର ଥଣ୍ଡାରେ ଥରି ଉଠୁଥିବା ଦେହକୁ ମାଲିସ୍ କରି ସ୍ୱାଭାବିକ ଉତ୍ତାପ ଫେରାଇ ଆଣିବାର ପ୍ରଚେଷ୍ଟାରେ ଲାଗିପଡ଼ିଥାଏ ନିନି ।

ଆଖି ସାମ୍ନାରେ ଭାସି ଉଠିଲା ଅଗଣିତ ରିମ୍‌ଝିମ୍‌ଙ୍କର ଅସହାୟ ଅବସ୍ଥା । ଉଦ୍‌ଗତ ଅଶ୍ରୁକୁ ଚାପି ସହଜ ହେବାକୁ ଚେଷ୍ଟା କଲି ।

ଭାବିଲି ଏହି ଦୁର୍ଦ୍ଦିନରେ ଛାତ୍ର ଓ ଛାତ୍ରୀ (ସେମାନଙ୍କ ସଂଖ୍ୟା ପ୍ରାୟ ତିନି ହଜାର)ମାନେ ଯଦି ହଷ୍ଟେଲରେ ଥାଆନ୍ତେ ସେମାନଙ୍କୁ ମୁଁ କିପରି ସମ୍ଭାଳି ଥାଆନ୍ତି । ଆମେ ଏତିକି ଲୋକ ଖାଇବାକୁ ପାଉନାହୁଁ । ସେମାନଙ୍କୁ କ'ଣ କିପରି ଦେଇ ହୋଇଥାନ୍ତା । ପିଲାମାନଙ୍କ ବାପା ମା' ନିଶ୍ଚୟ ଭାବିଥାନ୍ତେ ଆମେ ତ କୁଳପତିଙ୍କ ତତ୍ତ୍ୱାବଧାନରେ ଆମ ପିଲାଙ୍କୁ ଛାଡ଼ିଛୁ । ଏ ପରିସ୍ଥିତିରେ ସେ ନିଶ୍ଚୟ ଆମ ପିଲାଙ୍କ କଥା ବୁଝୁଥିବେ । ନିରାପଦରେ ଥିବେ ଆମ ପିଲାମାନେ । ନୈତିକ ଦୃଷ୍ଟିକୋଣରୁ ଏ ଦାୟିତ୍ୱ ତ ନିଶ୍ଚୟ ମୋର । ପିତାମାତାଙ୍କ ଆଶା ନିଶ୍ଚୟ ଯଥାର୍ଥ । ମୁଁ ଯଦି ଏକ ଅଭିଭାବକ ହୋଇଥାଆନ୍ତି ଓ ମୋ ପିଲା ବାଣୀବିହାର ହଷ୍ଟେଲରେ ଥାଆନ୍ତେ, ତେବେ ମୁଁ ମଧ୍ୟ ଏହା ହିଁ ଆଶା କରନ୍ତି ।

କିନ୍ତୁ ହାଏ । ଏ ମହାବାତ୍ୟାର ଭୟଙ୍କର ରୂପ ଯିଏ ନଦେଖିଛି ସେ କେବେ ବିଶ୍ୱାସ କରିପାରିବ ନାହିଁ । ଏହି ମହାବାତ୍ୟାର ଦୁର୍ଦ୍ଦଶାକୁ କେତେକ କୁଚକ୍ରୀ କୁଜି ରାଜନେତାଙ୍କର ହୀନ ଷଡ଼ଯନ୍ତ୍ର ଛାତ୍ରୀମାନଙ୍କ ଜରିଆରେ ପରିସ୍ଥିତିକୁ ଅଧିକ ଗମ୍ଭୀର କରିଥାଆନ୍ତା ।

ଅକ୍ଟୋବର ୧୦ ତାରିଖରେ ମୋ ହୃଦୟରେ ବସି ବିଶ୍ୱବିଦ୍ୟାଳୟରେ ସାଇନ୍-ଡାଏ ଘୋଷଣା କରିବା ମହାବାହୁଙ୍କର ମୋ ପାଇଁ ପ୍ରଚ୍ଛନ୍ନ ନିର୍ଦ୍ଦେଶ ନ ଥିଲା ତ ? କାରଣ ଅକ୍ଟୋବର ୨୯ ତାରିଖରେ ହେବାକୁ ଥିବା ମହାବାତ୍ୟା ପ୍ରଭୁଜଗନ୍ନାଥଙ୍କର ଅଗୋଚର ନ ଥିବ । ସେ ତ ହର୍ତ୍ତାକର୍ତ୍ତା । ସବୁ ତ ତାଙ୍କର କୃତୀ । ଏହି ମହାବାତ୍ୟା ତ ମହାବାହୁଙ୍କର ସୃଷ୍ଟି । ଆଗାମୀ ମହାବାତ୍ୟାରେ ସୃଷ୍ଟି ହେବା ସମସ୍ୟା ଦୃଷ୍ଟିରୁ ବିଶ୍ୱ ବିଦ୍ୟାଳୟ ବନ୍ଦ କରିବା ଘୋଷଣା ଥିଲା ପ୍ରଭୁଙ୍କର ମୋ ପ୍ରତି ଯଥେଷ୍ଟ କରୁଣା ।

ମୋ ମନ ମଧ୍ୟରେ ଯଥେଷ୍ଟ ଶକ୍ତି ଓ ଧୈର୍ଯ୍ୟ ସଂଚାର କରାଇ ପ୍ରତ୍ୟେକ ଗମ୍ଭୀର ପରିସ୍ଥିତିକୁ ସମ୍ଭାଳିବାର ଯେଉଁ ସାହସ ଉଦ୍ରେକ ହୁଏ, ତାହା କେବଳ ଏକ ଅଦୃଶ୍ୟ ଶକ୍ତିର ପ୍ରେରଣା । ମହାବାହୁଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣାମ ଓ କୃତଜ୍ଞତା ଜଣାଇ, ତାଙ୍କ ସହାୟତାରେ ମହାବାତ୍ୟାର ମୁକାବିଲା କରିବାକୁ ଅଗ୍ରସର ହେଲି । ଏହି ଅଭିଯାନରେ

ଅନେକ ଶିକ୍ଷକ, କର୍ମଚାରୀ ଓ ଛାତ୍ର ସାମିଲ ହୋଇଥିଲେ । ଏମାନଙ୍କ ସହାୟତାରେ ଅଳ୍ପ କେତେଦିନ ମଧ୍ୟରେ ବାଣୀବିହାର କର୍ମମୁଖର ହୋଇ ଉଠିଲା । ନୂତନ ବୃକ୍ଷର ଚାରାରୋପଣ ହେଲା । ଉଜୁଡ଼ା ବଗିଚାରେ ଫୁଲ ଫୁଟିଲା । ସବୁରି ଓଠରେ ହସର ଜୁଆର ସୃଷ୍ଟି ହେଲା ।

ସବୁ ସେହି ସର୍ବଶକ୍ତିମାନ୍ ଈଶ୍ୱରଙ୍କର କରୁଣା । ତାଙ୍କ ଇଚ୍ଛା ବିରୁଦ୍ଧରେ କୌଣସି ଶକ୍ତି କାହାର କିଛି କ୍ଷତି କରିପାରିବ ନାହିଁ । ବାଣୀବିହାର ମୋ ସମୟରେ ଗୋଟିଏ ଆଗ୍ନେୟଗିରିଠାରୁ କୌଣସି ଗୁଣରେ କମ୍ ନୁହେଁ । କେଉଁ ମୁହୂର୍ତ୍ତରେ ଅଚାନକ ଲାଭା ଉଦ୍‌ଗୀରଣ ହେବ କହିହେବ ନାହିଁ । ରାଜନୈତିକ ଦୃଷ୍ଟିକୋଣରୁ ଅଥବା କେତେକ କୁଚକ୍ରୀ ତଥା ଗୁଣ୍ଡାଗୋଷ୍ଠୀ ହେଉ ସେମାନଙ୍କ ଇଚ୍ଛା ଅନୁସାରେ ଭୁଲ୍ ରାସ୍ତାରେ ନ ଚାଲିଲେ ଜୀବନକୁ ଦୁର୍ବିସହ କରିଦେବେ । ସେମାନଙ୍କର ମୁକାବିଲା କରିବାକୁ ହେଲେ ନୈତିକ ସାହସ ଦରକାର । ମୁଣ୍ଡଟେକି ଚାଲିବାର କ୍ଷମତା ହାସଲ କରିବାକୁ ହେଲେ, ଅନେକ ବିପଦର ସମ୍ମୁଖୀନ ହେବାକୁ ପଡ଼େ । ନୈତିକତା ଥିଲେ ସ୍ୱୟଂ ଭଗବାନ ଓହ୍ଲାଇ ଆସନ୍ତି ସାହାଯ୍ୟ ନିମନ୍ତେ । ସମସ୍ୟା ଘେରରେ ସେ ମୋତେ କେବେହେଲେ ଦିଗହରା ହେବାକୁ ଦେଇନାହାନ୍ତି । ସଠିକ୍ ରାସ୍ତାରେ ଚାଲିବାର ଶକ୍ତି, ସାହସ ଓ ଧୈର୍ଯ୍ୟ ସବୁ ତ ତାଙ୍କରି ଅବଦାନ । ସେହି ମହାବାହୁଙ୍କ ପାଦତଳେ ମୋର କୋଟି କୋଟି ପ୍ରଣାମ ।

ଶ୍ରୀଜଗନ୍ନାଥ, ରଥସଂଖ୍ୟା, ୨୦୧୨



# କାଲିଫର୍ଣ୍ଣିଆରେ ଘୋଷଯାତ୍ରା

ମୁଁ କ୍ରମଶଃ ଅନୁଭବକଲି ମୋତେ କେହି ସାହାରାଦେଇ କୌଣସି ସ୍ଥାନରେ ଶୁଆଇ ଦେଉଛନ୍ତି । କିଛି ସମୟ ପରେ ଜାଣିଲି ମୁଁ ଟ୍ରେନ୍‌ରେ, କିନ୍ତୁ ଟ୍ରେନ୍‌ରେ କାହିଁକି ? ମୁଁ କୁଆଡ଼େ ଯାଉଛି ? ମନେ ମନେ ଅନେକ ଭାବିଲି । କିନ୍ତୁ କିଛି ମନେ ପକେଇ ପାରିଲି ନାହିଁ ଟ୍ରେନ୍‌ରେ ଯାଉଛି କୁଆଡ଼େ ? ନିନିର ସ୍ୱର କାନରେ ବାଜିଲା । ତା'ର ସ୍ୱର ନିଆରା । ଅନେକ କୋଳାହଳ ମଧ୍ୟରେ ତା'ର କଣ୍ଠ ସ୍ୱର ବାରି ହୋଇଯାଏ । ମୋର ଟିକେ ଟିକେ ମନେ ପଡ଼ିଗଲା କିନ୍ତୁ ଅସ୍ପଷ୍ଟ; ନିନି କହୁଥିଲା-

"ଉଠ, ଚାହା ଆସିଲାଣି"

ମନେ ମନେ ଭାବିନେଲି : ତାହାହେଲେ ଆମେ ଦୁଇଜଣ ଟ୍ରେନ୍‌ରେ କୁଆଡ଼େ ଯାଉଛୁ, କିନ୍ତୁ କୁଆଡ଼େ ?

କଥା ବାର୍ତ୍ତାରୁ ଜାଣିଲି ସେ କମ୍ପାର୍ଟମେଣ୍ଟରେ ଅଛନ୍ତି ଲିସା ଓ ଲୋନି । ଅବଶ୍ୟ ଲୋନିର କଥା ଟିକେ ପରେ ଶୁଣିଲି । କିନ୍ତୁ ଆମେ ଟ୍ରେନ୍‌ରେ କୁଆଡ଼େ ଯାଉଛୁ ଏହି କଥାଟା ମୁଁ ଆଦୌ ମନେ ପକାଇ ପାରିଲି ନାହିଁ । ତେଣୁ ଟିକେ ଉଚ୍ଚ ସ୍ୱରରେ ପଚାରିଲି-

"ଆମେ ଟ୍ରେନ୍‌ରେ କୁଆଡ଼େ ଯାଉଛେ ?"

ଏହି କଥାରେ ସମସ୍ତେ ଆଶ୍ଚର୍ଯ୍ୟ ସହିତ ମ୍ରିୟମାଣ ହୋଇ ପଡ଼ିଲେ । କାରଣ ଖାସ୍ ଏହି ଯାତ୍ରା ପାଇଁ ବିଗତ ଚାରିମାସର ପ୍ରସ୍ତୁତି । ଏତେ ଦିନର ପ୍ରସ୍ତୁତି, ଅଥଚ ମୁଁ କହୁଛି ଆମେ କୁଆଡ଼େ ଯାଉଛୁ !

ମୋ କଥା ଶୁଣି ଏମାନଙ୍କ ମଧ୍ୟରେ ବଡ଼ ଭାଳେଣି । ସମସ୍ତେ ଭାବିଲେ ବୋଧେ ଏ ଯାତ୍ରା ଅସଫଳ ହୋଇଗଲା । ତା'ପରେ ନିନି କହିଲା- "ବାପାଙ୍କୁ ଏ ସିଟ୍‌କୁ ଆଣ; ଆଉ ଲୋରାକୁ ବାପାଙ୍କ କୋଳକୁ ଦିଅ ।"

ମୋ କୋଳରେ ଲୋରା; ଲୋନି ଓ ଲିସାର ଝିଅ । କିଛି ସମୟ ନୀରବ ରହିବା ପରେ ମୋର ମାନସପଟରେ ଆସ୍ତେ ଆସ୍ତେ ସବୁ ସ୍ପଷ୍ଟ ହେବାକୁ ଲାଗିଲା ।

ସ୍ମରଣ କଲି ଓ ଧୀରେ ଧୀରେ ସ୍ୱଗୋତୋକ୍ତି କଲି-

"ତାହାହେଲେ ଆମେ ଯାଉଛୁ କାଲିଫର୍ଣ୍ଣିଆ
ତିନି ଠାକୁରଙ୍କ ଘୋଷ ଯାତ୍ରାରେ ଯୋଗ ହେବାକୁ ।"

କାଲିଫର୍ଣ୍ଣିଆରେ ଅଛନ୍ତି ରାଜା, ରାଣୀ, ଆଉ ସେମାନଙ୍କର ଏକମାତ୍ର ପୁଅ ରିକି ସ୍ପନ୍ଦନ । ସ୍ପନ୍ଦନର ଷୋଳପୂଜା ହେବ ଓ ତିନିଠାକୁରଙ୍କର ହେବ ଦ୍ୱିତୀୟ ରଥଯାତ୍ରା । ଏହି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଆମେ ଉତ୍କଳିକା ଜରିଆରେ ପୁରୀରେ ନିର୍ମାଣ କରାଇ ଆଣିଥିଲୁ । ଠାକୁରମାନଙ୍କ ଉଚ୍ଚତା ହେବ ପ୍ରାୟ ଅଢ଼େଇ ଫୁଟରୁ ଊର୍ଦ୍ଧ୍ୱ । ସେଦିନ ସକାଳ, ତିନି ଠାକୁରଙ୍କୁ ଉତ୍କଳିକାରୁ ଆଣିବାକୁ କୌଣସି ଅଟୋ ରାଜି ହେଲେ ନାହିଁ କାରଣ ଅଟୋରେ ସଂକୁଚିତ ସ୍ଥାନ ହେତୁ ଠାକୁରମାନେ ଜାଗା ହେବେ ନାହିଁ । ଶେଷରେ ଜଣେ ରାଜି ହେଲା; ଟିକେ ବଡ଼ ଅଟୋ ରିକ୍ସା ଓ ଚାଳକର ନାମ ମାନସ । ସେ ଯତ୍ନ ସହକାରେ ଠାକୁରମାନଙ୍କୁ ତା' ଅଟୋରେ ଆଣି ଆମ ଘରେ ଧର୍ମବିହାରରେ ପହଞ୍ଚାଇଲା । କୌଣସି ପାରିଶ୍ରମିକ ନେବାକୁ ରାଜି ହେଲା ନାହିଁ । କହିଲା-

"ସକାଳୁ ସକାଳୁ କାହା ମୁହଁ ଚାହିଁଥିଲି କେଜାଣି ପ୍ରଥମେ ମୋ ଅଟୋରେ ଜଗତର ନାଥ ଶ୍ରୀ ଜଗନ୍ନାଥ ଭାଇ ଭଉଣୀଙ୍କୁ ନେଇ ବିଜେ ହେଲେ । ଠାକୁରଙ୍କର ପାଦ ପଡ଼ିଲା । ମୁଁ ଧନ୍ୟ ହୋଇଗଲି । ମୋ ଭାଗ୍ୟରେ ଥିଲା ପୁରୀ ନ ଯାଇ ମଧ ଠାକୁରଙ୍କ ରଥ ଟାଣିବାର ସୌଭାଗ୍ୟ ଲାଭ । ଏତିକି କ'ଣ ମୋର ପାରିଶ୍ରମିକ ପାଇଁ ଯଥେଷ୍ଟ ନୁହଁ ଯେ ମୁଁ ଆପଣମାନଙ୍କ ଠାରୁ ପାରିଶ୍ରମିକ ନେବି !"

ମାନସର ଭକ୍ତି ଭାବ ଦେଖି ମୁଗ୍ଧ ହୋଇଯାଇଥିଲି । ମୋର ମନେ ହେଲା ତ୍ରେତୟା ଯୁଗରେ ପ୍ରଭୁ ରାମଚନ୍ଦ୍ରଙ୍କ ପାଦ ସ୍ପର୍ଶରେ ଧୀବରର ନାବ ପବିତ୍ର ହୋଇଯାଇଥିଲା; ଅହଲ୍ୟା ଜୀବନ୍ତ ହୋଇଯାଇଥିଲେ । ଏବଂ ଏ କଳିଯୁଗରେ ମାନସ ବୋଧେ ଠାକୁରଙ୍କ ପାଦସ୍ପର୍ଶରେ ନିଜକୁ ଧନ୍ୟ ମନେ କରୁଛି ।

ଅଟୋ ଚାଳକ ମାନସ ଆମଠୁ ବିଦାୟ ନେବାବେଳେ ତା'ର ମୋବାଇଲ୍ ଫୋନ୍ ନମ୍ବର ଦେଇଗଲା ଆଉ କହିଲା-

"ଆପଣଙ୍କର କେଉଁଠିକି ଯିବାର ହେଲେ ମୋତେ ଡାକିବେ । ମୁଁ ଆସିବି ।"

ମାନସକୁ ବିଦାୟ ଦେଇ ମୁଁ କିଛି ସମୟ ନିରବରେ ଛିଡ଼ା ହୋଇ ରହିଲି ଓ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିଲି ତା'ର ଅଟୋ ମୋ ଦୃଷ୍ଟିରୁ ହଜିଯିବା ପର୍ଯ୍ୟନ୍ତ ।

ଠାକୁରମାନେ ରହିଲେ ଆମ ଧର୍ମ ବିହାର ଘରେ ଓ ନିନି ସେମାନଙ୍କୁ ଆଳତିରେ ଆପ୍ୟାୟିତ କରୁଥିଲା । କିଛି ଦିନ ପରେ ସେମାନଙ୍କୁ ପ୍ୟାକେଟ୍ କରି କାଲିଫର୍ଣ୍ଣିଆ ପଠାଇବାର ବନ୍ଦୋବସ୍ତ କରାଗଲା ।

କାର୍ଲିଫର୍ଣ୍ଣିଆର ସମସ୍ତ ଓଡ଼ିଆ ଓ ଅନ୍ୟାନ୍ୟ ଭକ୍ତମାନେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଉତ୍ସୁକ ନୟନରେ ଚାହିଁ ରହିଥିଲେ । ଠାକୁରମାନେ ପହଞ୍ଚିଲା ପରେ ଭକ୍ତମାନେ କୀର୍ତ୍ତନ ଓ ଭଜନ ମାଧ୍ୟମରେ ଠାକୁରମାନଙ୍କୁ ସ୍ୱାଗତ କଲେ ଓ ମନ୍ଦିର ପ୍ରବେଶ କରାଇଲେ । ଏହା ଥିଲା ଦୁଇ ହଜାର ବାର ମସିହା ଓ ସେହି ବର୍ଷ ମଧ୍ୟ ସେମାନେ ଏ ଠାକୁରମାନଙ୍କର ପ୍ରଥମ ରଥଯାତ୍ରା ଆରମ୍ଭ କଲେ । ସେଇଠି ଜଣେ ବିଶ୍ୱକର୍ମା ରଥ ନିର୍ମାଣ କଲେ । ବଡ଼ବୋହୂ ରାଣୀ ପୁରୀରୁ ଠାକୁରମାନଙ୍କର ପୋଷାକ ଓ ସୁନାବେଶର ବରାଦ କରାଇ ନେଇଥିଲା । ରାଜା ଓଡ଼ିଶାରୁ ଦୁଇଟି ମୃଦଙ୍ଗ ଓ କୁବୁଜି ଇତ୍ୟାଦି ନେଇକି ଗଲା । ସମସ୍ତଙ୍କର ସହଯୋଗରେ ଏକ ଭାବାବେଗମୟ ବାତାବରଣରେ ପ୍ରଥମ ରଥଯାତ୍ରା ପାଳନ କରାଯାଇଥିଲା ।

ଆମେ ଆମ ଗାଁରେ ଗୋଟିଏ ସୁଦୃଶ୍ୟ ମନ୍ଦିର ନିର୍ମାଣ କରି ଶ୍ରୀଜଗନ୍ନାଥ, ବଳଭଦ୍ର ଓ ମା' ସୁବଦ୍ରାଙ୍କ ମୂର୍ତ୍ତି ସ୍ଥାପନ କଲୁ ୨୦୦୮ ମସିହାରେ ଅଥଚ ଅସହଯୋଗ ଓ ପ୍ରତିକୂଳ ବାତାବରଣ ହେତୁ ଏ ପର୍ଯ୍ୟନ୍ତ ଆମେ ରଥଯାତ୍ରା ଆରମ୍ଭ କରି ପାରିନାହୁଁ ।

ଏହିଠାରେ ଅନେକ ଦିନ ତଳର ଗୋଟିଏ ବିଷୟ ସ୍ମରଣ କରୁଛି । ପାହାଡ଼ ତଳେ ଥିବା ଜ୍ୟୋତିବିହାର ପରିସର କ୍ୱାଟର ନମ୍ବର ଏ-୫ । ଉପର ମହଲାରେ ଠାକୁର ଥାଆନ୍ତି । ମଉଁଆ (ମୋ ବୋଉ) ଠାକୁର ପୂଜା କରେ । ପୂର୍ବରୁ ନିନି ପୂଜା କରୁଥିଲା । କିନ୍ତୁ ମଉଁଆ ଗାଁରୁ ଆସିଲା ପରେ ଠାକୁର ପୂଜା ତା'ର । ଏହା ବ୍ୟତୀତ ସେ ଅବଶିଷ୍ଟ ସମୟ ନାତି ନାତୁଣୀ ରାଜା, ମିତା ସଙ୍ଗେ ଖେଳିବା ସେମାନଙ୍କୁ ଗପ ଶୁଣାଇବାରେ ବ୍ୟସ୍ତ ରହେ । ତା'ର ସବୁ ସମୟ ପିଲାଙ୍କ ସଙ୍ଗେ ହସଖୁସିରେ ବିତିଯାଏ ।

ଠାକୁର ଆଲମିରାରେ ରହି ପୂଜା ପାଉଥାନ୍ତି । ହଠାତ୍ ଦିନେ ରାଜା ଧଇଁସଇଁ ହୋଇ ଦୌଡ଼ି ଦୌଡ଼ି ଆସି ମୋ ପାଖରେ ପହଞ୍ଚିଲା, ଆଉ କହିଲା-

"ବାପା, ବାପା ! ଜଲଦି ଆସ ଠାକୁରମାନେ ଆମ ଘରୁ ପଳାଇବେ"

ଠାକୁରଙ୍କ ଫଟୋର ପଛ ପାଖରୁ ପଟି ବାହାରି ଯାଇ ସାମାନ୍ୟ ଫାଙ୍କ ହୋଇଛି । ସେହି ଫାଙ୍କ ମଧ୍ୟ ଦେଇ ଠାକୁରମାନେ ଯେ ବାହାରିଯିବେ ତାହାଥିଲା ରାଜାର ଆଶଙ୍କା ।

ରାଜାକୁ କହିଲି- "ଠାକୁରମାନେ ମନ୍ଦିରରେ କି ଫଟୋ ଫ୍ରେମ ମଧ୍ୟରେ ରହି ନ ଥାଆନ୍ତି । ସେମାନେ ରହିଥାଆନ୍ତି ଲୋକର ମନ ମଧ୍ୟରେ ।"

ହୁଏତ ତା' ପିଲା ମୁଣ୍ଡରେ ଏ କଥା ଭୁକି ନ ଥିବ । କିନ୍ତୁ ମୋତେ ଆଉ କୌଣସି ପ୍ରଶ୍ନ ନ ପଚାରି ସେ ମନ ଖୁସିରେ ଡେଇଁ ଡେଇଁ ଖେଳିବାକୁ ଚାଲିଗଲା

ଅଠା ଦେଇ ପଟିକୁ ଯୋଡ଼ିଦେଲା ପରେ, ଠାକୁରଙ୍କ ପଳେଇଯିବା ରାସ୍ତା ବନ୍ଦ ଦେଖି ସେ ହୁଏତ ଆଶ୍ୱସ୍ତ ହୋଇଗଲା । ତା' ପିଲା ମନରେ କ'ଣ ଖେଳୁଥିଲା ମୁଁ ଜାଣେନା କିନ୍ତୁ ଆଉ ସେ ପ୍ରଶ୍ନ ଉ ।ପନ କରି ନାହିଁ ଓ ସେତେବେଳେ ମୋ କଥା ବୁଝିଲାକି ନାହିଁ ତାହା ଉପରେ ମୁଁ କୌଣସି ଗୁରୁତ୍ୱ ଦେଇ ନ ଥିଲି ।

କିନ୍ତୁ ଯେଉଁଦିନ ସେ ନିମ୍ବକାଠରେ ନିର୍ମିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ତିନି ମୂର୍ତ୍ତି ଧରି ହଠାତ୍ ବାଣୀବିହାରରେ ଥିବା ଏ-୩ ଘରେ ପହଞ୍ଚିଗଲା, ସେଦିନ ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଇଥିଲୁ । ଜ୍ୟୋତିବିହାରରୁ ବାଣୀବିହାର । ଏହା ମଧ୍ୟରେ ଅନେକ ବର୍ଷ ବିତି ଯାଇଥିଲା । ରାଜା ସ୍କୁଲ, କଲେଜ ଓ ପରିଶେଷରେ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ସମାପ୍ତ କଲା ପରର ଘଟଣା । ରାଜାର ପିଲାଦିନର କାଗଜ ଫଟୋର ସ୍ମୃତି କଳେବରର ଆକାର ଧାରଣ କରି ଆମ ଘରେ ବିଦ୍ୟମାନ । ଖଟୁଲୀ ଉପରେ ଠାକୁରଙ୍କୁ ସ୍ଥାପନା କରି ପୂଜା ଅର୍ଚ୍ଚନା କରାଗଲା । ଗାଆଁରେ ମଧ୍ୟ ଆମ ଘରର ଇଷ୍ଟ ଦେବତା ଭାଗବତ ଗୋସାଇଁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରୂପରେ ପୂଜା ପାଆନ୍ତି ।

ବାଣୀବିହାରରେ ଠାକୁରଙ୍କୁ ଛାଡ଼ି ରାଜା ବିଦେଶ ଗଲା ଉଚ୍ଚତର ଶିକ୍ଷା ଓ ଗବେଷଣା ପାଇଁ । ସାଙ୍ଗରେ ନେଇଗଲା କାଠ ତିଆରି କୁନି କୁନି ଜଗନ୍ନାଥ । ବଳଭଦ୍ର, ସୁଭଦ୍ରା, ପ୍ରଭୁ ଜଗନ୍ନାଥ ତା'ର ମନକୁ ଆଚ୍ଛନ୍ନ କରି ରଖିଥିଲେ । ତେଣୁ ଆମେରିକାର ଦକ୍ଷିଣ କାଲିଫର୍ଣ୍ଣିଆରେ ଥିବା ମନ୍ଦିରରେ ଜଗନାଥଙ୍କର ସ୍ଥାପନା ନିମନ୍ତେ ସମସ୍ତ ଓଡ଼ିଆ ଏକତ୍ରିତ ହୋଇ ପରିଶେଷରେ ଆଠ ଫୁଟରେ ଆଠ ଫୁଟ ସ୍ଥାନ ସଂରକ୍ଷିତ କରି ପାରିଥିଲେ । ଠାକୁର ମନ୍ଦିରରେ ବିଜେ ହେଲା ପରେ ସେହିବର୍ଷ ସେମାନେ ରଥଯାତ୍ରା ଅନୁଷ୍ଠିତ କରିଥିଲେ ।

ଦ୍ୱିତୀୟ ରଥଯାତ୍ରାରେ ଯୋଗଦେବା ନିମନ୍ତେ ରାଜା, ରାଣୀ ଆମକୁ ସେଠାକୁ ଯିବାକୁ ଆଗ୍ରହ ପ୍ରକାଶ କଲେ । ଲୋନି, ଲିସା ଓ ପାଞ୍ଚମାସର ଟିକି ଲୋରାକୁ ସାଙ୍ଗରେ ନେଇ ନିନି ଓ ମୁଁ କାଲିଫର୍ଣ୍ଣିଆ ଅଭିମୁଖେ ରାଜଧାନୀ ଏକ୍ସପ୍ରେସ୍‌ରେ ଦିଲ୍ଲୀ ଅଭିମୁଖେ ଯାତ୍ରା କରୁଛୁ । ତା'ପରେ ଆମେ ସମସ୍ତେ ଯିବୁ ଉଡ଼ାଜାହାଜରେ ଚାଇନା ବାଟ ଦେଇ ଲସ୍‌ଆଞ୍ଜେଲସ୍ ସହର । ଏହିସବୁ କଥା ମୋର ସବୁ ସ୍ମରଣ ହୋଇଗଲା ।

କିନ୍ତୁ ଟ୍ରେନ୍‌ରେ ମୋର ଏହି ଦୁର୍ଘଟଣା ଦ୍ୱାରା ସମସ୍ତଙ୍କ ମନରୁ ଆନନ୍ଦ ପାଣି ଫୋଟକା ପରି ମିଳାଇଗଲା ।

"ଆମେ କୁଆଡ଼େ ଯାଉଛୁ ?"

ଏହି ପ୍ରଶ୍ନ ସମସ୍ତଙ୍କୁ ଚିନ୍ତାରେ ପକାଇଦେଲା । ଆମର ସମସ୍ତ ଆୟୋଜନ ଓ ଉଦ୍ଦୀପନା କ'ଣ ସତରେ ମିଳାଇଯିବ । ମୋର, ନିନିର ଓ ଲୋନିର ପାସପୋର୍ଟ ଥିଲା । ଲୋରା (ପ୍ରାଚୀ ପଲଙ୍କି) ଓ ଲିସାର ପାସ୍‌ପୋର୍ଟ ତିଆରି ହେଲା । ସମସ୍ତେ କଲିକତା ଯାଇ ଆମେରିକା ଯିବାକୁ ଭିସା ପାଇଁ ଇଣ୍ଟରଭିଉ ଦେଲୁ । ଜଗନ୍ନାଥଙ୍କ ଦୟାରୁ ଦଶବର୍ଷ ପାଇଁ ଭିସା ମିଳିଗଲା ଆମେ ଯିବାର ଠିକ୍ ଦିନକ ପୂର୍ବରୁ । ଆଗରୁ ଟ୍ରେନ ଓ ପ୍ଲେନ୍ ଟିକେଟ ହୋଇଥିଲା ।

କିଛି ସମୟ ସ୍ଥିର ହୋଇ ବସି ବସି ଭାବିଲି ନିନି କଥା ଶୁଣି ଚା' ପିଇବା ପାଇଁ ମୁଁ ଉଠିଥିବି ଓ କଡ଼ ବର୍ଥରେ ହାତ ରଖି ଉଠିଲା ବେଳକୁ ହାତ ନିଶ୍ଚୟ ଖସି ଯାଇଥିବ ଓ ମୁଁ ତଳେ ପଡ଼ି ଯାଇଥିବି । ଟ୍ରେନ୍ ସିଟ୍‌ର ଲୁହା ରେଲିଂରେ ମୁଣ୍ଡରେ ଆଘାତ ଲାଗିଥିବ ଓ ସେଥିଯୋଗୁଁ ମୁଁ ସଂଜ୍ଞାହୀନ ହୋଇ ପଡ଼ିଲି ଓ ଏହା ଅଚାନକ ଘଟିବାରୁ ସ୍ମରଣ ଶକ୍ତି କିଛି ସମୟ ପାଇଁ ସ୍ଥିର ହୋଇଯାଇଥିବ ।

କିନ୍ତୁ ଦରିଆପାରିରେ ଥିବା ତିନି ଠାକୁରଙ୍କୁ ରଥରେ ଦେଖିବାର ପ୍ରବଳ ଇଚ୍ଛାକୁ କ'ଣ ପ୍ରଭୁ ଜଗନ୍ନାଥ ଏଡ଼େଇ ଦେଇପାରିବେ ! ଦାସିଆ ବାଉରୀ ହାତରୁ ଦିନେ ନଡ଼ିଆ ଟେକି ନେଇଥିଲେ । ବନ୍ଧୁ ମହାନ୍ତିକୁ ଯେ ଅନ୍ନ ଦାନ କରିଥିଲେ, ଭକ୍ତ ସାଲବେଗ ପାଇଁ ଯାହାଙ୍କର ରଥ ଅଟକି ଯାଇଥିଲା, ସେ କ'ଣ ଆମକୁ ନିରାଶ କରିଥାନ୍ତେ ! ଆମେ ଏତେ ବଡ଼ ଭକ୍ତ ନୋହୁଁ କିନ୍ତୁ ଜଗବନ୍ଧୁ ସର୍ବସ୍ୱ ପ୍ରାଣ ଆମର, ତା' ଭଜନ କୀର୍ତ୍ତନରେ ବିମୋହିତ ଆମ ପ୍ରାଣ । ତାଙ୍କରି କୃପାରୁ ଚେତା ଫେରି ପାଇଲି ।

ଲିସାକୁ ପଚାରିଲି: ତୁ କ'ଣ ଭାବିଥିଲୁ ? ସେ କହିଲା- "ମୁଣ୍ଡରେ ହୁଏତ ଗୁରୁତର ଆଘାତ ଲାଗିଛି ଯାହା ଫଳରେ କି ଆପଣ କିଛି ସମୟ କିଛି ଜାଣି ପାରିଲେ ନାହିଁ । ଡାକ୍ତରଙ୍କୁ ଦେଖାଇବାକୁ ପଡ଼ିବ ।"

କିନ୍ତୁ ଲୋନିକୁ କିଛି ପଚାରି ନ ଥିଲି । ଲୋନି ତା' ମନକଥା ସହଜରେ କିଛି କହେ ନାହିଁ । କିନ୍ତୁ ଲସ୍ ଆଞ୍ଜେଲସ୍ ବିମାନ ବନ୍ଦରରେ ପହଞ୍ଚିବା ମାତ୍ରେ ମନର ଉଦ୍‌ବେଗକୁ ସମ୍ଭାଳି ନ ପାରି ଲୋନି ଘଟଣାଟି ରାଜାକୁ ଜଣାଇ ଦେଲା । ସିଏ ବା ଆଉ କେତେ ସମୟ ନିଜ ଭିତରେ ଆକସ୍ମିକ ଦୁର୍ଘଟଣାକୁ ଦବାଇ ରଖିପାରିବ !

ଏ ସଂପର୍କରେ ରାଜାର ପ୍ରଶ୍ନକୁ ଗୁରୁତ୍ୱ ନ ଦେଇ ମୁଁ କହିଲି- "ସେ ତ ଅତୀତ ! ରଥଯାତ୍ରା କେବେ ? ଆଉ ରାଣୀ ଓ ରିକି ?"

ରାଣୀ ରୋଷେଇରେ ବ୍ୟସ୍ତ ଏବଂ ଗାଡ଼ିରେ ସ୍ଥାନର ଅଭାବ ଅନୁଭବ କରି ମୋତେ ଏକା ଆସିବାକୁ ପଡ଼ିଲା - ରାଜା କହିଲା । ପହଞ୍ଚିବା ମାତ୍ରେ ରାଣୀ ଦୌଡ଼ି ଆସି ଲିସା କୋଳରୁ ଲୋରାକୁ ନେଇଗଲା । ଲୋରା ଏ କୋଳରୁ ସେ କୋଳକୁ ବେଶ୍ ସ୍ୱଚ୍ଛନ୍ଦରେ ଚାଲିଯାଏ । ଚିହ୍ନା ଅଚିହ୍ନା ବାରେ ନାହିଁ । ଆଦୌ ଦେଖି ନ ଥିବା ବଡ଼ମାମାର କୋଳକୁ ଆନନ୍ଦରେ ଡେଇଁ ପଡ଼ିଲା ।

ରଥଯାତ୍ରା କିଛିଦିନ ଡେରିଥାଏ । କାର୍ଯ୍ୟ କ୍ଷେତ୍ରରୁ ସମସ୍ତଙ୍କୁ ଛୁଟି ମିଳିବା ସମ୍ଭବପର ହେଉ ନ ଥିବାରୁ ବିଦେଶରେ ପର୍ବପର୍ବାଣି ନିର୍ଦ୍ଦିଷ୍ଟ ଦିନରେ ପାଳନ କରି ହୁଏ ନାହିଁ । ତେଣୁ ସପ୍ତାହାନ୍ତ ଛୁଟି ଦିନକୁ ସମସ୍ତେ ଅପେକ୍ଷା କରିଥାଆନ୍ତି ।

ଠାକୁରଙ୍କ ପୋଷାକ ଓ ଟାହିଆ ତିଆରି ନିମନ୍ତେ ଆବଶ୍ୟକୀୟ ଉପକରଣ ରାଣୀ ଖୋଜି ଖୋଜି ମାର୍କେଟରୁ ନେଇଆସିଲା । ଲିସା ରାତିଦିନ ଏକାକାର କରି ପୋଷାକ ପ୍ରସ୍ତୁତିରେ ଲାଗି ପଡ଼ିଲା ।

ଯେଉଁ ଠାକୁରଙ୍କୁ ଧର୍ମ ବିହାର ଘରେ କିଛିଦିନ ପାଇଁ ପୂଜା ଆଳତି କରିଥିଲୁ ସେ ଆଜି ଆମ ସମ୍ମୁଖରେ । କେବଳ ଟ୍ରେନ୍‌ରେ ନୁହେଁ ଏମିତି ଆହୁରି ଦୁଇଥର ମୁଁ ପଡ଼ିଯାଇ ଚେତାଶୂନ୍ୟ ହୋଇଛି । କିନ୍ତୁ ଜଗତର ନାଥ ଜଗନ୍ନାଥଙ୍କର ଅପାର କରୁଣାରୁ ଚେତନା ଫେରି ଆସିଛି ।

ଠାକୁରଙ୍କ ମୁହଁକୁ ଚାହିଁଲି । ପହଣ୍ଡିରେ ଆସୁଛନ୍ତି ହଲିହଲି, ଝୁଲିଝୁଲି । ରାଜାର ଉତ୍ସାହ ଉଦ୍ଦୀପନା ଦେଖି ମୁଗ୍ଧ ହୋଇଗଲି । ରାଜା ଓ ଅନ୍ୟମାନେ ପହଣ୍ଡି କରାଇ ତିନି ଠାକୁରଙ୍କୁ ରଥରେ ବିଜେ କରାଇଲେ ।

ଶଙ୍ଖ, ଘଣ୍ଟା, ମୃଦଙ୍ଗ, କରତାଳ ଓ ହରିବୋଲ ହୁଳିହୁଳି ଶବ୍ଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ । ତୃପ୍ତିର ଝଲକ ରାଜା ଓ ଅନ୍ୟମାନଙ୍କ ମୁହଁରେ । ରାଜାର ବିହ୍ୱଳିତ ଭାବ ଦର୍ଶନୀୟ । ସେ ଅବିରତ ବାଜା ବଜାଇ ମଧ୍ୟ କ୍ଳାନ୍ତିହୀନ । ଓଡ଼ିଆର ପ୍ରାଣ କଳାଠାକୁରଙ୍କର ପ୍ରେମବାରୀରେ ପ୍ରବାସୀ ଓଡ଼ିଆମାନଙ୍କର ଅବଗାହନ ମନେ ପକାଇ ଦେଉଥିଲା ଓଡ଼ିଶାର ସଂସ୍କାର, ସଂସ୍କୃତି ଓ ପରମ୍ପରାକୁ । ରାଜା ଯେବେ ଓଡ଼ିଶା ଆସେ ସର୍ବ ପ୍ରଥମେ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରେ । ଏହି ପରମ୍ପରା ତା'ର ଏଯାବତ୍ ରହି ଆସିଛି ।

ଠାକୁର ମାଉସୀ ମାଆ ଘରେ ରହିଲେ । ଅର୍ଥାତ୍ ମନ୍ଦିର ଚତୁଃପାର୍ଶ୍ୱରେ ଘୂରି ଆସି ରଥ ମନ୍ଦିର ସାମ୍ନାରେ ରହିଲା ଓ ଠାକୁରଙ୍କୁ ପହଣ୍ଡି କରି ମନ୍ଦିରସ୍ଥ ଏକ କୋଠରୀରେ ରଖାଗଲା । ପୁନରାୟ ଦଶଦିନ ପରେ ସପ୍ତାହାନ୍ତ ଛୁଟି ଦିନରେ ବାହୁଡ଼ା ଯାତ୍ରା ପୂର୍ବ

ପଦ୍ଧତିରେ ଅନୁଷ୍ଠିତ । ଠାକୁରଙ୍କର ସୁନାବେଶ । ମନ୍ଦିର ପରିସର ଲୋକାରଣ୍ୟ । ପିଲାମାନେ ଷ୍ଟଲ କରି ଖାଦ୍ୟ ପଦାର୍ଥ କ୍ରୟ ବିକ୍ରୟରେ ମଗ୍ନ । ଛୋଟକାଟିଆ ମେଳାର ଦୃଶ୍ୟ । ଲୋରା ଥିଲା ସମଗ୍ର ଉତ୍ସବର କେନ୍ଦ୍ରବିନ୍ଦୁ । ଏ କୋଳରୁ ସେ କୋଳ ସେ ଖୁସି ମନରେ ଡେଇଁ ଡେଇଁ ଯାଉଥିଲା । ସମସ୍ତ ଆନନ୍ଦ ଉଦ୍ଦୀପନାର ଅନ୍ତହେଲା ଠାକୁରମାନେ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ ପରେ ପୁଣି ଆସନ୍ତା ବର୍ଷ ରଥଯାତ୍ରାକୁ ଅପେକ୍ଷା । କାଲିଫର୍ଣ୍ଣିଆର ଏହି ଅବିସ୍ମରଣୀୟ ରଥଯାତ୍ରା ଅନନ୍ୟ ।

୨୦୧୮ ନଭେମ୍ବର ୩ ତାରିଖରେ ହଠାତ୍ ଆବିଷ୍କାର କଲି ଅଟୋଚାଳକ ମାନସର ଫୋନ୍‌ନମ୍ବର । ଆନନ୍ଦର ଆତିଶଯ୍ୟରେ କୌତୂହଳ ପୂର୍ବକ ତାକୁ ଫୋନ୍ ଲଗାଇଲି । ପରିଚୟ ପାଇବା ମାତ୍ରେ ସେ ମଧ୍ୟ ଖୁସିରେ ଗଦ୍ ଗଦ୍ ହୋଇ ଉଠିଲା ଏବଂ କହିଲା - ସାର୍, ଠାକୁରଙ୍କୁ ମୋ ଗାଡ଼ିରେ ଆଣିବା ପରଠାରୁ ମୋ ଭାଗ୍ୟ ଖୋଲିଗଲା । ବିମାନବନ୍ଦରରେ ଚାକିରି ପାଇଲି । ବାହାଘର ହୋଇ ଏବେ ଦୁଇଟି ଝିଅର ବାପା, ସଂସାର ସୁଖରେ ଚାଲିଛି । ଆପଣଙ୍କୁ ଦେଖା କରିବି ନିଶ୍ଚୟ ।

ଜଗନ୍ନାଥଙ୍କର ଅପାର କରୁଣା । ସମ୍ମୋହିତ ଆଖି ଦୁଇଟି ପାଗଳ କରିଦିଏ ଭକ୍ତକୁ । ଓଡ଼ିଶାରୁ କାଲିଫର୍ଣ୍ଣିଆ ବିଜେ ମୋତେ ଅନେକ ସମୟରେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କେତେ କମ୍ ସମୟରେ ଅଚାନକ୍ ରାଜାର ଅନୁରୋଧରେ ଠାକୁର ଉଡ଼ି ଚାଲିଗଲେ ସୁଦୂର ବିଦେଶ ଭୂଇଁକୁ ଭକ୍ତମାନଙ୍କୁ ଦର୍ଶନ ଦେବାକୁ ଓ ସେମାନଙ୍କର ସୁଖ ଦୁଃଖରେ ନିଜକୁ ହଜେଇ ଦେବାକୁ । ତାଙ୍କର ଲୀଳା ଅସୀମ ।



# ମେଲଣ

ମିଳନ ଶବ୍ଦର ଅପଭ୍ରଂଶ ହୋଇ ମେଲଣ ଶବ୍ଦର ସୃଷ୍ଟି । ଫଗୁଣ ମାସରେ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ମେଲଣରେ ଭିନ୍ନ ଭିନ୍ନ ଗ୍ରାମର ଠାକୁରମାନେ ବିମାନରେ ଆସି ମେଲଣ ପଡ଼ିଆରେ ବିଜେ ହୁଅନ୍ତି । ଏହି ମେଲଣ ସର୍ବଜନ ଆଦୃତ । ମୋ ଜୀବନରେ ଏହି ମେଲଣର ମହତ୍ତ୍ୱ ଅନନ୍ୟ । ଅନେକ ପର୍ବପର୍ବାଣି ମଧ୍ୟରୁ ଫାଲ୍ଗୁନ ମାସରେ ଅନୁଷ୍ଠିତ ଏହି ମେଲଣ ମୋତେ ସହରରୁ ହାତଠାରି ଡାକେ ଗାଆଁକୁ । କେଉଁ ଏକ ମଧୁର ଆକର୍ଷଣରେ ଲୁହାକୁ ଚୁମ୍ବକ ଆକର୍ଷିତ କଲାପରି ମୁଁ ପ୍ରତିବର୍ଷ ଗାଆଁକୁ ଚାଲିଆସେ । ଅନେକ ବାର ଦେଖିଛି ବାଗଦା, ବାଲିଆପାଳ ଓ ବରୁହାଁ ମେଲଣ ।

ରାଧାକୃଷ୍ଣଙ୍କର ମିଳନ ଓ ରଙ୍ଗର ଖେଳ ହେଉଛି ହୋରି । ଗଭୀର ରାତିରେ ଭିନ୍ନ ଭିନ୍ନ ଗ୍ରାମର ରାଧାକୃଷ୍ଣ ମୂର୍ତ୍ତିମାନଙ୍କର ମିଳନ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନଭିନ୍ନ ସମୟରେ ଅନୁଷ୍ଠିତ ହୋଇଥାଏ । ମୁଖ୍ୟତଃ କୀର୍ତ୍ତନ ଓ ଆନୁସଙ୍ଗିକ ମନୋରଞ୍ଜନ ଯଥା: ଷଣ୍ଢ ଲଢ଼େଇ ଓ ଢୋଲ ବାଜାର ପଟୁଆରରେ ଠାକୁରମାନେ ମେଲଣ ପଡ଼ିଆରେ ପଦାର୍ପଣ କରନ୍ତି । କୀର୍ତ୍ତନର ମଧୁର ଝଙ୍କାରରେ ଅନୁରଣିତ ହୋଇଉଠେ ଚତୁର୍ଦ୍ଦିଗ । ମୋର ବାଲ୍ୟସାଥି ମହିଆ ସହିତ ମେଲଣ ଦେଖିବାର ମଜା ଏକ ନିଆରା ଅନୁଭବ ।

ବାଗଦା ମେଲଣକୁ ଯେଉଁସବୁ ବିମାନ ଆସନ୍ତି ତନ୍ମଧ୍ୟରୁ ମାଲଦାରୁ ଆସୁଥିବା କାଳିସା ବିମାନ ସର୍ବ ବୃହତ୍ । ବାଗଦା ବିମାନ ଅପେକ୍ଷାକୃତ ଛୋଟ ଏବଂ ଏହାର ଉପରିଭାଗ ବୃତ୍ତିୟ । କିନ୍ତୁ ସବୁଠାରୁ ସୁନ୍ଦର ଓ ଆକର୍ଷଣୀୟ ନୂଆଗାଆଁ ବିମାନ । ଏହି ବିମାନ ସାଥିରେ ଧୋବ ଫରଫର ଧୋତି ଓ ପଞ୍ଜାବୀ ପରିହିତ ରାଧାକୃଷ୍ଣ ସାଆନ୍ତ ନିଶ୍ଚୟ ଆସିଥାଆନ୍ତି । ମୁଣ୍ଡରେ ଥାଏ ଧଳା ପଗଡ଼ି । ବେଶ୍ ମର୍ଯ୍ୟାଦାବନ୍ତ ମନେହୁଅନ୍ତି ।

ଆମ ଗ୍ରାମ ନେଉଳାରେ ଭାଗବତ ଟୁଙ୍ଗୀରେ ଭାଗବତ ଗୋସାଇଁ ପୂଜା ପାଆନ୍ତି ପୋଥି ରୂପରେ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ପଟିରେ ଅଙ୍କିତ ମୂର୍ତ୍ତି ଭାଗବତ ଗୋସାଇଁ ନାମରେ ନାମିତ । ଏହି ଟୁଙ୍ଗୀରେ ରାଧାକୃଷ୍ଣଙ୍କର ମୂର୍ତ୍ତି ପୂଜା ପାଉ ନ

ଥିଲେ । ନୂଆଗାଁଆର ଠାକୁର ସୁନ୍ଦର ବିମାନଟିରେ ଦୋଳ ସମୟରେ ଆମ ଗାଁଆକୁ ଆସୁଥିଲେ । ଏହା ମୋର ପିଲାଦିନର କଥା । କିନ୍ତୁ ଏହି ପରମ୍ପରା କୌଣସି ନାଁ କୌଣସି କାରଣରୁ ବାଧାପ୍ରାପ୍ତ ହେଲା । ଅନେକ ବର୍ଷ ଧରି ଠାକୁରଙ୍କର ଆସିବା ବନ୍ଦ ହୋଇ ଯାଇଥିଲା ।

ଲଣ୍ଡନରେ ଅବସ୍ଥାନ ସମୟରେ ପ୍ରତ୍ୟେକ ରାତିରେ ଆଖି ସାମ୍ନାରେ ଭାସିଉଠେ ମୋ ଗାଁଆର ଛବି । ଅନେକ ସମୟରେ ମନେପଡ଼େ ନୂଆ ଗାଁର ବିମାନ । ମନ ମଧ୍ୟରେ ସ୍ୱତଃ ଆସେ ଯେଉଁ ପରଂପରା ହଜିଯାଇଛି ତାହାର ପୁନରୁଦ୍ଧାର ହେବା ନିତ୍ୟାନ୍ତ ଆବଶ୍ୟକ । ଦିନ, ମାସ, ବର୍ଷ ବିତିବିତି ମୋର ଚାକିରିକାଳ ଶେଷ । ଅବସର ଗ୍ରହଣ ପରେ ମୁଁ ଓ ନିନି ଘନ ଘନ ଗାଁଆକୁ ଆସିଲୁ । ଆମ ମଧ୍ୟରେ ଅନେକ ଆଲୋଚନା, ସମାଲୋଚନା ହୁଏ । ହୋଲିରେ ସବୁ ଗାଁଆରେ ରାଧାକୃଷ୍ଣ ବିମାନରେ ଘରଘର ବୁଲି ଭୋଗ ଖାଆନ୍ତି ଓ ମେଲଣରେ ଯୋଗ ଦିଅନ୍ତି । କିନ୍ତୁ ଆମ ଗାଁଆରେ ଏହାର ପ୍ରଚଳନ ନ ଥିବା ପ୍ରସଙ୍ଗ ଦିନେ ନିନି ଉ ।ପନ କଲା । ନୂଆଗାଁଆ ବିମାନ ପୂର୍ବେ ଆସୁଥିବାର ଶୁଣି ଏହି ପ୍ରଥା ପୁନଶ୍ଚ ପ୍ରଚଳନ ହୋଇପାରିବକି ବୋଲି ପ୍ରଶ୍ନ ଥିଲା ନିନିର । ଉତ୍ତରରେ କହିଲି - ଆମେ ଚାହିଁଲେ ଆସିବେ ହୁଏତ ।

କେବେଠାରୁ ରାଧାକୃଷ୍ଣ ସାଆନ୍ତ ଇହଧାମ ତ୍ୟାଗ କଲେଣି । ରାଧାକୃଷ୍ଣ ସାଆନ୍ତଙ୍କର ସୁପୁତ୍ର ଧୂଳିଆ ଦାଦାଙ୍କ ସହ ଆମର ଭେଟ ହୁଏ ଗାଁଆରେ ଅବସ୍ଥାନ ସମୟରେ । ସେ ଉତ୍ତମ ମୃଦଙ୍ଗ ବାଦକ ଓ ବିଭିନ୍ନ ସ୍ଥାନରେ ହେଉଥିବା କୀର୍ତ୍ତନରେ ଅଂଶ ଗ୍ରହଣ କରିବା ତାଙ୍କ ସଉକ । ସେ ମଧ୍ୟ ବିମାନ ସହିତ ବିଭିନ୍ନ ସ୍ଥାନକୁ କୀର୍ତ୍ତନ ମଣ୍ଡଳୀରେ ଯିବାକୁ ଭୁଲନ୍ତି ନାହିଁ । ଦାଦା ଆମ ପାଇଁ ଦେବଦୂତ ମନେକରି ଆମର ଇଚ୍ଛା ତାଙ୍କ ନିକଟରେ ଉପସ୍ଥାପନ କଲୁ । ବିନା ବାକ୍ୟ ବ୍ୟୟରେ ଆନନ୍ଦର ସହ ସମ୍ମତି ଜଣାଇଁଲେ ଦାଦା । ଗାଁଆରେ ରହୁଥିବା ପରିବାରବର୍ଗଙ୍କ ସହ ପରାମର୍ଶ କରି ପାନଗୁଆ ଦେଇ ଠାକୁରଙ୍କୁ ନିମନ୍ତ୍ରଣ କଲୁ । ଏହିପରି କିଛି ବର୍ଷ ଦାଦାଙ୍କ ପ୍ରତିଶ୍ରୁତି ଅନୁସାରେ ଠାକୁର ଭୋଗ ଖାଇବାକୁ ଆମ ଗାଁଆକୁ ଆସିଲେ ।

କିନ୍ତୁ କାଳକ୍ରମେ ବିମାନ କାନ୍ଧେଇ ଏତେ ବାଟ ଆସିବାରେ ଅସୁବିଧା ହେଲା । ଏହା ସହିତ ଅନ୍ୟ ସମସ୍ୟା ମଧ୍ୟ ସୃଷ୍ଟି ହେଲା । ବିମାନ ଆସିଲା ବେଳକୁ ରାତି ଅଧ । ଏହି ଉତ୍ସବକୁ ଉପଭୋଗ କରିବାକୁ ଅତି ଅଳ୍ପ ସଂଖ୍ୟକ ଲୋକ ଜାଗ୍ରତ ଥାଆନ୍ତି । ସମୟର ପ୍ରତିକୂଳତା ଅନ୍ତରାୟ ସୃଷ୍ଟି କରିବାରୁ ଏହି କାର୍ଯ୍ୟକ୍ରମକୁ ସ୍ଥଗିତ ରଖିବାକୁ ବାଧ୍ୟ ହେଲୁ । କିନ୍ତୁ ବିମାନ ନିର୍ମାଣ କରାଇ ଆମ ଗାଁଆରେ ଠାକୁରଙ୍କ ଚାଚିରି

କରାଇବାକୁ ସିଦ୍ଧାନ୍ତ ନେଲୁ ନିନିର ପରାମର୍ଶରେ । ତା' ମନ ମଧ୍ୟରେ ଜାଗ୍ରତ ହୋଇଥିବା ଇଚ୍ଛାକୁ ସେ ଫଳବତୀ କରାଇବାରେ ଲାଗିପଡ଼ିଲା ।

ନବୀନା ଦାଦା ଅଣନାତି ମାନସ ଓ ଧୂଷା ଏହି ଦୁଇଜଣଙ୍କୁ ଧରି ସେ ପ୍ରଥମେ ହୋଲିର ଆୟୋଜନ କଲା । ଗୋଟିଏ କାଠ ବିମାନ ବିଣା ଯୋଗାଡ଼ କରି ଆଣିଲା ନୀଳକଣ୍ଠପୁରରୁ । ସେହି ବିମାନ ସାହାଯ୍ୟରେ ପ୍ରଥମ ଋଚିରି ହେଲା ନେଉଳାରେ । ତା'ପରେ ସେ ବିମାନ ଫେରସ୍ତ ଦିଆଗଲା ।

ଦ୍ୱିତୀୟବର୍ଷ ମାନସ ଓ ଧୂଷାଙ୍କର ବାପା ଓ ଦାଦାଙ୍କ ଦ୍ୱାରା ବାଉଁଶରେ ବିମାନ ପ୍ରସ୍ତୁତ କଲେ । ଗ୍ରାମବାସୀମାନଙ୍କର ସହଯୋଗ ନିମନ୍ତେ ନିଜର ଶକ୍ତି ଅନୁଯାୟୀ ଅର୍ଥ ଅନୁଦାନର ବ୍ୟବସ୍ଥା ହେଲା । ଏହି କାର୍ଯ୍ୟରେ ନିନି ମୁଖ୍ୟ ଭୂମିକା ଗ୍ରହଣ କରି ୨୦୧୦ ମସିହାରେ ବିମାନ ଗାଁଆ ବୁଲିବାର ବ୍ୟବସ୍ଥା କଲା ମାନସ ଓ ଧୂଷାଙ୍କ ସହଯୋଗରେ । ପୁରୀରୁ ରାଧାକୃଷ୍ଣଙ୍କର ପିତଳ ମୂର୍ତ୍ତି କ୍ରୟକରି ତାଙ୍କ ପୂଜା ଅର୍ଚ୍ଚନା କରାଇ ବିମାନରେ ଅବସ୍ଥାପିତ କରିବାରେ ନିନି ମନ ପ୍ରାଣ ଉତ୍ସର୍ଗ କରିଦେଲା ।

ଗାଆଁର ପ୍ରତ୍ୟେକ ଘରର ମୁଖ୍ୟ ବ୍ୟକ୍ତିଙ୍କୁ ନେଇ ଏକ ମିଟିଂରେ ନିମ୍ନଲିଖିତ ପ୍ରସ୍ତାବ ନିନି ଉପସ୍ଥାପନ କରିଥିଲା ଏବଂ ସର୍ବ ସାଧାରଣରେ ଏହା ଗୃହିତ ହୋଇଥିଲା ମଧ୍ୟ ।

ସେହି ବର୍ଷଠାରୁ ଫଗୁ ପୂର୍ଣ୍ଣମୀ ପୂର୍ବଦିନ ରାତିରେ ଠାକୁର ବିମାନରେ ଗାଁଆ ବୁଲି ବହାରନ୍ତି ଭଜନ, କୀର୍ତ୍ତନ ସହ ଆବାଳ ବୃଦ୍ଧ ବନିତାଙ୍କ ଗହଣରେ । ଫେରିଲା ପରେ ସାମୂହିକ ଭୋଗ ହୁଏ । କ୍ରମେ ବାଉଁଶ ବିମାନ ପରିବର୍ତ୍ତେ ଲୁହା ପାତିଆରେ ନିର୍ମିତ ବିମାନର ପ୍ରଚଳନ ହେଲା । କକଲା (ଜଟିଆ) ଦ୍ୱାରା ଏହି ବିମାନ ନିର୍ମାଣ କରାଇ ତା'ର ସାଜସଜାର ଉପକରଣ ମଧ୍ୟ ତାହା ଦ୍ୱାରା ମଗାଇ ଆଣିଲୁ ।

ଠାକୁର ଘର ସାମ୍ନାରେ ପ୍ରଥମେ ଭଜନ କୀର୍ତ୍ତନ ହୁଏ । ତତ୍ପରେ ଗ୍ରାମର ଶେଷ ଭାଗରେ ଅବସ୍ଥିତ ବ୍ରାହ୍ମଣ ଘରକୁ ପ୍ରଥମେ ଠାକୁର ଯାଆନ୍ତି । ସେଠାରୁ ଫେରନ୍ତି ଗାଁଆ ଭିତରକୁ । ଆମ ଜାଣିବାରେ ପ୍ରଥମ ବ୍ରାହ୍ମଣ ହେଉଛନ୍ତି ଘନିଆଁ ସାଆନ୍ତ । ତା'ପରେ ବେଣୁଆଁ ଦାଦା ଓ ବର୍ତ୍ତମାନ ତାଙ୍କର ବର୍ଦ୍ଧିଷ୍ଣୁ ପରିବାର ଅଛନ୍ତି । ଆମର ପ୍ରଥମ ପୁରୁଷ ବଣଗୋବିନ୍ଦ । ସେ ଭାଗବତ ଗୋସାଇଁଙ୍କୁ ସ୍ଥାପନ କରିଥିଲେ । ସମଗ୍ର ଗ୍ରାମବାସୀଙ୍କର ସେ ହେଉଛନ୍ତି ଆରାଧ୍ୟ ଦେବତା ଓ ଆମର କୂଳ ଦେବତା । ଗ୍ରାମର ନ୍ୟାୟ, ନିଶାପ, ବାହାଘର, ବ୍ରତଘର ସବୁ ଏହି ଠାକୁରଙ୍କୁ କେନ୍ଦ୍ରକରି ।

ହୋଲି ପର୍ବରେ ଅନେକ ଲୋକ ପଟୁଆରରେ ଯୋଗ ଦିଅନ୍ତି । ଆମ ପରିବାର ପିଲାଙ୍କ ସହ ମୁଁ ଓ ନିନି ମଧ୍ୟ ସହଯୋଗ କରୁ । ଏହି ମେଲଣର ପ୍ରକୃତ ଉଦ୍ଦେଶ୍ୟ, କଦବା କ୍ୱଚିତ ଗ୍ରାମର ସମସ୍ତବର୍ଗର ବର୍ଦ୍ଧିତ ପରିବାରରେ ସୃଷ୍ଟି ହୋଇଥିବା ମନୋମାଳିନ୍ୟକୁ ଦୂରୀଭୂତ କରି ଈଶ୍ୱରଙ୍କ ପ୍ରେମରେ ଏକାକାର ହେବା । ଏହି ମର୍ମରେ ନିନି ବାର୍ତ୍ତାଟିଏ ଲେଖି ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲା-

ଚାଚିରି ପରେ ମେଣ୍ଢାଘର ପୋଡ଼ି ହୁଏ ଏବଂ ଏହି ଅବସରରେ ଉପସ୍ଥିତ ଗ୍ରାମବାସୀଙ୍କ ସମ୍ମୁଖରେ ଆୟବ୍ୟୟର ହିସାବ ରଖାଯାଏ । କ୍ରମାନ୍ୱୟରେ ମାନସ ଓ ଧୃଷ୍ଟା, ତତ୍ପରେ ଗଙ୍ଗା ଏବଂ ଗଙ୍ଗୀ ପରେ ମହିଆ ଓ ଅଧୁନା ମନ ଏହି ଆୟବ୍ୟୟ ଦାୟିତ୍ୱ ନେଇଛନ୍ତି । ଗ୍ରାମର ଏହି ଏକତା, ସାହାଯ୍ୟ, ସହଯୋଗ ଓ ଭ୍ରାତୃଭାବ ଚିରସ୍ଥାୟୀ ରହୁ ଏହାହିଁ ଭାଗବତ ଗୋସାଇଁଙ୍କ ନିକଟରେ ପ୍ରାର୍ଥନା ।

ମେଲଣ ପାଇଁ ନିନି ଲେଖିଥିବା ବାର୍ତ୍ତା ଯାହା ବାରମ୍ବାର ପାଠ କରାଯାଏ, ତାହା ହେଉଛି ଏହିପରି ମିଳନ, ମନ ମନର ମିଳନ । ହୋଲି ରଙ୍ଗର ପର୍ବ । ରଙ୍ଗ ଅବିର ମାଖି ଶତ୍ରୁ-ମିତ୍ର, ଭେଦାଭେଦ, ହିଂସା-ଦ୍ୱେଷ ଭୁଲି କୃଷ୍ଣ ପ୍ରେମରେ ସମସ୍ତେ ଭୋଳ ହୁଅନ୍ତି । ବର୍ଷର ସବୁ ସମୟରେ ଲୋକମାନେ ଭଗବାନଙ୍କୁ ଦର୍ଶନ କରିବା ନିମନ୍ତେ ମନ୍ଦିର ଯାଇଥାଆନ୍ତି । କିନ୍ତୁ ହୋଲି ଏମିତି ଏକ ପର୍ବ - ଯେଉଁ ପର୍ବରେ ଭଗବାନ ଭକ୍ତର ଦୁଆରେ ଉଭା ହୁଅନ୍ତି ଭୋଗ ଖାଇବା ପାଇଁ । ଏହାଦ୍ୱାରା ଭଗବାନ ମନୁଷ୍ୟମାନଙ୍କୁ ଜଣାଇଁ ଦିଅନ୍ତି ଯେ ଦୁନିଆଁରେ ବଡ଼ କେହି ନାହିଁ । ଲୋକମାନଙ୍କ ମନରୁ ଅହଂଭାବ ଅର୍ଥାତ୍ ଗର୍ବ, ଅହଂକାର ଦୂର କରିବା ନିମନ୍ତେ ପ୍ରଭୁ ଶ୍ରୀକୃଷ୍ଣ ଭକ୍ତମାନଙ୍କ ଘରେ କୁଣିଆଁ ହୋଇଥାଆନ୍ତି । ପ୍ରଭୁ ଯେତେବେଳେ ତାଙ୍କର ବଡ଼ପଣ ଭୁଲି ଦୁଆର ଦୁଆର ବୁଲି ଭୋଗ ଖାଇବାକୁ ବାହାରି ଥାଆନ୍ତି ସେତେବେଳେ ସାଧାରଣ ମନୁଷ୍ୟ କିବା ଛାର । ଭଗବାନଙ୍କ ନିକଟରେ ଧନୀ-ଦରିଦ୍ର, ପାଠୁଆ-ଅପାଠୁଆ, ଉଚ୍ଚ-ନୀଚ, ଜାତି ଅଜାତି ବାରଣ ନ ଥାଏ । ଜାତି, ଧର୍ମ ନିର୍ବିଶେଷରେ ଏହି ପର୍ବରେ ଅବିରର ରଙ୍ଗରେ ସମସ୍ତେ ଏକାକାର । ଏହା ଭାଇଚାରାର ପର୍ବ । ଏହି ଦୁନିଆଁରେ ସମସ୍ତେ ଭାଇ-ଭାଇ । ଗୋଟିଏ କାଠି ଜଣେ ଅକ୍ଲେଶରେ ଭାଙ୍ଗିଦେଇ ପାରେ । କିନ୍ତୁ ବିଡ଼ାଏ କାଠି ଭାଙ୍ଗିବା ଅସମ୍ଭବ । ଗୋଟିଏ ଲୋକକୁ ସହଜରେ ଦୋହଲାଇ ଦେଇହୁଏ । କିନ୍ତୁ ଗୋଟିଏ ଗାଁର ଲୋକଙ୍କୁ ହଲାଇ ପାରିବା ସହଜ ନୁହେଁ । ଗୋଟିଏ ଲୋକର ପ୍ରାର୍ଥନାର ଫଳ ଅପେକ୍ଷା ଅନେକ ଲୋକଙ୍କର ସମବେତ ପ୍ରାର୍ଥନାର ଫଳ ଅନେକ ଅନେକ ଗୁଣରେ ଅଧିକ । ଏହି ହୋଲି ପର୍ବରେ ସମସ୍ତଙ୍କର ମନର ମିଳନ

ହୋଇଥାଏ । ସବୁ ମନୋମାଳିନ୍ୟକୁ ପଛରେ ପକାଇ ପରସ୍ପରକୁ ରଙ୍ଗବୋଳି ପରସ୍ପରର ଶୁଭକାମନା କରିଥାଆନ୍ତି । ମନରୁ ସମସ୍ତ ଅହମିକା ପୋଛି ପକାଇ ରାଗ – ବିଦ୍ୱେଷ ଭୁଲି ପ୍ରଭୁ ଶ୍ରୀକୃଷ୍ଣ ଓ ରାଧାଙ୍କ ସହ ମିଶି ହୋଲି ଖେଳିଥାଆନ୍ତି । ପ୍ରତ୍ୟେକ ଦୁଆରକୁ ଯାଇ ଲୋକମାନଙ୍କୁ ଚେତାଇ ଦିଅନ୍ତି ଯେ ଦିଅଁ ହେଲେ ମଧ୍ୟ ସେ ସାଧାରଣ ଲୋକଙ୍କ ଘରେ କୁଣିଆଁ । ସୁଦାମାର ଖୁଦ ଭଜାରେ ସେ ସନ୍ତୁଷ୍ଟ । ସେ ଭକ୍ତର ଭଗବାନ - ଭକ୍ତର ଦାସ ।

ଶ୍ରୀମଦ୍ ଭଗବଦ୍ ଗୀତାରେ ପ୍ରାର୍ଥନାର ମହତ୍ତ୍ୱ ସଂପର୍କରେ କୁହାଯାଇଛି-

"ନାହଂ ତିଷ୍ଠାମି ବୈକୁଣ୍ଠେ, ଯୋଗୀନାଂ ହୃଦୟେ ନଚ
ମଦ୍‌ଭକ୍ତାଃ ଯତ୍ର ଗାୟନ୍ତି, ତତ୍ର ତିଷ୍ଠାମି ନାରଦ ।"

ଅର୍ଥାତ୍ ମୁଁ ବୈକୁଣ୍ଠରେ ନାହିଁ, ଯୋଗୀ, ମୁନି, ଋଷିଙ୍କ ହୃଦୟରେ ମଧ୍ୟ ନାହିଁ । ମୋର ଭକ୍ତ ଯେଉଁଠାରେ ମୋତେ ପ୍ରାର୍ଥନା କରନ୍ତି ମୁଁ ସେହିଠାରେ ଥାଏ । ଏହି କଥା ଭଗବାନ, ନାରଦଙ୍କୁ କହିଛନ୍ତି ।





ଓଁ ଏକ ଅକ୍ଷର ବିଶିଷ୍ଟ ସଂସ୍କୃତ ଭାଷାର ଶବ୍ଦ । ଏହା ଏକ ସଙ୍କେତ; ଏକ ମନ୍ତ୍ର । ଏହାର ଧ୍ୱନୀ ଅତ୍ୟନ୍ତ ଶକ୍ତିଶାଳୀ । ଏହାକୁ ଆଦି ବୀଜ ମନ୍ତ୍ର ହିସାବରେ ମାନ୍ୟତା ଦିଆଯାଇଛି । ମାଣ୍ଡୁକୀ ଉପନିଷଦରେ ଏହାର ଅବତାରଣା କରାଯାଇଛି । ସଂସ୍କୃତ ଶ୍ଳୋକରେ ଆଦି ଅକ୍ଷର ଓମ୍ ହୋଇଥାଏ, ଶେଷ ଅକ୍ଷର ମଧ୍ୟ ଓମ୍ ହୋଇଥାଏ । ଓମ୍‌କୁ ମଧ୍ୟ ଏକାକୀ ବ୍ୟବହାର କରାଯାଏ । ମନ୍ତ୍ର ଏକ ଧ୍ୱନୀ; ଏହାର ଉଚ୍ଚାରଣରେ ମନରେ ଶାନ୍ତିର ବାତାବରଣ ସୃଷ୍ଟି ହୁଏ ଓ ନିଜର ମନ, ମସ୍ତିଷ୍କ, ଶରୀର ହୃଦୟରେ ଅନ୍ତର୍ନିହିତ ଶକ୍ତିର ବିସ୍ଫୋରଣ, ଶିହରଣ ଦରାଏ । ଏହାର ପ୍ରଭାବରେ ସମଗ୍ର ସତ୍ତାକୁ ଆହ୍ଲାଦିତ କରି ଏପରି ଏକ ଅବସ୍ଥା ସୃଷ୍ଟି କରେ ଯାହାର ବର୍ଣ୍ଣନା କରିବା ସମ୍ଭବପର ନୁହେଁ । ଏହା ଏକ ଅନନ୍ୟ ଅନୁଭବ ।

ସଦ୍‌ଗୁରୁ କହନ୍ତି ଏ ଧ୍ୱନୀ ଏକ ନାଦବ୍ରହ୍ମ ଯାହା ଏକ ଚାବିକାଠି ପରି କାର୍ଯ୍ୟ କରେ, ଯାହାକୁ ସଠିକ୍ ଭାବରେ ବ୍ୟବହାର କରିବା ଦ୍ୱାରା ଏକ ନୂଆ ଦୁନିଆର ଦ୍ୱାର ଉନ୍ମୁକ୍ତ ହୋଇଯାଏ ।

ଓଁ ମନ୍ତ୍ର ଉଚ୍ଚାରଣ କରିବା ଦ୍ୱାରା ପରିବେଶ ଶାନ୍ତ ହୁଏ; ନିଜର ମନଯୋଗୀତା ବୃଦ୍ଧିପାଏ; ନକାରାତ୍ମକ ଭାବ ଲୋପ ପାଏ; ଗଠନମୂଳକ ମନୋଭାବ ସୃଷ୍ଟି ହୁଏ; ରକ୍ତଚାପ ଉପଶମ ହୁଏ; ହୃଦୟର ଦ୍ରୁତ ସ୍ପନ୍ଦନ ସ୍ୱାଭାବିକ ହୁଏ । ମାନସିକ ଶାନ୍ତି ବୃଦ୍ଧି ପାଏ, କ୍ଳାନ୍ତ ଅବସ୍ଥା ଦୂର ହୁଏ ।

ମନ୍ତ୍ର ହେଉଛି ଶବ୍ଦ ବା ବାକ୍ୟର ଉଚ୍ଚାରଣର ଧ୍ୱନୀ । ଏହି ଧ୍ୱନୀରୁ ଉତ୍ପନ୍ନ ହୁଏ ଶକ୍ତି । ଶକ୍ତି ସ୍ପଷ୍ଟିକରେ ପ୍ରକୃତି । ନାଦବ୍ରହ୍ମ ହେଉଛି ଏହି ସୃଷ୍ଟିର ଚାବିକାଠି ।

ସଂଗୀତ ହେଉଛି କେତେକ ଧ୍ୱନୀର ସ୍ୱତନ୍ତ୍ର ଶୃଙ୍ଖଳା  ଯାହା ମଧୁରତା ସୃଷ୍ଟି କରେ; ଠିକ୍ ଯେପରି ନିର୍ଝରଣୀର ଝର ଝର ଝରଣା । ମନ୍ତ୍ରର ଉଚ୍ଚାରଣ ଠିକ୍ ସେହିପରି ସୁମଧୁର ସଂଗୀତମୟ ହେଲେ ଏହା ବେଶୀ ଫଳପ୍ରଦ ହୋଇଥାଏ । ସେଥିପାଇଁ ମନ୍ତ୍ରର ଉଚ୍ଚାରଣ ଗମ୍ଭୀର ଓ ସଂଗୀତମୟ ହେବା ଉଚିତ୍ । ଏହାଦ୍ୱାରା ଯେ ମନ୍ତ୍ର ଉଚ୍ଚାରଣ କରୁଛି ଓ ଯେ ମନ୍ତ୍ରକୁ ଶ୍ରବଣ କରୁଛି ସେମାନଙ୍କ ମନକୁ ଆହ୍ଲାଦିତ

କରିପାରିବ । ଥରେ ଓଁ ଉଚ୍ଚାରଣ କରିଦେଲେ ଏହା ଯଥେଷ୍ଟ ନୁହେଁ । କେହି କେହି ମତ ଦିଅନ୍ତି ଏହାର ଉଚ୍ଚାରଣ ତିନିଥର କରିବା ପାଇଁ; କିନ୍ତୁ ସଦ୍‌ଗୁରୁ କହନ୍ତି: ଏହାକୁ ଅନ୍ତତଃ ଏକୋଇଶଥର ଉଚ୍ଚାରଣ କରିବା ଉଚିତ୍ ଗୋଟିଏ ଅଧିବେଶନରେ । ଯେପରି ଏହାଦ୍ୱାରା ଆମର ଦୈନନ୍ଦିନ ଜୀବନର ଅଂଶ ହୋଇ ରହିବ ।

**ଯୋଗରେ ଓଁର ବ୍ୟବହାର**

ଯୋଗର ସର୍ବଶ୍ରେଷ୍ଠଗୁରୁ ହେଉଛନ୍ତି ଶ୍ରୀକୃଷ୍ଣ । ସେ ଭଗବଦ୍ ଗୀତାରେ ବିଭିନ୍ନ ପ୍ରକାର ଯୋଗର ଆଲୋଚନା କରିଛନ୍ତି । ସେଗୁଡ଼ିକ ହେଲା ଜ୍ଞାନଯୋଗ ବା ସାଂଖ୍ୟ ଯୋଗ, କର୍ମଯୋଗ, ଧ୍ୟାନ ଯୋଗ, ରାଜ ବା କ୍ରିୟା ଯୋଗ, ଭକ୍ତି ଯୋଗ, ଯୋଗର ଅର୍ଥ ଆକାର ସହିତ ନିରାକାରର ସଂପର୍କ ସ୍ଥାପନା କରିବା । ବୁଦ୍ଧ ଯୋଗବଳରେ ଦିବ୍ୟଜ୍ଞାନ (enlightenment) ଲାଭ କରିଛନ୍ତି । ପରବର୍ତ୍ତୀ କାଳରେ ମୁନୀ ପତଞ୍ଜଳୀ ଯୋଗ ବିଷୟରେ ବିଷଦ ଭାବରେ ଆଲୋଚନା କରିଛନ୍ତି । ତାଙ୍କ ମତରେ ଯୋଗ ହେଉଛି 'ଚିତ୍ତବୃତ୍ତି ନିରୋଧ' । ଗୁରୁ ରାମଦେବ ପାତଞ୍ଜଳୀ ଯୋଗକୁ ସାରା ପୃଥିବୀରେ ଲୋକପ୍ରିୟ କରିଛନ୍ତି ଓ ହରିଦ୍ୱାର ଠାରେ ପତଞ୍ଜଳୀ ନାମରେ ଏକ ଯୋଗ ବିଶ୍ୱବିଦ୍ୟାଳୟ ସ୍ଥାପନା କରିଛନ୍ତି ।

ଅଷ୍ଟମ ଶତାବ୍ଦୀରେ ଆଦି ଶଙ୍କରାଚାର୍ଯ୍ୟ ଓ ପରବର୍ତ୍ତି କାଳରେ ସ୍ୱାମୀ ବିବେକାନନ୍ଦ, ଅରବିନ୍ଦ ପ୍ରଭୃତି ଯୋଗୀମାନେ ଯୋଗରେ ପାରଦର୍ଶିତା ଲାଭ କରିଛନ୍ତି ।

ଓମ୍‌କୁ ଆଧାର କରି ପ୍ରାଣାୟାମ ଓ ଯୋଗ କରାଯାଇପାରେ । ଝଡ଼ର ଆଗମନରେ ଯେପରି ସମୁଦ୍ରର ଢେଉ ଅଶାନ୍ତ ହୁଏ, ଠିକ୍ ସେହିପରି ଯୋଗ କରିବା ପାଇଁ ଏକ ନିରୋଳା ସ୍ଥାନରେ ଉପବେଶନ କଲେ, ବିଭିନ୍ନ ପ୍ରକାର ଭାବନା ମନକୁ ଉଦ୍‌ବେଳିତ କରେ । କିନ୍ତୁ ଝଡ଼ କମିଗଲେ ଢେଉର ଗତି ଆସ୍ତେ ଆସ୍ତେ ସ୍ୱାଭାବିକ ହେଲାପରି ମନର ଭାବନା ଧିରେ ଧିରେ ଅପସରି ଯାଇ ମନ ହୋଇ ଉଠେ ଶାନ୍ତ, ଗମ୍ଭୀର, ଚିନ୍ତାଶୂନ୍ୟ, ସ୍ଥିତପ୍ରଜ୍ଞ । ବିଭିନ୍ନ ଭାବନାକୁ ଦୂର କରିବାକୁ ଓମ୍ ମନ୍ତ୍ରର ମଧ୍ୟ ସାହାଯ୍ୟ ନେବାକୁ ହୋଇଥାଏ । ଏହି ଅନୁଭବକୁ ପ୍ରାପ୍ତ କରିବା ସହଜସାଧ୍ୟ ନୁହେଁ ।

ଯୋଗ ବା ଧ୍ୟାନ କରିବା ସମୟରେ ମନକୁ କୌଣସି ଏକ ସ୍ଥାନରେ କେନ୍ଦ୍ରିଭୂତ କରିବାକୁ ହୁଏ । ସ୍ଥାନଟି ହୋଇପାରେ ନିଜ ଶରୀରର ଯେ କୌଣସି ଅଙ୍ଗ, ନିଶ୍ୱାସ ଓ ପ୍ରଶ୍ୱାସ ବା ହୋଇପାରେ କୌଣସି ମନ୍ତ୍ର ଯେପରି ଓମ୍ ବା ଶ୍ରୀଜଗନ୍ନାଥଙ୍କ ଚକାଡୋଳା । ଏହି ସଙ୍କେତମାନଙ୍କ ସାହାଯ୍ୟରେ ମନକୁ ଭେଦ କରୁଥିବା ବିଭିନ୍ନ ଭାବନାକୁ ଦୂରକରିବାକୁ ହୁଏ; ମନର ଏକାଗ୍ରତା ବୃଦ୍ଧି ପାଇଲେ ଜଣେ ସ୍ଥିତପ୍ରଜ୍ଞ ହୁଏ ଓ ତା'ପରେ ସେ ସମାଧିସ୍ଥ ବା ଭାବନାଶୂନ୍ୟ ବା ମହାଶୂନ୍ୟ ଅବସ୍ଥା ପ୍ରାପ୍ତ ହୁଏ । ଏହି ଅବସ୍ଥାରେ ସେ ପ୍ରକୃତିର ମହାସତ୍ୟମାନଙ୍କୁ ଆବିଷ୍କାର କରେ । ଆଧୁନିକ ଯୁଗରେ ବୈଜ୍ଞାନିକ

ନିଉଟନ, ଆଇନଷ୍ଟାଇନମାନଙ୍କ ପରି ଯେଉଁମାନେ ସତ୍ୟ ଉଦ୍ଭାବନ କରିଛନ୍ତି ତା' ଅଢ଼େଇହଜାର ବର୍ଷ ତଳେ ବୁଦ୍ଧ ଆବିଷ୍କାର କରିଥିଲେ । ଏବେ ମଧ୍ୟ ଅନେକ ତପସ୍ୱୀ ହିମାଳୟରେ ଯୋଗ ସାଧନା କରୁଛନ୍ତି । ଏବେ ବି ବାବା ରାମଦେବ, ସଦଗୁରୁ ଯୋଗ ସାଧନା କରୁଛନ୍ତି ଓ ଯୋଗଶିକ୍ଷା ଦେଉଛନ୍ତି ।

**ଓମ୍ ସଙ୍କେତର ମହତ୍ତ୍ୱ**

ଓମ୍ ଧ୍ୱନୀ ତିନୋଗୋଟି ବୀଜ ବା ମୂଳ ଧ୍ୱନୀରୁ ଉତ୍ପନ୍ନ । ଯଥା:

ଓଁ: = ଅ+ଉ+ମ

ଅ-ଉ-ମ ଜିହ୍ୱାର ବିନା ସହଯୋଗରେ ଉଚ୍ଚାରଣ କରାଯାଇପାରେ । କିନ୍ତୁ ଅନ୍ୟ ଧ୍ୱନୀ ଜିହ୍ୱାର ସାହାଯ୍ୟରେ ଉତ୍ପନ୍ନ ହୋଇଛି । ଏଥି ପାଇଁ ଅ-ଉ-ମ ଧ୍ୱନୀକୁ ବୀଜ ଧ୍ୱନୀ କୁହାଯାଏ ।

ଲକ୍ଷ୍ୟ କର ଯେ ଓମ୍ ସଙ୍କେତରେ ତିନୋଟି ବକ୍ରରେଖା ଏକ ବିନ୍ଦୁରେ ମିଳିତ ହୋଇଛନ୍ତି । କିଛି ସ୍ଥାନ ପରେ ଅର୍ଦ୍ଧ ଚକ୍ର ରହିଛି । ତା'ପରେ କିଛି ସ୍ଥାନ ପରେ ଏକ ଗାଢ଼ ଗୋଲାକାର ଚିହ୍ନ ରହିଛି ।

ତିନୋଟି ବକ୍ର ରେଖା ହେଉଛି ଆମ ମନରେ ଥିବା ତିନୋଟି ଗୁଣର ପ୍ରତୀକ । ସେ ଗୁଣଗୁଡ଼ିକ ହେଲା ସତ୍ତ୍ୱ, ରଜ, ତମ । ତମ ହେଉଛି ମନର ତାମସିକ ବା ପଶୁ ପ୍ରକୃତି, ଆସକ୍ତ ବା ମୋହ ପ୍ରକୃତି । ରଜ ପ୍ରବୃତ୍ତି ହେଉଛି ଶକ୍ତି ପ୍ରଦର୍ଶନ ଓ ଆନନ୍ଦ ପ୍ରମୋଦ ଦିଗକୁ ଆକୃଷ୍ଟ ହେବା । ସତ୍ତ୍ୱ ହେଉଛି ସୃଜନଶୀଳତା, ସ୍ଥିରତା; ଏହା ଦ୍ୱାରା ମନର ଅସ୍ଥିରତା ଲୋପପାଇ ଶାନ୍ତ ବାତାବରଣ ସୃଷ୍ଟି ହୁଏ ।

ଓମ୍ ସଙ୍କେତରେ ତିନୋଟି ବକ୍ରରେଖା ଏକ ବିନ୍ଦୁରେ ମିଳିତ ହୋଇଛି ଓ ଏହା ସନ୍ଦେଶ ଦେଉଛି ଯେ ଏହି ତିନିଗୁଣର ସମନ୍ୱୟରେ ସମଗ୍ର ସୃଷ୍ଟିର ସତ୍ତା ନିହିତ । ସେ ସୃଷ୍ଟିରେ ଅଛନ୍ତି ସମସ୍ତ ଜୀବ, ଜନ୍ତୁ, ପାହାଡ଼, ବୃକ୍ଷ, ସୂର୍ଯ୍ୟ, ଚନ୍ଦ୍ର, ବିଶ୍ୱ ବ୍ରହ୍ମାଣ୍ଡ । ଏହାକୁ ସଗୁଣ ବ୍ରହ୍ମନ୍ କୁହାଯାଏ ।

ସଗୁଣ ବ୍ରହ୍ମନ ଓ ନିର୍ଗୁଣ ବ୍ରହ୍ମନ୍‌ର ପରିକଳ୍ପନା କରାଯାଇଛି ରକ୍ ବେଦରେ ନାସଦୀୟ ସୁକ୍ତରେ ।

**ନାସଦୀୟ ସୁକ୍ତ**

ନାସଦୀୟ ସୁକ୍ତ (hymn) ହେଉଛି ରକ୍‌ବେଦରେ ଋଷି ପ୍ରଜାପତିଙ୍କ ଦ୍ୱାରା ଲିଖିତ । ରକ୍ ବେଦ ହେଉଛି ପ୍ରାୟ ପୃଥିବୀର ପ୍ରଥମ ଗ୍ରନ୍ଥ । ଏଥିରେ ୧୦୨୮ଟି ସୁକ୍ତ ରହିଛି । ପ୍ରତ୍ୟେକ ସୁକ୍ତ ଏକ ନିର୍ଦ୍ଦିଷ୍ଟ ତତ୍ତ୍ୱକୁ ଆଧାର କରି କେତେକ ଶ୍ଳୋକର ସମାହାର । ନାସଦୀୟ ସୁକ୍ତରେ ସାତୋଟି ଶ୍ଳୋକର ଅବତାରଣା କରାଯାଇଛି । ସୁକ୍ତ ହେଉଛି ସୁ+ଉକ୍ତି (well spoken) । ନାସଦୀୟ ସୁକ୍ତରେ ପ୍ରକୃତିର ସୃଷ୍ଟି ବିଷୟରେ କୁହାଯାଇଥିବାରୁ ଏହାକୁ Song of creation ବା ସୃଷ୍ଟିର ସଂଗୀତ କୁହାଯାଏ । ଏହି

ମନ୍ତ୍ରର ଆରମ୍ଭରେ ଦୁଇଟି ପଦ 'ନ ଆସତ୍' ଶବ୍ଦ ଥିବାରୁ ଏହି ସୁକ୍ତକୁ ନାସଦୀୟ ସୁକ୍ତ କୁହାଯାଏ ।

ପ୍ରଥମ ତିନୋଟି ଶ୍ଳୋକ ନିର୍ଗୁଣ ବ୍ରହ୍ମନ୍ ତତ୍ତ୍ୱ ସମ୍ବନ୍ଧରେ କୁହାଯାଇଛି । ଏହା ହେଉଛି ପ୍ରକୃତିର ପ୍ରକୃତ ସତ୍ୟ; ତଦ୍ ଏକମ୍ । ଏହା ନିରାକାର । ଏହା ସୁପ୍ତ ଶକ୍ତିମୟ; ଏଠି ସମୟ ନାହିଁ, ଦିନ ନାହିଁ, ରାତି ନାହିଁ, କେହି ନାହିଁ, ଉପର ନାହିଁ, କିଛି ଅସ୍ତିତ୍ୱ ନାହିଁ । ଏହାହିଁ ଏକମାତ୍ର ସତ୍ୟ, ଯାହାକୁ ଜ୍ଞାନୀମାନେ ବିଭିନ୍ନ ପ୍ରକାରରେ ପ୍ରକାଶ କରନ୍ତି । ବିପ୍ରା ବହୁଧା ଭବନ୍ତି । ଏ ସଂପର୍କରେ କୌଣସି ବୈଜ୍ଞାନିକ ଗବେଷଣା ସମ୍ଭବ ନୁହେଁ; ଏହା କେବଳ ଧ୍ୟାନ ବା meditation ବଳରେ ଅନୁଭବ କରାଯାଇପାରେ ।

ଏହି ନିର୍ଗୁଣ ବ୍ରହ୍ମନ୍ ସତ୍ୟକୁ, ଓମ୍ ସଙ୍କେତରେ ଗାଢ ଗୋଲାକାର ବିନ୍ଦୁ ଦ୍ୱାରା ପ୍ରକଟ କରାଯାଇଛି ।

ଚତୁର୍ଥ ଶ୍ଳୋକରେ ନିର୍ଗୁଣ ବ୍ରହ୍ମନ୍ ସଗୁଣ ବ୍ରହ୍ମନ୍ ହେବାର ଇଚ୍ଛାକୁ ପ୍ରକଟ କରାଯାଇଛି । ଶେଷ ତିନୋଟି ଶ୍ଳୋକରେ ଭୌତିକ ଜଗତ ପ୍ରକଟିତ ହୋଇଛି । ଏଠାରେ ମନୁଷ୍ୟ ସମାଜ, ବନ, ବୃକ୍ଷ, ଲତା, ପ୍ରାଣୀଜଗତ ରହିଛନ୍ତି । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ମହାଭାରତ ଯୁଦ୍ଧ କ୍ଷେତ୍ରରେ ଦିବ୍ୟଚକ୍ଷୁ ପ୍ରଦାନ କରିଥିଲେ ଓ ସମଗ୍ର ସଗୁଣ ବ୍ରହ୍ମନ୍ ବା ବିଶ୍ୱରୂପକୁ ଦର୍ଶାଇଥିଲେ ।

ଜାଣି ଆଶ୍ଚର୍ଯ୍ୟ ଲାଗେ ଯେ କିପରି ପାଞ୍ଚ ହଜାର ବର୍ଷ ପୂର୍ବେ ପ୍ରାଚୀନ ଜ୍ଞାନି ଋଷିମାନେ ଋକ୍‌ବେଦର ନାସଦୀୟ ସୁକ୍ତରେ ଓ ପରବର୍ତ୍ତୀ କାଳରେ ଲିଖିତ ଉପନିଷଦ ଓ ଅଦ୍ୱୈତ ବେଦାନ୍ତରେ ସୃଷ୍ଟି ସଂପର୍କରେ ଯେଉଁ ପ୍ରକାର ତତ୍ତ୍ୱ ଉପସ୍ଥାପନା କରିଥିଲେ ସେହି ତତ୍ତ୍ୱ ଆଡ଼କୁ କ୍ରମଶଃ ଆଧୁନିକ ପଦାର୍ଥ ବିଜ୍ଞାନ ଯଥା ଯୁଗାନ୍ତକାରୀ ଅଣୁ ବିଜ୍ଞାନ, ଆପେକ୍ଷିକ ତତ୍ତ୍ୱ କ୍ରମଶଃ ଅଗ୍ରସର ହେଉଛି ।

ଓମ୍ ସଙ୍କେତରେ ତିନୋଟି ବକ୍ର ରେଖା ସତ୍ତ୍ୱ, ରଜ, ତମ ବା ଭୌତିକ ଜଗତକୁ ବା ସଗୁଣ ବ୍ରହ୍ମନ୍‌କୁ ଇଙ୍ଗିତ କରୁଛି ଓ ଗାଢ ବିନ୍ଦୁଟି ନିର୍ଗୁଣ ବ୍ରହ୍ମନକୁ ଇଙ୍ଗିତ କରୁଛି କିନ୍ତୁ ସଗୁଣ ବ୍ରହ୍ମନ୍ ଓ ନିର୍ଗୁଣ ବ୍ରହ୍ମନ୍ ସଙ୍କେତ ମଧ୍ୟବର୍ତ୍ତି ଅର୍ଦ୍ଧଚନ୍ଦ୍ର ରେଖା ମାୟା ବା ଅବିଦ୍ୟାକୁ ଇଙ୍ଗିତ କରୁଛି । ସଗୁଣ ବ୍ରହ୍ମନ ଜାତ ହୋଇଛି ନିର୍ଗୁଣ ବ୍ରହ୍ମନରୁ । ଅଥଚ ଆମେ ସଗୁଣ ବ୍ରହ୍ମନ୍‌ରେ ଅବସ୍ଥାନ କରି ଜାଣିପାରୁନାହିଁ ନିର୍ଗୁଣ ବ୍ରହ୍ମନ୍ କ'ଣ ବା ପରମ ସତ୍ୟ କ'ଣ ? ଏଥିପାଇଁ ଆମେ ଗବେଷଣା, ଆଲୋଚନା ଜାରି ରଖିଛୁ କିନ୍ତୁ ତାହା ସମ୍ଭବ ହୋଇପାରୁ ନାହିଁ ମାୟାର ପ୍ରତିବନ୍ଧକ ହେତୁ ।

ମାୟା କ'ଣ ? ଆମେ ପ୍ରକୃତିକୁ ନିରୀକ୍ଷଣ, ବିଶ୍ଳେଷଣ କରୁଛୁ ନିଜ ଭିତରେ ଥିବା ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ । ଆମର ଇନ୍ଦ୍ରିୟମାନେ ହେଲେ ଦୃଷ୍ଟି, ଶ୍ରବଣ,

ଆଘ୍ରାଣ, ସ୍ୱାଦ, ସ୍ପର୍ଶ ଏହିପରି ପଞ୍ଚେନ୍ଦ୍ରିୟ । ଏହି ଇନ୍ଦ୍ରିୟମାନେ କ'ଣ ସତ୍ୟକୁ ଠିକ୍ ଭାବରେ ନିରୂପଣ କରି ଆମର ମନ ଓ ମସ୍ତିଷ୍କକୁ ସଚେତନ କରିପାରିବେ ?

ଏ ସଂପର୍କରେ ଗୋଟିଏ ଇନ୍ଦ୍ରିୟ କଥା ଆଲୋଚନା କରାଯାଉ । ସେ ଇନ୍ଦ୍ରିୟଟି ହେଉଛି ଦୃଷ୍ଟି । ଆମେ ପ୍ରକୃତିକୁ କଳା ଚଷମାରେ ଦେଖିଲେ ଏହା କଳା ଦେଖାଯିବ । ନାଲି ଚଷମାରେ ଦେଖିଲେ ନାଲି ଦେଖାହେବ । ଯେଉଁ ରଙ୍ଗର ଚଷମା ପିନ୍ଧିବ, ପ୍ରକୃତି ସେହି ରଙ୍ଗରେ ଦୃଶ୍ୟମାନ ହେବ । ମୋଟେ ଚଷମା ନ ପିନ୍ଧିଲେ ପ୍ରକୃତି କ'ଣ ସେହି ପ୍ରକାରର ହୋଇଥିବ ! ତେଣୁ ପ୍ରକୃତିର ସତ୍ୟତା କ'ଣ ? ଯଦି ଆମର ଦୃଷ୍ଟି ଶକ୍ତି ରଂଜନରଶ୍ମୀ (ଏକ୍ସ-ରେ) ପରି ଶକ୍ତିମାନ ହୁଅନ୍ତା, ତେବେ ମନୁଷ୍ୟମାନେ କେବଳ ଅସ୍ଥି ଢ଼ରିଆରେ ଦୃଶ୍ୟମାନ ହୁଅନ୍ତେ । ମାଂସ ପେଶୀ ଦୃଶ୍ୟମାନ ହୁଅନ୍ତା ନାହିଁ । ଯଦି ଚକ୍ଷୁ ଅଣୁବିକ୍ଷଣ ଯନ୍ତ୍ରପରି ହୋଇଥାଆନ୍ତା ତେବେ ଚତୁର୍ଦ୍ଦିଗରେ କେବଳ କ୍ଷୁଦ୍ର ଜୀବାଣୁମାନେ ଦୃଶ୍ୟମାନ ହୁଅନ୍ତେ । ଚକ୍ଷୁ ଯଦି ଦୂରବୀକ୍ଷଣ ଯନ୍ତ୍ର ପରି ହୁଅନ୍ତା, ତେବେ ଆମ ଚାରିପାଖରେ ଗ୍ରହ, ଉପଗ୍ରହ, ନକ୍ଷତ୍ରମାନେ ଦୃଶ୍ୟମାନ ହୁଅନ୍ତେ ।

ସେହିପରି ଅନ୍ୟ ଇନ୍ଦ୍ରିୟମାନଙ୍କ କଥା ଚିନ୍ତା କରାଯାଇପାରେ । ତାହାହେଲେ ବର୍ତ୍ତମାନର ଇନ୍ଦ୍ରିୟମାନଙ୍କ ଦ୍ୱାରା ଅନୁଭବର ପ୍ରକୃତି କ'ଣ ପ୍ରକୃତ ସତ୍ୟ ?

ଏହା ପ୍ରକୃତ ସତ୍ୟ ନୁହେଁ । ପ୍ରକୃତ ସତ୍ୟ ଇନ୍ଦ୍ରିୟମାନଙ୍କ ମାୟା ଦ୍ୱାରା ଆଚ୍ଛାଦିତ । ପ୍ରକୃତ ସତ୍ୟ ଆବିଷ୍କାର କରିବା ପାଇଁ ଗବେଷଣା, ବିଶ୍ଳେଷଣ, ଉପାସନା, ତପସ୍ୟା, ଧ୍ୟାନ (meditation) ଆବଶ୍ୟକ ।

ସଗୁଣ ବ୍ରହ୍ମନ୍‌ର ଜନ୍ମ ନିର୍ଗୁଣ ବ୍ରହ୍ମନ୍‌ରୁ । ଆମେ ସଗୁଣ ବ୍ରହ୍ମନ୍‌ରୁ ନିର୍ଗୁଣ ବ୍ରହ୍ମନ୍ ଯିବା ପାଇଁ ପ୍ରତିବନ୍ଧକ ମାୟାକୁ ଭେଦ କରି ଅଗ୍ରସର ହେବା ଉଚିତ୍ ।

ଏହାହିଁ ଓମ୍ ସଙ୍କେତର ଆହ୍ୱାନ୍ । ନିମ୍ନ ଚିତ୍ର ଅନୁଶୀଳନ କର ।



ଭାରତରେ ବଳିଷ୍ଠ ସାଂସ୍କୃତିକ ପୃଷ୍ଠଭୂମି ହେଉଛି ଆଧ୍ୟାତ୍ମିକତା । ଏକଦା ତନ୍ମୟ ହୋଇ ଭାରତୀୟ ପ୍ରାଚୀନ ଋଷିମାନେ ପ୍ରକୃତିକୁ ନିରୀକ୍ଷଣ, ପର୍ଯ୍ୟବେକ୍ଷଣ ଓ ଅନୁଶୀଳନ କରିଥିଲେ । ପ୍ରକୃତିର ରହସ୍ୟକୁ ଉନ୍ମୋଚନ କରିବା ଅନ୍ୱେଷଣରେ ମାନସ ମନ୍ଥନ ଓ ଗବେଷଣା କଲେ । ପ୍ରକୃତି ସହିତ ମନୁଷ୍ୟର ସଂପର୍କ କିପରି ସୁମଧୁର ହେବ, ଜୀବନ କିପରି କର୍ମମୟ, ମଧୁମୟ ଓ ବିକାଶୋନ୍ମୁଖୀ ହେବ ଓ ସତ୍ୟ, ତ୍ୟାଗ, ନୈତିକ ଆଦର୍ଶ ଉପରେ ପ୍ରତିଷ୍ଠିତ ହେବ, ସେ ବିଷୟରେ ସୁଚିନ୍ତିତ ପଦ୍ଧତି ନିର୍ଦ୍ଧାରଣ କଲେ ଭାରତୀୟ ଜ୍ଞାନୀ ଋଷିମାନେ ଓ ଲିପିବଦ୍ଧ କଲେ ପ୍ରଥମେ ଋକ୍ ବେଦରେ । ଭାରତୀୟ ମହାନ ଋଷି ଯାଜ୍ଞବଳ୍କ ନାସଦୀୟ ସୁକ୍ତର ତତ୍ତ୍ୱକୁ ନିମ୍ନଲିଖିତ ଶ୍ଳୋକରେ ବୃହଦାରଣ୍ୟକ ଉପନିଷଦରେ ପ୍ରକାଶ କଲେ:

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ
ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ,
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ
ପୂର୍ଣ୍ଣମେବାବ ଶିଷ୍ୟତେ ।

ଅର୍ଥାତ୍ ଏହି ନିର୍ଗୁଣ ବ୍ରହ୍ମନ୍ ପୂର୍ଣ୍ଣ ବା ଅସୀମ, ସଗୁଣ ବ୍ରହ୍ମନ୍ ମଧ୍ୟ ପୂର୍ଣ୍ଣ ବା ଅସୀମ, ନିର୍ଗୁଣ ବ୍ରହ୍ମନ୍‌ରୁ ଜନ୍ମ ସଗୁଣ ବ୍ରହ୍ମନ୍, ନିର୍ଗୁଣ ବ୍ରହ୍ମନ୍‌ରୁ ସଗୁଣ ବ୍ରହ୍ମନ ବାଦ ଦେଲେ ଯାହା ରହେ ତାହା ମଧ୍ୟ ନିର୍ଗୁଣ ବ୍ରହ୍ମନ୍ ।

ଏହି ଶ୍ଳୋକରୁ ଏହା ସ୍ପଷ୍ଟ ଯେ ନିର୍ଗୁଣ ବ୍ରହ୍ମନ୍ ଅସୀମ, ସଗୁଣ ବ୍ରହ୍ମନ୍ ମଧ୍ୟ ଅସୀମ, କିନ୍ତୁ ନିର୍ଗୁଣ ବ୍ରହ୍ମନ୍ ଅତ୍ୟଧିକ ବୃହତ୍ତର । କଥା ଉପନିଷଦରେ ଜଣେ ଋଷି ଅନୁମାନ କରିଛନ୍ତି ନିର୍ଗୁଣ ବ୍ରହ୍ମନ ସଗୁଣ ବ୍ରହ୍ମନ ଠାରୁ ପ୍ରାୟ ଚାରିଗୁଣ ବୃହତ୍ତର ।

ଯାଜ୍ଞବଳ୍କଙ୍କର ଉପରୋକ୍ତ ଶ୍ଳୋକଟି ଏକ ସମୀକରଣ ହିସାବରେ ଗ୍ରହଣ କରାଯାଇପାରେ । ଏହି ସମୀକରଣର ନାମ ନୈସର୍ଗିକ ସମୀକରଣ କୁହାଯାଇପାରେ । ତାହା ଏହିପରି ।

ନିର୍ଗୁଣ ବ୍ରହ୍ମନ୍ - ସଗୁଣ ବ୍ରହ୍ମନ୍ = ନିର୍ଗୁଣ ବ୍ରହ୍ମନ୍

ଯାଜ୍ଞବଳ୍କ ନିର୍ଗୁଣ ବ୍ରହ୍ମନକୁ ସାଧାରଣ ଭାଷାରେ ପ୍ରକାଶ କରିବାକୁ ଅକ୍ଷମ ହୋଇଥିବାରୁ ଏହାକୁ 'ନେତି' ତତ୍ତ୍ୱରେ ପ୍ରକାଶ କରିଥିଲେ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସଗୁଣ ବ୍ରହ୍ମନ୍‌ରୁ ନିର୍ଗୁଣ ବ୍ରହ୍ମନ୍‌କୁ ନେଇଯିବା ପାଇଁ ପରାମର୍ଶ ଦେଇ କହିଛନ୍ତି:

ତ୍ରୈଗୁଣ୍ୟ ବିଷୟା ବେଦୀ
ନି ସ୍ତ୍ରୈଗୁଣ୍ୟୋ ଭବାର୍ଜୁନ
ନିର୍ଦ୍ୱନ୍ଦ୍ୱୋ ବିତ ସତ୍ତ୍ୱ ସୋ
ନି ର୍ଯୋଗକ୍ଷେମ ଆତ୍ମବାନ୍

ଗୀତା : ଦ୍ୱିତୀୟ ଅଧ୍ୟାୟ, ଶ୍ଳୋକ ୪୫

ଅର୍ଥାତ୍, ତ୍ରିଗୁଣାତୀତ ହୋଇଯାଅ; ରାଗ-ଦ୍ୱେଷାଦି ଦ୍ୱନ୍ଦ୍ୱରୁ ରହିତ ହୋଇଯାଅ, ନିରନ୍ତର ନିତ୍ୟ ସତ୍ତ୍ୱ ପରମାତ୍ମାଙ୍କ ଠାରେ ସ୍ଥିତ ହୋଇଯାଅ; କୌଣସି ଅଭିଳାଷ ମଧ୍ୟ ରଖ ନାହିଁ ଏବଂ ପରମାତ୍ମ ପରାୟଣ ହୋଇଯାଅ ।

ପାର୍ଥିବ ଜଗତରେ ଆମେ ତିନିଗୁଣ (ସତ୍ତ୍ୱ, ରଜ, ତମ) ସମ୍ପନ୍ନ ହୋଇଛେ। ଏହି ଗୁଣ ଯୋଗୁ ଆମେ ଉଚ୍ଚତର ଆଧ୍ୟାତ୍ମିକ ଜ୍ଞାନ ଲାଭ କରି ପାରୁନାହାନ୍ତି । ଏ ପ୍ରକାର ଜ୍ଞାନ ଲାଭ କରିବା ପାଇଁ ଆମେ ମାୟାକୁ ଭେଦ କରି ପରମସତ୍ୟ ଆଡ଼କୁ ଅଗ୍ରସର ହେବା ବାଞ୍ଛନୀୟ ଯାହା ଓମ୍ ମନ୍ତ୍ରର ଉଦ୍ଦେଶ୍ୟ । ତେଣୁ ଭାଗବତରେ ଶ୍ରୀକୃଷ୍ଣଙ୍କର ଉପଦେଶ ହେଉଛି:

କର୍ମଣ୍ୟେ ବାଧିକା ରସ୍ତେ
ମା ଫଳେଷୁ କଦାଚନ
ମା କର୍ମଫଳ ହେତୁ ଭୁର୍ମା
ତେ ସଙ୍ଗୋ ଅସ୍ତ୍ୱ କର୍ମାଣି

ଅର୍ଥାତ୍ କର୍ତ୍ତବ୍ୟ କର୍ମ କରିବାରେ ହିଁ ତୁମର ଅଧିକାର ଅଛି, କର୍ମଫଳ ଉପରେ ଅଧିକାର ନାହିଁ ତେଣୁ ତୁମେ କର୍ମଫଳର ହେତୁ ହୁଅ ନାହିଁ ଏବଂ କର୍ମ ପ୍ରତି ମଧ୍ୟ ବିମୁଖ ହୁଅ ନାହିଁ ।

ପରମସତ୍ୟକୁ ଆବିଷ୍କାର କରିବା ପାଇଁ ନିରାସକ୍ତ କର୍ମ ବିଧେୟ ।
ଏହାର ଏକ ବଳିଷ୍ଠ ଉଦାହରଣ ହେଉଛନ୍ତି ଭଗବାନ ବୁଦ୍ଧ ।
ଏହାହିଁ ଓଁ ଚିହ୍ନର ବାର୍ତ୍ତା ।



# ନବମ ଅବତାର

କବି ଜୟଦେବଙ୍କ ରଚିତ 'ଦଶ ଅବତାର' କାବ୍ୟରେ ନବମ ଅବତାର ହେଉଛନ୍ତି ଗୌତମ ବୁଦ୍ଧ।  କବି ଜୟଦେବଙ୍କ ମତରେ ଭଗବାନ କ୍ରମାନ୍ୱୟରେ ଏହି ସବୁ ଅବତାର ଗ୍ରହଣ କରିଥିଲେ। କଳ୍କୀ ଅବତାର ଏ ପର୍ଯ୍ୟନ୍ତ ଜନ୍ମ ଗ୍ରହଣ କରି ନାହାନ୍ତି ।

| | |
|---|---|
| ୧) ମତ୍ସ୍ୟ ଅବତାର | ୬) ପର୍ଶୁରାମ ଅବତାର |
| ୨) କଚ୍ଛପ ଅବତାର | ୭) ଶ୍ରୀରାମ ଅବତାର |
| ୩)ବରାହ ଅବତାର | ୮) ବଳରାମ ଅବତାର |
| ୪) ନୃସିଂହ ଅବତାର | ୯) ବୁଦ୍ଧ ଅବତାର |
| ୫) ବାମନ ଅବତାର | ୧୦) କଳ୍କୀ ଅବତାର |

ପୁରାଣ ଅନୁସାରେ ସୃଷ୍ଟି ପ୍ରାରମ୍ଭରୁ ଭଗବାନ ବିଭିନ୍ନ ରୂପ ଧାରଣ କରି ଅଷ୍ଟମ ଅବତାର ପର୍ଯ୍ୟନ୍ତ ଜନ୍ମଗ୍ରହଣ କରିଛନ୍ତି। କିନ୍ତୁ ନବମ ଅବତାର ବୁଦ୍ଧ ହେଉଛନ୍ତି ଏକ ଐତିହାସିକ ଅବତାର, ଏହି ଅବତାର ପୁରାଣର ଅନ୍ତର୍ଭୁକ୍ତ ନୁହେଁ।

ଭବିଷ୍ୟତରେ ଭଗବାନ ଦୁଷ୍ଟ ଦମନ ଓ ସନ୍ଥ ପାଳନ ପାଇଁ କଳ୍କୀ ଅବତାରରେ ଜନ୍ମଗ୍ରହଣ କରିବେ ବୋଲି ମାଳିକାରେ ଲିପିବଦ୍ଧ ହୋଇଛି। କଥିତ ଅଛି ଜରାଶବରର ଶରାଘାତରେ ଶ୍ରୀକୃଷ୍ଣଙ୍କର ମହାପ୍ରୟାଣ ପରେ ଦ୍ୱାପର ଯୁଗ ଶେଷ ହୋଇଥିଲା ଓ ଦ୍ୱାପର ପରେ କଳି ଯୁଗ ଆରମ୍ଭ ହୋଇଥିଲା। କଳିଯୁଗର ସମାପ୍ତି କଳ୍କୀ ଅବତାରରେ। ବାରହାତ ଖଣ୍ଡା ଧାରଣ ପୂର୍ବକ କଳାଘୋଡ଼ା ଓ ଧଳାଘୋଡ଼ା ବାହାନରେ ବାହାରିବେ ଦୁଇଭାଇ ଶ୍ରୀଜଗନ୍ନାଥ ଓ ବଳଭଦ୍ର । କଳ୍କୀ ରୂପରେ ଛତିଆବଟରୁ ଦୁଷ୍ଟ ଓ ମ୍ଳେଛମାନଙ୍କୁ ସଂହାର କରିବାପାଇଁ ଭଗବାନ କଳ୍କୀରୂପ ଧାରଣ ପୂର୍ବକ ବାହାରିବେ। ସେହିଠାରୁ କଳିଯୁଗର ଅବସାନ ଘଟିବାର ମାଳିକା କହେ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯେଉଁ ଯୁଗାନ୍ତକାରୀ ସନ୍ଦେଶ ଦେଇଥିଲେ ତାହା ଥିଲା : ଯେବେ ଯେବେ ସଂସାରରେ ଅଧର୍ମ ବ୍ୟାପୀବ, ମ୍ଳେଛ ସଂହାର ଓ ସାଧୁସନ୍ଥମାନଙ୍କର ସୁରକ୍ଷା ତଥା ଧର୍ମ ସଂସ୍ଥାପନ ପାଇଁ ଯୁଗେ ଯୁଗେ ଭଗବାନ ଅବତାର ରୂପରେ ଜନ୍ମଗ୍ରହଣ କରିବେ।

ନବମ ଅବତାର ହେଉଛନ୍ତି ବୁଦ୍ଧ ଯେକି କଳିଯୁଗରେ ଜନ୍ମଗ୍ରହଣ କରିଛନ୍ତି । ସେ ଅଶୀ ବର୍ଷ ବୟସରେ ପଦାର୍ପଣ କରିଥିବା ସମୟରେ କୋଶଳରାଜା ପ୍ରଶନ୍‌ଜିତ୍ ଚନ୍ଦନ କାଠରେ ବୁଦ୍ଧଙ୍କର ଏକ ପ୍ରତିମୂର୍ତ୍ତି ନିର୍ମାଣ କରାଇଥିଲେ ।

ସେହି ମୂର୍ତ୍ତିକୁ ଅନୁସରଣ କରି ଆଜି ସମଗ୍ର ପୃଥିବୀ ବିଭିନ୍ନ ପଦାର୍ଥ ଉପଯୋଗ କରି ବୁଦ୍ଧଙ୍କର ବିଭିନ୍ନ ମୂର୍ତ୍ତି ନିର୍ମାଣ କରିପାରୁଛି ।



ଗୌତମ ବୁଦ୍ଧ : ଖ୍ରୀଷ୍ଟପୂର୍ବ ୫୬୬ -୪୮୭

କବି ଜୟଦେବଙ୍କ ଦ୍ୱାରା ଲିଖିତ ଦଶ ଅବତାରରେ ବୁଦ୍ଧଙ୍କ ଉଦ୍ଦେଶ୍ୟରେ ଲିଖିତ ଶ୍ଳୋକ:

ନିନ୍ଦସି ଯଜ୍ଞ ବିଧେର
ଶ୍ରୁତି ଜାତମ୍
ସଦୟ ହୃଦୟ ଦର୍ଶିତ
ପଶୁ ଘାତମ୍
କେଶବ ଧୃତ ବୁଦ୍ଧ ଶରୀର
ଜୟ ଜଗଦିଶ ହରେ ।।

ଶ୍ଳୋକର ଅର୍ଥ ଅନୁସାରେ ବୁଦ୍ଧଦେବ ଯଜ୍ଞରେ ପଶୁବଳୀକୁ ବିରୋଧ କରୁଥିଲେ । ଏହି କଥା ମଧ୍ୟ ଆଧୁନିକ ଯୁଗରେ ଭାରତ ସରକାର ପଶୁବଳୀ ପ୍ରଥା ଆଇନତଃ ଅସିଦ୍ଧ ଘୋଷଣା କରିଛନ୍ତି ।

ଗୀତାର ଅଷ୍ଟମ ଅଧ୍ୟାୟରେ ଶ୍ଳୋକ ୧୭ରେ ଭଗବାନ ଶ୍ରୀକୃଷ୍ଣ କାଳତତ୍ତ୍ୱ ବିଷୟରେ ବର୍ଣ୍ଣନା କରି କହିଛନ୍ତି:

ସହସ୍ର ଯୁଗ ପର୍ଯ୍ୟନ୍ତ
ମହର୍ମଦ୍ ବ୍ରହ୍ମଣୋ ବିଦୁଃ
ରାତ୍ରିଂ ଯୁଗସହସ୍ରାନ୍ତାଂ
ତେଽହୋରାତ୍ର ବିବୋଜନାଃ ।।

ଅର୍ଥାତ୍ ବ୍ରହ୍ମାଙ୍କର ଗୋଟିଏ ଦିନ ଏକ ସହସ୍ର ଚତୁର୍ଯୁଗୀ ଅବଧି ବିଶିଷ୍ଟ ଏବଂ ଗୋଟିଏ ରାତ୍ରି ମଧ୍ୟ ଏକ ସହସ୍ର ଚତୁର୍ଯୁଗୀ ଅବଧି ବିଶିଷ୍ଟ ବୋଲି ଯୋଗୀ ମୁନିମାନେ ଏହି କାଳର ପ୍ରକୃତ ତତ୍ତ୍ୱ ଜାଣନ୍ତି ।

ଚତୁର୍ଯୁଗ ହେଉଛି: ସତ୍ୟ, ତ୍ରେତା, ଦ୍ୱାପର ଓ କଳି ।

ଏକ ରକ୍ଷୀଙ୍କ ମତରେ:

ସତ୍ୟଯୁଗ = ୧୭,୨୮,୦୦୦ ବର୍ଷ
ତ୍ରେତାଯୁଗ = ୧୨,୯୬,୦୦୦ ବର୍ଷ
ଦ୍ୱାପରଯୁଗ = ୮,୬୪,୦୦୦ ବର୍ଷ
କଳିଯୁଗ = ୪,୩୨,୦୦୦ ବର୍ଷ

କଳିଯୁଗର ଦୁଇଗୁଣ ଦ୍ୱାପର, ତିନିଗୁଣ ତ୍ରେତା, ଚାରିଗୁଣ ହେଉଛି ସତ୍ୟଯୁଗର ଅବଧି ।

ଯୋଗୀ ପରମହଂସ ଯୋଗାନନ୍ଦ କହିଛନ୍ତି ହିନ୍ଦୁ ଶାସ୍ତ୍ର ଅନୁସାରେ ଖ୍ରୀଷ୍ଟପୂର୍ବ ୩୧୦୨ ହେଉଛି ଦ୍ୱାପର ଯୁଗର ଶେଷ।

ଅବଶ୍ୟ ଏ ବିଷୟରେ ଅନେକ ବିଜ୍ଞମାନଙ୍କର ଭିନ୍ନ ଭିନ୍ନ ମତ ରହିଛି।

× × ×

ନବମ ଅବତାରରେ ବର୍ଣ୍ଣିତ ବୁଦ୍ଧଦେବ ହେଉଛନ୍ତି କଳିଯୁଗର ଅବତାର। ତାଙ୍କର ପିତା ଗୌତମ ଶାକ୍ୟ ବଂଶର ରାଜା ଶୁଦ୍ଧୋଦନ। ରୋହିଣୀ ନାମକ ନଦୀ କୂଳରେ ଅବସ୍ଥିତ କପିଳବାସ୍ତୁ ତାଙ୍କର ରାଜଧାନୀ ଥିଲା। ଶୁଦ୍ଧୋଦନଙ୍କ ରାଣୀଙ୍କର ନାମ ମହାମାୟା। ପ୍ରଥା ଅନୁଯାୟୀ ପ୍ରଥମ ସନ୍ତାନ ପିତା ଗୃହରେ ଜନ୍ମ ନେବା ଅବସରରେ ରାଣୀ ମହାମାୟା ପିତୃ ଗୃହକୁ ଯିବା ରାସ୍ତାରେ ଲୁମ୍ବିନୀ ଉଦ୍ୟାନରେ ଏକ ଶିଶୁପୁତ୍ରକୁ ଜନ୍ମ ଦେଲେ। ଏହା ଥିଲା ବୈଶାଖ ପୂର୍ଣ୍ଣିମା। ହିମାଳୟର ପାଦଦେଶରେ ଅବସ୍ଥିତ ଲୁମ୍ବିନୀ ନଗର ବର୍ତ୍ତମାନ ନେପାଳ ରାଜ୍ୟରେ।

ଜନ୍ମ ଦେବାର ସାତଦିନ ପରେ ରାଣୀ ମହାମାୟାଙ୍କର ମୃତ୍ୟୁ ହୋଇଥିଲା। ଶିଶୁ ପୁତ୍ରର ଲାଳନ ପାଳନ ନିମନ୍ତେ ରାଜା ଶୁଦ୍ଧୋଦନ ମହାମାୟାଙ୍କ ସାନ ଭଉଣୀ ମହାପ୍ରଜାପତି ବା ଗୌତମୀଙ୍କୁ ଦ୍ୱିତୀୟ ବିବାହ କରିଥିଲେ। ଗୌତମୀ ଶିଶୁପୁତ୍ରଟିକୁ ଖୁବ୍ ଯତ୍ନ ସହକାରେ ଲାଳନ ପାଳନ କଲେ। ରାଜା ଶୁଦ୍ଧୋଦନ ଶିଶୁପୁତ୍ରଟିର ନାମକରଣ କଲେ ସିଦ୍ଧାର୍ଥ, ଯାହାର ଅର୍ଥ ସଫଳ ଉଦ୍ଦେଶ୍ୟ।

ସିଦ୍ଧାର୍ଥ ଗୌତମ ସାତ ଆଠବର୍ଷରେ ପଦାର୍ପଣ କରିବା ଉତ୍ତାରୁ ରାଜା ଶୁଦ୍ଧୋଦନ ସିଦ୍ଧାର୍ଥଙ୍କୁ ଶିକ୍ଷାଦେବା ନିମନ୍ତେ ସୁପ୍ରସିଦ୍ଧ ଶିକ୍ଷକମାନଙ୍କୁ ନିଯୁକ୍ତ କରାଇଥିଲେ। ବିଜ୍ଞାନ, ଗଣିତ, ସଙ୍ଗୀତ ଓ ବେଦ ଶିକ୍ଷା ଲାଭକଲେ ସିଦ୍ଧାର୍ଥ କିନ୍ତୁ ସେ ଗଣିତ ଓ ସଙ୍ଗୀତରେ ଅଧିକ ପାରଦର୍ଶୀ ହୋଇଥିଲେ।

ଜ୍ୟୋତିଷମାନଙ୍କର ଭବିଷ୍ୟତବାଣୀ ଅନୁସାରେ ସିଦ୍ଧାର୍ଥ ଏକ ପ୍ରଭାବଶାଳୀ ବିଖ୍ୟାତ ରାଜା ଅଥବା ଏକ ପ୍ରଭାବଶାଳୀ ପଥପ୍ରଦର୍ଶକ ଯୋଗୀ ହେବେ।

ପୁତ୍ରର ଯୋଗୀ ହେବା ଭବିଷ୍ୟତବାଣୀରେ ବ୍ୟଥିତ ରାଜା ସିଦ୍ଧାର୍ଥଙ୍କୁ ରାଜକୀୟ ଆମୋଦ ପ୍ରମୋଦରେ ବ୍ୟସ୍ତ ରଖିବାକୁ ଚାହିଁଲେ ତଥା ରାଜକାର୍ଯ୍ୟରେ ଲିପ୍ତ ରହିବାର ସମସ୍ତ ପ୍ରଚେଷ୍ଟା ଜାରି ରଖିଲେ। ପିତାଙ୍କର ଆୟୋଜିତ ସମସ୍ତ କାର୍ଯ୍ୟରୁ ସେ ବିତସ୍ପୃହ ରହୁଥିଲେ ଓ ଏକାକୀ ରହିବାକୁ ପସନ୍ଦ କରୁଥିଲେ।

କପିଳବାସ୍ତୁ ନଗରୀର ପାଦଦେଶରେ ପ୍ରବାହିତ ରୋହିଣୀ ନଦୀର ଅପର ପାର୍ଶ୍ୱରେ କୋଲ୍ୟା ରାଜ୍ୟର ରାଜା ଦଣ୍ଡପାଣି। ରାଣୀ ପମିତା ଥିଲେ ଶୁଦ୍ଧୋଦନଙ୍କର କନିଷ୍ଠ

ଭଗ୍ନୀ। ପୁତ୍ରର ମତିଗତି ଦେଖି ଶୁଦ୍ଧୋଦନ ସିଦ୍ଧାର୍ଥଙ୍କୁ ମାତ୍ର ଊନବିଂଶ ବୟସରେ ଭଗ୍ନୀପୁତ୍ରୀ ସୁନ୍ଦରୀ ବୁଦ୍ଧିମତୀ ଯଶୋଧାରା ସହ ବିବାହ କରାଇଦେଲେ। ଋତୁ ଅନୁଯାୟୀ ତିନୋଟି ଉଆସ ନିର୍ମାଣ କରାଇଲେ ପୁତ୍ର ଓ ପୁତ୍ରବଧୂଙ୍କର ନିବାସ ପାଇଁ; ଗୋଟିଏ ଗ୍ରୀଷ୍ମ, ଦ୍ୱିତୀୟଟି ବର୍ଷା ଓ ତୃତୀୟଟି ଶୀତଦିନ ପାଇଁ ଅନୁକୂଳ ଓ ଉପଯୋଗୀ। ପୁତ୍ର ଓ ପୁତ୍ରବଧୂଙ୍କର ଯତ୍ନ ନେବା ନିମନ୍ତେ ପ୍ରାୟ ପାଞ୍ଚଶହ ସୁନ୍ଦରୀ ମହିଳା ପରିଚାରିକାଙ୍କୁ ନିଯୁକ୍ତ କରିଥିଲେ। ନୃତ୍ୟ, ଗୀତରେ ଉଆସର ବାତାବରଣ ସଦାସର୍ବଦା ଉତ୍ସବ ମୁଖର ରହୁଥିଲା। କିନ୍ତୁ ଏହି ସମସ୍ତ ପ୍ରକାର ଐଶ୍ୱର୍ଯ୍ୟ ସିଦ୍ଧାର୍ଥଙ୍କୁ କୌଣସି ମତେ ପ୍ରଭାବିତ କରିପାରିନଥିଲା। ସେ ପତ୍ନୀ ଯଶୋଧାରା, ପିତା ଶୁଦ୍ଧୋଦନ ଓ ମାତା ଗୌତମୀଙ୍କୁ ସ୍ପଷ୍ଟ ଭାବରେ ଜଣାଇ ଦେଇଥିଲେ ଯେ ପରମ ସତ୍ୟର ଆବିଷ୍କାର ପାଇଁ ସେ ନିଶ୍ଚୟ ଗୃହତ୍ୟାଗ କରିବେ ଓ ସନ୍ନ୍ୟାସ ଧର୍ମ ଗ୍ରହଣ କରିବେ, କିନ୍ତୁ କେଉଁଦିନ ଗୃହତ୍ୟାଗ କରିବେ ସେ କଥା ସେ କେବେ ପ୍ରକାଶ କରିନଥିଲେ।

ସମୟକ୍ରମେ ସିଦ୍ଧାର୍ଥଙ୍କର ଏକ ପୁତ୍ର ଜାତ ହେଲା। ସିଦ୍ଧାର୍ଥ ସ୍ୱୟଂ ପୁତ୍ରର ନାମକରଣ କଲେ ରାହୁଲ। ରାହୁଲଙ୍କୁ ଯେତେବେଳେ ତିନିବର୍ଷ ହୋଇଥିଲା ସିଦ୍ଧାର୍ଥ ଗୃହତ୍ୟାଗ କରିଥିଲେ। ଗୃହତ୍ୟାଗ ସମୟକୁ ସିଦ୍ଧାର୍ଥଙ୍କର ବୟସ ହୋଇଥିଲା ଅଣତିରିଶ। ଏକ ପୂର୍ଣ୍ଣିମା ରାତ୍ରରେ ସେ ପରିବାର ଓ ରାଜ୍ୟ ପରିତ୍ୟାଗ କଲେ ସତ୍ୟର ସନ୍ଧାନରେ। ରଥଚାଳକ ଚନ୍ନା ଓ ଘୋଟକ କାନ୍ଥା ସାହାଯ୍ୟରେ ନଗର ବାହାରକୁ ଆସିଲେ।

ସେତେବେଳେ ସୁପ୍ତ ସମଗ୍ର ନଗରବାସୀ, ଶିଶୁପୁତ୍ର ରାହୁଲ ରାଜା ଶୁଦ୍ଧୋଦନ ଓ ମାତା ଗୌତମୀ। ନିଦ୍ରିତ ଶିଶୁପୁତ୍ରକୁ କୋଳରେ ଧରି ଯଶୋଧାରା ମୁଦ୍ରିତ ନୟନରେ ପଲଙ୍କ ଉପରେ ସିଦ୍ଧାର୍ଥଙ୍କର ବିଦାୟକାଳୀନ ମୁହୂର୍ତ୍ତରେ ବୋଧହୁଏ ଚେଇଁକି ଶୋଇ ରହିଥିଲେ।

ସିଦ୍ଧାର୍ଥ କେଶ ମୁଣ୍ଡନ ପୂର୍ବକ ହଳଦୀ ରଙ୍ଗର ବସ୍ତ୍ର ପରିଧାନ କରି ସମସ୍ତ ରାଜକୀୟ ପୋଷାକ ଓ ଆଭରଣ ଚନ୍ନାଙ୍କ ହସ୍ତରେ ଅର୍ପଣ କଲେ ଓ ତାହା ତାଙ୍କ ପିତାଙ୍କୁ ଦେବାକୁ ଅନୁରୋଧ କଲେ। ତତ୍ପରେ ତାଙ୍କଠାରୁ ବିଦାୟ ନେଇ ସନ୍ନ୍ୟାସ ଜୀବନର ପୂର୍ତ୍ତି ନିମନ୍ତେ ଅରଣ୍ୟ ଅଭିମୁଖେ ଗମନ କଲେ।

ପ୍ରଥମେ ଯୋଗୀ ଆଲାରଙ୍କ ନିକଟରେ ଯୋଗବିଦ୍ୟା ଶିକ୍ଷା କଲେ ସିଦ୍ଧାର୍ଥ। କ୍ଷୁଧା ନିବାରଣ ପାଇଁ ଭିକ୍ଷାଥାଳ ଧରିଲେ; ନିଦ୍ରାପାଇଁ ପତ୍ରଶଯ୍ୟା ବ୍ୟବହାର କଲେ ଓ କିଛିଦିନ ପରେ ସେ ରାଜଗୃହ ଯୋଗୀ ଉଦ୍ରକଙ୍କ ନିକଟରୁ ଅଧିକ ଯୋଗବିଦ୍ୟା ଶିକ୍ଷା କରିବା ଓ ସମାଧିସ୍ଥ ହେବା ପ୍ରକ୍ରିୟା ଶିକ୍ଷାଲାଭ କଲେ।

ଏହି କାର୍ଯ୍ୟକ୍ରମ ମାଧ୍ୟମରେ କାଳକ୍ରମେ ଛଅବର୍ଷ ଅତିବାହିତ ହୋଇଗଲା । କିନ୍ତୁ ତାଙ୍କର ମୂଳ ଉଦ୍ଦେଶ୍ୟ ପୂର୍ଣ୍ଣ ହେଲା ନାହିଁ । ତେଣୁ ସେ ସ୍ଥିର କଲେ ଯେ ନିଜ ଚେଷ୍ଟାରେ ପ୍ରକୃତିର ସତ୍ୟକୁ ଉଦ୍‌ଘାଟନ କରିବାକୁ । ଉରୁବେଳ ନାମକ ସ୍ଥାନରେ ନଦୀ ନିରଞ୍ଜନା ତଟରେ ମାତ୍ର ଏକବର୍ଷ ମଧ୍ୟରେ ପ୍ରକୃତିର ସତ୍ୟକୁ ଆବିଷ୍କାର କରିବାକୁ ସକ୍ଷମ ହେଲେ । ଏଥି ନିମନ୍ତେ ସେ ଏକ ନୂତନ ଯୋଗ ପ୍ରକ୍ରିୟା, ବିପାସାନ ଯୋଗ ଉଦ୍ଭାବନ କଲେ; ଅତ୍ୟଧିକ କଠୋର ମାର୍ଗ ପରିହାର କରି ମଧ୍ୟମ ମାର୍ଗ ଦ୍ୱାରା ତପସ୍ୟା ଜାରି ରଖିଲେ ଏକ ଅଶ୍ୱ   ବୃକ୍ଷର ଛାୟା ତଳେ ।

ଏକ ବୈଶାଖ ପୂର୍ଣ୍ଣିମାରେ ତାଙ୍କର ଜ୍ଞାନୋଦୟ ହେଲା । ଏହି ଜ୍ଞାନୋଦୟ  ପରେ ଜନମୁଖରେ 'ବୁଦ୍ଧ' ନାମରେ ନାମିତ ହେଲେ ।

ବୁଦ୍ଧଙ୍କର ଆବିର୍ଭାବ ସମୟରେ ସମାଜରେ ଅନେକ କୁପ୍ରଥା, କୁସଂସ୍କାର ଚରମ ସୀମାରେ ଥିଲା । ଅତ୍ୟଧିକ ଜାତିପ୍ରଥା, ଅସ୍ପୃଶ୍ୟତା, ନିଷ୍ଠୁରତା, ଅସହନଶୀଳତା, ଯଜ୍ଞ ଓ କର୍ମକାଣ୍ଡ, ପଶୁବଳୀ ଇତ୍ୟାଦି ଅନେକ ପ୍ରଥା ସମାଜକୁ ଏକ ପ୍ରକାର ପଙ୍ଗୁ କରି ଦେଇଥିଲା । ସାଧାରଣ ଜନତା ବହୁତ ଦୁଃଖ କଷ୍ଟରେ କାଳାତିପାତ କରୁଥିଲେ ।

ସମାଜର ଏହି ଘଡ଼ିସନ୍ଧି ସମୟରେ ବୁଦ୍ଧଙ୍କ ବାଣୀ ଲୋକମୁଖରେ ପ୍ରଚରିତ ହେବାକୁ ଲାଗିଲା ଓ ସମାଜକୁ ଅନେକ ପ୍ରକାର ଦୁଃଖକଷ୍ଟରୁ ଉଦ୍ଧାର କରିବାରେ ସାହାଯ୍ୟ କଲା । ବୁଦ୍ଧ ୩୫ ବର୍ଷକାଳ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଜନସାଧାରଣଙ୍କର ଦୁଃଖ ମୋଚନ କରିବାର ପନ୍ଥା ପ୍ରଚର କରିଥିଲେ ।

ବୁଦ୍ଧଙ୍କବାଣୀ ଯୁକ୍ତିଯୁକ୍ତ ଓ ବିଜ୍ଞାନ ସମ୍ମତ । ତାଙ୍କ ମତରେ ଯେକୌଣସି ବାଣୀ ବା ଉପଦେଶରେ ଆଦୌ ହଠାତ୍ ବିଶ୍ୱାସ କରିବା ଉଚିତ୍ ନୁହେଁ । କୌଣସି ବିଷୟକୁ ଗ୍ରହଣ କରିବା ପୂର୍ବରୁ ପରୀକ୍ଷା ନିରିକ୍ଷା କରି କାର୍ଯ୍ୟକାରୀ କରିବା ଉଚିତ୍ ।

ବୁଦ୍ଧଙ୍କ ମତରେ ନିମ୍ନଲିଖିତ ନଅଗୋଟି ଉପଦେଶ ପାଳନ କରିବା ବିଧେୟ ।

୧) କୁହାଯାଇଥିବା କଥା ବିଶ୍ୱାସ କର ନାହିଁ ।

୨) ଯେଉଁ କଥା ଯୁଗଯୁଗ ଧରି କୁହାଯାଇଛି ବା ପ୍ରଚଳିତ ଅଛି ସେହି କଥାରେ ବିଶ୍ୱାସ କର ନାହିଁ ।

୩) ଶାସ୍ତ୍ରରେ କୁହାଯାଇଛି ବୋଲି ବିଶ୍ୱାସ କର ନାହିଁ ।

୪) ଈଶ୍ୱର କୌଣସି କଥା କହିଛନ୍ତି ବୋଲି ବିଶ୍ୱାସ କର ନାହିଁ ।

୫) କୌଣସି କଥା ଶିକ୍ଷକ ବା ଗୁରୁ କହିଛନ୍ତି ବୋଲି ସେଥିରେ ବିଶ୍ୱାସ କର ନାହିଁ ।

୬) କୌଣସି ଶାସନକର୍ତ୍ତାର କଥାକୁ ବିଶ୍ୱାସ କର ନାହିଁ ।

୭) କୌଣସି ଶୁଣାକଥା, ଗୁଜବ, ମତାମତ ବା ଜନମତ ଉପରେ ବିଶ୍ୱାସ କର ନାହିଁ।

୮) କୌଣସି ତର୍କ ସମର୍ଥିତ କଥାରେ ବିଶ୍ୱାସ କର ନାହିଁ।

୯) ବିଜ୍ଞ ବ୍ୟକ୍ତିମାନେ କହିଥିବା କଥା ଯଦି ବିଜ୍ଞାନ ସମ୍ମତ, ବିବେକ ଅନୁମୋଦିତ ଓ ବହୁ ପରିକ୍ଷିତ ହୋଇଥାଏ ଏବଂ ତାହା ଯଦି ନିଜପାଇଁ ବା ଜନସମାଜ ପାଇଁ ମଙ୍ଗଳମୟ ହୋଇଥାଏ, ତାହାହେଲେ ସେହି କଥାକୁ ବିଶ୍ୱାସ କରିବା ଉଚିତ।

ଏହି ଉପଦେଶ ମାଧ୍ୟମରେ ସେ ଜନସାଧାରଣମାନଙ୍କୁ ନିଜର ବିବେକ ଉପରେ ଗୁରୁତ୍ୱ ଦେବାକୁ କହିଛନ୍ତି। କୌଣସି କଥା ବୁଦ୍ଧ କହିଛନ୍ତି ବୋଲି ଗ୍ରହଣ କରିବା ଅନୁଚିତ। ବୁଦ୍ଧଙ୍କ କଥାକୁ ଗ୍ରହଣ କରିବା ପୂର୍ବରୁ ପରୀକ୍ଷା କରିବା ଉଚିତ୍।

ବୁଦ୍ଧଙ୍କ ପରି ଉଦାରପନ୍ଥୀ ସାମାଜିକ କର୍ମୀ ବିରଳ।

ସିଦ୍ଧାର୍ଥ ଗୌତମ ଯେଉଁ ପ୍ରଥା ଅନୁସରଣ କରି ବୁଦ୍ଧତ୍ୱ ପ୍ରାପ୍ତି ହେଲେ ତାହାଥିଲା ତାଙ୍କ ଦ୍ୱାରା ଆବିଷ୍କୃତ ବିପାସାନ ଯୋଗ ବିଦ୍ୟା। ଏହି ଯୋଗ ବିଦ୍ୟା ମଧ୍ୟ ଶ୍ରୀକୃଷ୍ଣଙ୍କ ପ୍ରଣିତ କ୍ରିୟାଯୋଗ ବା ରାଜଯୋଗ ସଦୃଶ। କିନ୍ତୁ ଶ୍ରୀକୃଷ୍ଣଙ୍କ ମହାପ୍ରୟାଣର ଅନେକ ବର୍ଷପରେ କାଳକ୍ରମେ ଏହି ବିଦ୍ୟା ଲୋପ ପାଇଗଲା। ସିଦ୍ଧାର୍ଥ ଯୋଗବିଦ୍ୟା ଆରମ୍ଭ କରିବା ସମୟକୁ ଯୋଗୀମାନଙ୍କ ମଧ୍ୟରେ କେବଳ ସାଧାରଣ ଯୋଗବିଦ୍ୟା ପ୍ରଚଳନ ଥିଲା; ସେହି ବିଦ୍ୟା ଶିକ୍ଷା ଦିଆଯାଉଥିଲା। କିନ୍ତୁ ସିଦ୍ଧାର୍ଥ ନିଜର ଅଧ୍ୟବସାୟ ବଳରେ ମଧ୍ୟମ ମାର୍ଗ ମାଧ୍ୟମରେ ଆବିଷ୍କାର କଲେ ଏହି ବିପାସାନ ଯୋଗବିଦ୍ୟା। ତତ୍ପରେ ସେ ପ୍ରକୃତିର ନିଗୂଢ଼ ସତ୍ୟକୁ ମଧ୍ୟ ଆବିଷ୍କାର କରିଥିଲେ। ସେହି ସତ୍ୟଗୁଡ଼ିକ ହେଲା:

କ) ସମସ୍ତ ସୃଷ୍ଟି ପରସ୍ପର ନିର୍ଭରଶୀଳ (dependent Origination)।

ଖ) ସମସ୍ତ ଶକ୍ତି ଓ ପଦାର୍ଥ ପରସ୍ପର ଆପେକ୍ଷିକ ଓ ଅସ୍ଥାୟୀ (Relative and Inpermanent)।

ଗ) ଯାହା ଘଟୁଛି ତାହା କୌଣସି କାରଣ ନିମିତ୍ତ ଘଟୁଛି। ବିନା କାରଣରେ କୌଣସି କଥା ଘଟେ ନାହିଁ। ଏହା ପ୍ରକୃତିର ନିୟମ (Law of causation)।

ଘ) ସୃଷ୍ଟିରେ ପ୍ରାୟ ୧୦,୦୦୦ ବିଶ୍ୱବ୍ରହ୍ମାଣ୍ଡ ରହିଛି ଓ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ପ୍ରାଣୀମାନେ ଅଛନ୍ତି।

ଙ) ଏହି ବିଶ୍ୱବ୍ରହ୍ମାଣ୍ଡମାନେ ପରସ୍ପର ମଧ୍ୟରେ ଜାଲ ପରି ଛନ୍ଦାଛନ୍ଦି ହୋଇ ରହିଛନ୍ତି।

ଚ) ପ୍ରକୃତିର ବିବିଧତା ମଧ୍ୟରେ ଏକତା ଯାହା ପ୍ରକୃତିର ସତ୍ୟ।

ଛ) ବୁଦ୍ଧ ପୁର୍ନଜନ୍ମ ବିଷୟରେ ନିଜ ଯୋଗ ବଳରେ ଦର୍ଶନ ଓ ଅନୁଭବ କରିଛନ୍ତି। ସେ ମଧ୍ୟ ଅନ୍ୟମାନଙ୍କର ପୁର୍ନଜନ୍ମ ତଥା, ଅନ୍ୟମାନଙ୍କର ମନର କଥା ଜାଣିପାରୁଥିଲେ।

ବୁଦ୍ଧଙ୍କର ବୁଦ୍ଧତ୍ୱ ପ୍ରାପ୍ତି ପରେ ପୁନରାୟ ପୁର୍ନଜନ୍ମ ନାହିଁ; ତାହାହିଁ ମୋକ୍ଷ।

ଜାଣି ଆଶ୍ଚର୍ଯ୍ୟଲାଗେ ବୁଦ୍ଧ କିପରି ଅଢ଼େଇ ହଜାର ବର୍ଷ ପୂର୍ବେ ପ୍ରକୃତିର ସତ୍ୟମାନଙ୍କୁ ଉପଲବ୍ଧି କରିଥିଲେ ଯାହା ବର୍ତ୍ତମାନ ଆଧୁନିକ ବିଜ୍ଞାନ ସ୍ୱୀକାର କରୁଛି।

ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କ ମତରେ:

"If ever there is any religion that would cope with modern scientific needs, it would be Buddhism."

ସିଦ୍ଧାର୍ଥ ଜ୍ଞାନ ପ୍ରାପ୍ତ ବା ସିଦ୍ଧ ବା ବୁଦ୍ଧ ହେଲାପରେ ସେ ସାଧାରଣ ଜନତାଙ୍କୁ ତାଙ୍କର ଲବ୍ଧ ଜ୍ଞାନ ବିଷୟରେ ପ୍ରବଚନ ଦେବାକୁ ଆରମ୍ଭ କଲେ ପ୍ରାୟ ୪୫ ବର୍ଷ କାଳ, ୩୫ ବର୍ଷରୁ ୮୦ ବର୍ଷ ପର୍ଯ୍ୟନ୍ତ।

ଅଧିକାଂଶ ପ୍ରବଚନ ଥିଲା ଚାରୋଟି ଆର୍ଯ୍ୟ ସତ୍ୟ ବିଷୟରେ ଓ ତାହାଥିଲା ସାଧାରଣତଃ କଥିତ ଭାଷାରେ।

## ଚାରୋଟି ଆର୍ଯ୍ୟସତ୍ୟ (Noble Truths)

ଆର୍ଯ୍ୟ ସତ୍ୟର ଅର୍ଥ ହେଉଛି ପରମ ସତ୍ୟ। ଏହି ସତ୍ୟରେ କୌଣସି ସନ୍ଦେହ ବା ପରିବର୍ତ୍ତନର ଆବଶ୍ୟକତା ନାହିଁ।

**ପ୍ରଥମ ଆର୍ଯ୍ୟ ସତ୍ୟ**

ଜୀବନ ଦୁଃଖମୟ।

ଦୁଃଖର ମୁଖ୍ୟ କାରଣ ହେଉଛି ପ୍ରକୃତି ସମ୍ବନ୍ଧରେ ଅଜ୍ଞତା। ପ୍ରକୃତି ଯେ ସଦା ସର୍ବଦା ଚଳଚଂଚଳ, ଅସ୍ଥିର ଏ କଥା ସମସ୍ତେ ଜାଣନ୍ତି ନାହିଁ। ଯୌବନ ସବୁଦିନେ ରହେ ନାହିଁ, ବାର୍ଦ୍ଧକ୍ୟ ନିଶ୍ଚୟ ଆସିବ, କଳା କେଶ ନିଶ୍ଚୟ ଧବଳ ହେବ; ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ, ମଝିରେ ମଝିରେ ମନୁଷ୍ୟ ବ୍ୟାଧି ଗ୍ରସ୍ତ ହେବ। ଜନ୍ମ, ମୃତ୍ୟୁ, ବାର୍ଦ୍ଧକ୍ୟ, ବ୍ୟାଧି ସାଧାରଣତଃ ଦୁଃଖର କାରଣ।

ମନୁଷ୍ୟ ଯେତେବେଳେ ଅସ୍ଥାୟୀ ପଦାର୍ଥକୁ ସ୍ଥାୟୀ ବୋଲି ଗ୍ରହଣ କରେ ସେତେବେଳେ ଦୁଃଖ ହୁଏ। ମନୁଷ୍ୟର ଶରୀର ଆକୃତି, ଭାବନା, ଚିନ୍ତାଶକ୍ତି ନଦୀର ଧାର ପରି ପରିବର୍ତ୍ତନଶୀଳ ଓ ଏହା ମନୁଷ୍ୟକୁ ଦୁଃଖ ଦିଏ।

ଗୋଟିଏ ମଞ୍ଜି; ଉପଯୁକ୍ତ ମାଟି, ବାୟୁ, ଜଳ ଓ ସୂର୍ଯ୍ୟକିରଣ ପାଇଲେ ଏହା ଅଙ୍କୁରୋଦଗମ ହୋଇ କାଳକ୍ରମେ ଦ୍ରୁମରେ ପରିଣତ ହୁଏ; ସକାଳ ହୁଏ ମଧ୍ୟାହ୍ନ,

ମଧ୍ୟାହ୍ନରୁ ସଞ୍ଜ, ସଞ୍ଜ ହୁଏ ରାତି ଓ ତା'ପରେ ସକାଳ । ସମୁଦ୍ରରୁ ଜଳ ବାଷ୍ପ ଆକାରରେ ଆକାଶକୁ ଯାଏ । ମେଘ, ବର୍ଷା ହୁଏ କ୍ଷେତରେ ଶସ୍ୟ ଉତ୍ପନ୍ନ ହୁଏ, ନଦୀ ଦ୍ୱାରା ପୁନରାୟ ଜଳ ସୃଷ୍ଟି ହୋଇ ସମୁଦ୍ରକୁ ଯାଏ । ଏହା ହିଁ ପ୍ରକୃତିର ପରିବର୍ତ୍ତନ । ପ୍ରକୃତି ପରିବର୍ତ୍ତନଶୀଳ ନ ହୋଇଥିଲେ ସୃଷ୍ଟି ସମ୍ଭବ ହୋଇନଥାନ୍ତା ।

ଅନେକ ବର୍ଷ ପୂର୍ବରୁ ଭାରତ ଏକ ଦ୍ୱୀପ ଥିଲା । କିନ୍ତୁ କାଳକ୍ରମେ ଏହା ହିମାଳୟ ସହିତ ସଂଯୁକ୍ତ ହୋଇ ଏସିଆ ମହାଦେଶ ହେଲା; ଏବେ ମଧ୍ୟ ଏଭେରେଷ୍ଟର ଉଚ୍ଚତା ବୃଦ୍ଧି ପାଉଛି । ଆମେରିକା ଓ ଇଉରୋପ କ୍ରମଶଃ ନିକଟତର ହେଉଛି । ସହସ୍ର ସଂଖ୍ୟାରେ ସୂର୍ଯ୍ୟ ଓ ବ୍ରହ୍ମାଣ୍ଡ ଆକାଶରେ ଘୁରି ବୁଲୁଛନ୍ତି । ତଥାପି ଲୋକମାନେ ପ୍ରକୃତିର ଏହି ପରିବର୍ତ୍ତନକୁ ଗ୍ରହଣ କରିପାରୁ ନାହାଁନ୍ତି ଓ ସେଥିପାଇଁ ଦୁଃଖ ପାଉଛନ୍ତି ।

## ଦ୍ୱିତୀୟ ଆର୍ଯ୍ୟସତ୍ୟ

କାମନା ହିଁ ଦୁଃଖର କାରଣ ।

ଯେଉଁମାନେ ପ୍ରକୃତିକୁ ବୁଝିଛନ୍ତି, ଯେଉଁମାନେ ସିଦ୍ଧ ଯୋଗୀ ସେମାନଙ୍କର ଦୁଃଖ ନାହିଁ । କାରଣ ସେମାନେ ପ୍ରକୃତିର ସତ୍ୟକୁ ଉପଲବ୍ଧି କରିଛନ୍ତି ଓ ପ୍ରକୃତି ଯେ ସଦା ସର୍ବଦା ପରିବର୍ତ୍ତନଶୀଳ ସେ କଥା ମଧ୍ୟ ହୃଦୟଙ୍ଗମ କରିଛନ୍ତି ।

ନିଜର ସାମର୍ଥ୍ୟରୁ ଏବଂ ଆୟରୁ ଅଧିକ କାମନା କଲେ ତାହା ପୂରଣ ହେବା ସମ୍ଭବ ନୁହେଁ । ତେଣୁ ଦୁଃଖ ଅବଶ୍ୟମ୍ଭାବୀ । ତେଣୁ ନିଜର କାମନା ନିଜ ଶକ୍ତି ଓ ଆୟ ମଧ୍ୟରେ ସିମିତ ରଖିଲେ ଦୁଃଖ ରହିବ ନାହିଁ ।

ଜୀବନ ଧାରଣ ନିମନ୍ତେ ଉପଯୋଗୀ ବସ୍ତୁର କାମନା କରିବା କ'ଣ ଦୁଃଖର କାରଣ ? ସାଧାରଣ ଭାବରେ ନିଜର ଜୀବିକାପାଇଁ କାମନା କରିବା ଆବଶ୍ୟକ କିନ୍ତୁ ଅଯୌକ୍ତିକ କାମନା ଦୁଃଖର କାରଣ ଓ ତେଣୁ ଏହା ବର୍ଜନୀୟ । ତେଣୁ ବୁଦ୍ଧ ସର୍ବଦା ଉପଦେଶ ଦେଉଥିଲେ ନିଜର କାମନା ସୀମିତ ହେବା ବାଞ୍ଛନୀୟ ।

ବୁଦ୍ଧଙ୍କ ମତରେ ଏହି ସଂସାର କାମନାର ବହ୍ନିରେ ଜଳୁଛି । କାମନାର ଜ୍ୱାଳା ଉପଶମ ହେଲେ ସବୁ ଶାନ୍ତ । ସ୍ତ୍ରୀଲୋକଙ୍କ ଉପରେ ପାଶବିକ ଅତ୍ୟାଚାର ଅତ୍ୟଧିକ ଅଯୌକ୍ତିକ କାମନାର ପରିଣାମ, କଳାବଜାରୀ, ମାତ୍ରାଧିକ ଲୋଭ କ୍ରୋଧ ହିଂସା ମଧ୍ୟ କାମନାର ଜ୍ୱଳନ୍ତ ଉଦାହାରଣ ।

## ତୃତୀୟ ଆର୍ଯ୍ୟସତ୍ୟ

କାମନାର ବିନାଶରେ ଦୁଃଖର ବିନାଶ ହୁଏ ।

ମନେକରାଯାଉ ମନୁଷ୍ୟର କାମନା ୮୦ କିନ୍ତୁ ସେ ୫୦ ପ୍ରତିଶତ ଫଳବତୀ ହେଉଛି; ତେଣୁ ତା'ର ୮୦ - ୫୦ = ୩୦ କାମନା ଅପୂର୍ଣ୍ଣ ରହିଛି, ତେଣୁ ୩୦

ଭାଗରେ କାଳାତିପାତ କରୁଛି। କାମନାକୁ ୮୦ ରୁ ୫୦ କମାଇ ପାରନ୍ତା ତେବେ ୫୦-୫୦ = ୦ କାମନା ରହନ୍ତା। ସେହିପରି ନିଜର ପ୍ରଚେଷ୍ଟାକୁ ୫୦ ଭାଗରୁ ୮୦ ଭାଗ କରିପାରିଲେ, ସମସ୍ତ କାମନା ୮୦ରୁ ୮୦ ଭାଗ ପୂରଣ ହୋଇପାରନ୍ତା।

ଜଣେ କମ୍ପ୍ୟୁଟର ବୈଜ୍ଞାନିକ ଓ ବ୍ୟବସାୟୀ ବିଲ୍ ଗେଟସ୍‌ଙ୍କ ପରାମର୍ଶ ହେଉଛି:

"Under promise and over deliver"

ପ୍ରତିଜ୍ଞା କମ୍ କର, ବେଶୀ ଫଳପ୍ରଦ ହୁଅ।

ବୁଦ୍ଧ ବାରମ୍ବାର କହୁଥିଲେ କଠିନ ପରିଶ୍ରମ କର ଯାହା "ବହୁଜନ ହିତାୟ"।

## ଚତୁର୍ଥ ଆର୍ଯ୍ୟସତ୍ୟ

କାମନାକୁ ବିନାଶ କରିବା ପ୍ରକୃତରେ ସହଜସାଧ ନୁହେଁ। ତେଣୁ ଏହାର ନିରାକରଣ ନିମନ୍ତେ ବୁଦ୍ଧ ଅଷ୍ଟାଙ୍ଗିକ ମାର୍ଗ ନିରୂପଣ କରିଛନ୍ତି।

୧) ସମ୍ୟକ୍ ଦୃଷ୍ଟି

୨) ସମ୍ୟକ୍ ସଂକଳ୍ପ

୩) ସମ୍ୟକ୍ ବାକ୍

୪) ସମ୍ୟକ୍ କର୍ମ

୫) ସମ୍ୟକ୍ ଜୀବିକା

୬) ସମ୍ୟକ୍ ଚେଷ୍ଟା

୭) ସମ୍ୟକ୍ ସ୍ମୃତି

୮) ସମ୍ୟକ୍ ଧ୍ୟାନ ବା ସମାଧି ବା ଯୋଗ ବା ନିର୍ବାଣ

ଉପରୋକ୍ତ ଅଷ୍ଟାଙ୍ଗିକ ମାର୍ଗଗୁଡ଼ିକୁ ଏକ ବୃତ୍ତୀୟ ଢ଼ାଞ୍ଚାରେ ପ୍ରକାଶ କରାଯାଏ। ପାର୍ଶ୍ୱବର୍ତ୍ତୀ ଚିତ୍ରରେ ପ୍ରଦତ୍ତ।



ଏହି ବୃତ୍ତିୟ ଚିତ୍ରଟି ଧର୍ମଚକ୍ର ବା ଅଖଣ୍ଡ ମଣ୍ଡଳାକାର ନାମରେ ନାମିତ। ଚକ୍ର ଯେପରି ଅନାଦି ଅନନ୍ତ, ଅର୍ଥାତ୍ ଆଦି ନାହିଁକି ଅନ୍ତ ନାହିଁ, ଠିକ୍ ସେହିପରି ଏହି ବୃତ୍ତିୟ ଚିତ୍ରର ଆଦି ନାହିଁ କି ଅନ୍ତ ନାହିଁ।

ମଣ୍ଡଳର ନିର୍ଦ୍ଦେଶ ଅନୁସାରେ ମନୁଷ୍ୟ ଶରୀରର ପ୍ରତ୍ୟେକ ଅଙ୍ଗ ସ୍ୱ ସ୍ୱ କାର୍ଯ୍ୟ ସଂପାଦନ କରେ, ଠିକ୍ ସେହିପରି ଅଷ୍ଟାଙ୍ଗିକ ମାର୍ଗ ଆରମ୍ଭ ହୁଏ ସମ୍ୟକ୍ ଦୃଷ୍ଟିରୁ। ସମ୍ୟକ୍ ଦୃଷ୍ଟିର ଅର୍ଥ ମସ୍ତିଷ୍କ ବା ବୁଦ୍ଧିର ସୁପରିଚାଳନା କରି ଅତି ଗଭୀର ଭାବରେ ହୃଦୟଙ୍ଗମ କରିବା। ତେଣୁ ସମ୍ୟକ୍ ଦୃଷ୍ଟି ହେଉଛି ଅଷ୍ଟାଙ୍ଗିକ ମାର୍ଗମାନଙ୍କ ମଧ୍ୟରେ ସବୁଠାରୁ ମୂଲ୍ୟବାନ ଓ ଶ୍ରେଷ୍ଠ ମାର୍ଗ। ଅନ୍ୟ ସମସ୍ତ ପଥ ମସ୍ତିଷ୍କର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟରତ।

କାମନାକୁ ବିନାଶ କରିବା ନିମନ୍ତେ ପ୍ରଚେଷ୍ଟା ସମ୍ୟକ୍ ଦୃଷ୍ଟିକୋଣରୁ ଆରମ୍ଭ ହେଲେ ମଧ୍ୟ ପୁନରାୟ ସମ୍ୟକ୍ ଦୃଷ୍ଟିକୁ ଫେରି ଆସିବାକୁ ହୁଏ। ସେଥିପାଇଁ ଅଷ୍ଟାଙ୍ଗିକମାନଙ୍କୁ ବୃତ୍ତିୟ ଚିତ୍ରରେ ପ୍ରକାଶ କରାଯାଇଛି।

ସମ୍ୟକ୍ ଦୃଷ୍ଟି ପରେ ସମ୍ୟକ୍ ସଂକଳ୍ପ। ପରିସ୍ଥିତିର ସମିକ୍ଷାପରେ ମସ୍ତିଷ୍କ ଠିକ୍ କରେ କ'ଣ କରିବାକୁ ହେବ। କିନ୍ତୁ ସେ କାର୍ଯ୍ୟଟି କରିବାକୁ ମନ ଭିତରେ ଦୃଢ଼ ସଂକଳ୍ପ ରହିବା ଏକାନ୍ତ ଆବଶ୍ୟକ। ନ ହେଲେ କୌଣସି କାର୍ଯ୍ୟ ଆରମ୍ଭ କରିହୁଏ ନାହିଁ।

ସମ୍ୟକ ଦୃଷ୍ଟି ଓ ସମ୍ୟକ ସଂକଳ୍ପ ପରେ ଅନ୍ୟ ସମସ୍ତ ଛଅଗୋଟି ପଥକୁ ଯେକୌଣସି କ୍ରମରେ କରିବାକୁ ହୋଇଥାଏ।

ପ୍ରଥମ ଚେଷ୍ଟାରେ ଯେତିକି ହେଲା ତା'ପରେ ଦ୍ୱିତୀୟ ଚେଷ୍ଟା ବା ବାରମ୍ବାର ଚେଷ୍ଟା କରିବାକୁ ହୁଏ ଓ ମଧ୍ୟମ ମାର୍ଗରେ ତାହା ଶାଣିତ ହୋଇ ଫଳପ୍ରଦ ହୁଏ।

ସମ୍ୟକ୍ ବାକ୍‌ରେ ସଂଜମଯୁକ୍ତ କଥା କହିବାକୁ ହୁଏ। ନରମ, ସୁମଧୁର ବାକ୍ୟ ଯାହାକି ଶ୍ରୁତି ମଧୁର ହୁଏ। କ୍ରୁର ଓ ଅଶ୍ଳିଳ ବାକ୍ୟ ନିଷେଧ।

ସମ୍ୟକ୍ କର୍ମରେ କେବଳ ସେହି କର୍ମ କରିବା ବିଧେୟ ଯାହା "ବହୁଜନ ହିତାୟ"।

ସମ୍ୟକ୍ ଜୀବିକାରେ ଜଣେ ନିଜର ଭରଣ ପୋଷଣ ନିମନ୍ତେ ସତ୍ ଉପାୟରେ ଧନ ଅର୍ଜନ କରିବା ବିଧେୟ। ଚୌର୍ଯ୍ୟବୃତ୍ତି ବା ଅସତ୍ ମାର୍ଗରେ ଧନ ଉପାର୍ଜନ ଆଦୌ ଗ୍ରହଣୀୟ ନୁହେଁ।

ସମ୍ୟକ୍ ଚେଷ୍ଟା ଅନୁସାରେ ମନୁଷ୍ୟ ବିବେକ ଓ ସଂକଳ୍ପ ଆଧାରରେ ନିଜର ଲକ୍ଷ୍ୟସ୍ଥଳରେ ଉପନୀତ ହେବା ଆବଶ୍ୟକ। ସେଥିପାଇଁ ବାରମ୍ବାର ଚେଷ୍ଟା କରିବା ଦରକାର ଓ ବାରମ୍ବାର ସମ୍ୟକ୍ ଦୃଷ୍ଟି ଓ ସମ୍ୟକ୍ ସଂକଳ୍ପକୁ ଫେରିବା ଆବଶ୍ୟକ।

ଏହା ଫଳରେ ମନୁଷ୍ୟ ନିଶ୍ଚୟ କାର୍ଯ୍ୟରେ ଫଳପ୍ରଦ ହେବ।

ସମ୍ୟକ୍ ସ୍ମୃତି ଅନୁସାରେ ମନୁଷ୍ୟ ସର୍ବଦା ନିଜର ସଂକଳ୍ପକୁ ସ୍ମରଣ ରଖିବା ଉଚିତ୍।

ସମ୍ୟକ୍ ଧ୍ୟାନ ବା ଯୋଗ ହେଉଛି ଶେଷ ପାହାଚ ଯାହାକୁ ସାଧନା କରି ମନୁଷ୍ୟ ସ୍ଥିତପଜ୍ଞ ଓ ଯୋଗୀ ହୋଇପାରେ, ବୁଦ୍ଧଙ୍କ ପରି ଜ୍ଞାନଦୀପ୍ତ ଓ ନିର୍ବାଣ ପାଇପାରେ।

ଏହି ଅଷ୍ଟାଙ୍ଗମାର୍ଗକୁ ବୃତ୍ତୀୟ ପ୍ରଣାଳୀରେ ପ୍ରକାଶ କରିବାର ଅର୍ଥ ହେଉଛି କୌଣସି ଚେଷ୍ଟା ସଂପୂର୍ଣ୍ଣ ନୁହେଁ। ବାରମ୍ବାର ଏହି ପନ୍ଥାମାନଙ୍କୁ ଗ୍ରହଣ କରିବାକୁ ହୁଏ। ପ୍ରଥମ ଦୁଇଟି ପନ୍ଥାକୁ ଅଧିକ ଗୁରୁତ୍ୱ ଦେଇ ଅନ୍ୟ ଛଅଗୋଟି ପନ୍ଥାକୁ ଯେକୌଣସି କ୍ରମରେ ଆରମ୍ଭ କରାଯାଇପାରେ।

ଏକ ଉଦାହରଣ ନିଆଯାଉ। ହିମାଳୟର ଗିରିଶୃଙ୍ଗ ଏଭେରେଷ୍ଟ ଆରୋହଣ କରିବାପାଇଁ ପ୍ରଥମେ ଆବଶ୍ୟକ ଏଭେରେଷ୍ଟ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ। ଏହାର ଉଚ୍ଚତା କେତେ ? ଏହାର ଉତ୍ତାପ କେତେ ? କି ପ୍ରକାର ଶୀତବସ୍ତ୍ର ନେବାକୁ ହେବ; କି ପ୍ରକାର ଖାଦ୍ୟ ପଦାର୍ଥ ଓ ଔଷଧ ନେବାକୁ ହେବ ? କେଉଁ ପ୍ରକାର ଜୋତା ଓ ଅନ୍ୟାନ୍ୟ ଆରୋହଣ ପାଇଁ ସରଞ୍ଜାମ ନେବା ଆବଶ୍ୟକ ? ଅମ୍ଳଜାନ ନେବା ଦରକାର କି ନାହିଁ ? ଏ ବିଷୟରେ ସମ୍ୟକ୍ ଦୃଷ୍ଟି ଆବଶ୍ୟକ।

ଏହାପରେ ମନ ମଧ୍ୟରେ ସମ୍ୟକ୍ ସଂକଳ୍ପ କରିବାକୁ ହେବ ଯେ ଏ ଦୁର୍ଗମ ପଥ ଅତିକ୍ରମ କରି ଏଭେରେଷ୍ଟ ଉପରକୁ ଉଠିବା ଉଚିତ୍ ହେବ କି ନାହିଁ। ଯଦି ହଁ, ତେବେ ଦୃଢ଼ ସଂକଳ୍ପ ଆବଶ୍ୟକ। ନ ହେଲେ ପଦେ ଆଗକୁ ଯିବାକୁ ପଡ଼ିବ ନାହିଁ।

ତତ୍ପରେ ଗିରିଶୃଙ୍ଗକୁ ଲକ୍ଷ୍ୟ କରି ଧିରେ ଧିରେ ପର୍ବତର ଶୃଙ୍ଗ ଦିଗକୁ ଅଗ୍ରସର ହେବାକୁ ହେବ ଏକାଗ୍ର ଚିତ୍ତରେ। ତା'ପରେ ଜଣେ ଯଶସ୍ୱୀ ହୋଇପାରିବ।

ଅଷ୍ଟାଙ୍ଗିକ ମାର୍ଗ ହେଉଛି ସତ୍ୟ ନିରୂପଣ କରିବାର ଏକ ମଧ୍ୟମ ମାର୍ଗ। ଏହା ଚରମ ମାର୍ଗ ନୁହେଁ। ଦ୍ରୁତଗତିରେ ଯିବାର ଆବଶ୍ୟକତା ନାହିଁ। ଗିରିଶୃଙ୍ଗକୁ ଲକ୍ଷ୍ୟ କରି, ପଥରେ ଖାଦ୍ୟ ଓ ବିଶ୍ରାମ ନେଇ ଅଗ୍ରସର ହେବାକୁ ହେବ।

ବୌଦ୍ଧଧର୍ମ ଗ୍ରହଣ କରିବା ସମୟରେ ଶିଷ୍ୟମାନେ ପ୍ରଥମେ "ବୁଦ୍ଧଂ ଶରଣଂ ଗଚ୍ଛାମି" ଉଚ୍ଚାରଣ କରନ୍ତି ।

କାରଣ ବୁଦ୍ଧଙ୍କର ଉପରୋକ୍ତ ବର୍ଣ୍ଣିତ ଚାରୋଟି ଆର୍ଯ୍ୟସତ୍ୟ ମନୁଷ୍ୟର ନିର୍ବାଣ ବା ମୋକ୍ଷପ୍ରାପ୍ତିର ଏକ ବଳିଷ୍ଠ ଅଥଚ ମଧ୍ୟମ ପନ୍ଥା; ଚରମପନ୍ଥା ନୁହେଁ।

ଧର୍ମ ସଂସ୍ଥାପନ ପାଇଁ ଯୁଗେ ଯୁଗେ ଅବତାରମାନେ ଜନ୍ମ ନିଅନ୍ତି। ଶ୍ରୀକୃଷ୍ଣଙ୍କ ପରେ ଯୋଗ ଜନ୍ମା ହେଲେ ବୁଦ୍ଧ। ସେହି ସମୟରେ ହିନ୍ଦୁଧର୍ମ କଳୁଷିତ ହୋଇଯାଇଥିଲା। ଅତ୍ୟଧିକ ପୂଜା, ଯଜ୍ଞ, ପଶୁବଳୀ, ଜାତି ପ୍ରଥା, ଅସ୍ପୃଶ୍ୟତା ପ୍ରଭୃତି କୁସଂସ୍କାର ହିନ୍ଦୁଧର୍ମକୁ କଳୁଷିତ କରିଥିଲା। ବୁଦ୍ଧ, ଜାତି ଧର୍ମ ନିର୍ବିଶେଷରେ ବୌଦ୍ଧଧର୍ମ ଶିକ୍ଷା ଦେଉଥିଲେ।

"ଧର୍ମଂ ଶରଣଂ ଗଚ୍ଛାମି"

"ଈଶ୍ୱର ଅଛନ୍ତି କି ନାହିଁ ?"

ଏହା ଏକ ଦୁଇ ଭିତ୍ତିକ ଦାର୍ଶନିକ ପ୍ରଶ୍ନ। ଏହି ପ୍ରକାର ପ୍ରଶ୍ନରେ ବୁଦ୍ଧ ନୀରବ ରହୁଥିଲେ ଏବଂ କହୁଥିଲେ : ଏହି ପ୍ରଶ୍ନର ଉତ୍ତରରେ ମନୁଷ୍ୟର ଦୁଃଖ କ'ଣ ଲାଘବ ହୋଇପାରିବ ?

ଏଥିପାଇଁ କଠୋରପନ୍ଥୀ ହିନ୍ଦୁମାନେ ତାଙ୍କୁ ଘୋର ବିରୋଧ କରୁଥିଲେ ଏବଂ ଭାବୁଥିଲେ ଯେ ବୁଦ୍ଧ ବେଦ ବିରୋଧି, ହିନ୍ଦୁଧର୍ମ ବିରୋଧି। ଏହା ଭୁଲ ଧାରଣା। କୌଣସି ଯୋଗୀ ଈଶ୍ୱର ଅଛନ୍ତି କି ନାହିଁ ଏ ବିଷୟରେ ଗବେଷଣା କରନ୍ତି ନାହିଁ। ପ୍ରକୃତି ହିଁ ତାଙ୍କ ପାଇଁ ଈଶ୍ୱର ଏବଂ ଏହି ଈଶ୍ୱର କେବେ ହେଲେ ଯଜ୍ଞ କର୍ମରେ ସନ୍ତୁଷ୍ଟ ହୁଅନ୍ତି ନାହିଁ।

ବୁଦ୍ଧଙ୍କ ନୀତି ମଧ୍ୟମ ପନ୍ଥା। ତେଣୁ ସେ କୌଣସି ଦ୍ୱିପାକ୍ଷିକ ପ୍ରଶ୍ନର ଉତ୍ତର ଦିଅନ୍ତି ନାହିଁ। ନୀରବ ରୁହନ୍ତି। ତାଙ୍କର ଏହି ନୀରବତା ତାଙ୍କୁ ହିନ୍ଦୁଧର୍ମ ବିରୋଧି ବୋଲି ପ୍ରଚାର କରାଯାଏ।

ଏକ ଉଦାହରଣ ମଧ୍ୟରେ ଦ୍ୱିପାଖିକ ଉକ୍ତିର ସଂକୀର୍ଣ୍ଣତା ବିଚାର କରାଯାଇପାରେ।

ଏକ ଦ୍ୱିପାକ୍ଷିକ ପ୍ରଶ୍ନ:

"ତୁମେ ତୁମର ମାତାକୁ ପ୍ରହାର କରିବା ଅଭ୍ୟାସ ପରିତ୍ୟାଗ କଲଣି କି ନାହିଁ ?"

ଏ ଗୋଟିଏ ଦ୍ୱିପାକ୍ଷିକ ପ୍ରଶ୍ନ। ଏହାର ଉତ୍ତର "ହଁ" କିମ୍ବା "ନାହିଁ"ରେ ଦିଆଯାଏ; ଅନ୍ୟ ମଧ୍ୟବର୍ତ୍ତୀ ଉତ୍ତର ନେବାର ସ୍ୱାଧିନତା ନାହିଁ।

ଯଦି ଉତ୍ତରଟି ହେଲା "ହଁ" ତେବେ ପ୍ରମାଣିତ ଯେ ସେ ପୂର୍ବରୁ ତାଙ୍କର ମାତାଙ୍କୁ ପ୍ରହାର କରୁଥିଲା। ଯଦି ଉତ୍ତର "ନା", ତେବେ ପ୍ରମାଣିତ ଯେ ଏବେ ମଧ୍ୟ ତାଙ୍କ ମାତାଙ୍କୁ ପ୍ରହାର କରୁଛନ୍ତି।

ଏଇଥିରୁ ଜଣେ ଅନୁଭବ କରିପାରେ ଯେ ଦ୍ୱିପାକ୍ଷିକ ପ୍ରଶ୍ନ କାହିଁକି ଅବାସ୍ତବ ଓ କାହିଁକି ବୁଦ୍ଧ ଏ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ନୀରବ ରହୁଥିଲେ। ବୁଦ୍ଧ ଜଣେ ବହୁତର୍କବାଦୀ, ଦୁଇତର୍କବାଦୀ ନୁହଁନ୍ତି। କୌଣସି ପ୍ରଶ୍ନର ଉତ୍ତର ପାଇଁ ଅସଂଖ୍ୟ ପ୍ରକାର ସମ୍ଭାବନା ରହିଛି। ଏହା ମଧ୍ୟମ ମାର୍ଗର କରାମତି ଓ ପରାକାଷ୍ଠା।

ବୁଦ୍ଧଙ୍କର ଜ୍ଞାନୋଦୟ ହେଲାପରେ ସେ ପ୍ରଥମେ ପାଞ୍ଚଜଣ ସନ୍ୟାସୀଙ୍କୁ ନେଇ ଏକ ସଂଘ ସୃଷ୍ଟି କଲେ ଓ ସେମାନଙ୍କୁ ଚାରୋଟି ଆର୍ଯ୍ୟସତ୍ୟ ଉପରେ ପ୍ରବଚନ ଦେଇଥିଲେ। ଶିଷ୍ୟମାନେ ହେଲେ ବୁଦ୍ଧଙ୍କର ପୂର୍ବ ସାଥୀ ଓ ସେମାନେ ହେଲେ:

କୋନଦାବୀ, ମହାନମୋ, ଭାଚିଷ୍ଣା, ଭାପା, ଆଶାଜୀ

ବୁଦ୍ଧ ଏମାନଙ୍କୁ ମୃଗବନରେ ଧର୍ମଶିକ୍ଷା ଦେଲେ। ଏହି ସ୍ଥାନଟି ବର୍ତ୍ତମାନ ସାରନାଥ ନାମରେ ନାମିତ।

ସଂଘରେ ରହି ତପସ୍ୟା କଲେ ପରସ୍ପରର ସାହାଯ୍ୟ ଓ ସହାନୁଭୂତିରେ ଶିକ୍ଷା ଗ୍ରହଣ ବିଶେଷ ସହଜ ଓ ଫଳପ୍ରଦ ହୁଏ। ଗୋଟିଏ ଛାତ୍ର ଘରେ ରହି ପାଠ ପଢ଼ିବା ଅପେକ୍ଷା ସ୍କୁଲରେ ପାଠ ପଢ଼ିବା ଉଚିତ୍।

କୁହାଯାଏ ଦୁଇ ଛାତ୍ର ପୃଥକ ଭାବରେ ଅଧ୍ୟୟନ କଲେ ଯଦି ସେମାନଙ୍କର ଫଳାଫଳ ଯଥାକ୍ରମେ ୫ ଓ ୭ ହୁଏ, ତେବେ ସେମାନଙ୍କର ମିଳିତ ଫଳ ହୁଏ ଯୋଗାତ୍ମକ, ଅର୍ଥାତ୍ ୫+୭= ୧୨। କିନ୍ତୁ ସେମାନେ ଯଦି ମିଳିତ ଭାବରେ ଅଧ୍ୟୟନ କରନ୍ତି ତାହାହେଲେ ଫଳ ଗୁଣନାତ୍ମକ ହୁଏ, ଅର୍ଥାତ୍ ୫×୭ = ୩୫। ମହାତ୍ମାଗାନ୍ଧୀ ସେଥିପାଇଁ ସମୂହ ପ୍ରାର୍ଥନା ଉପରେ ଗୁରୁତ୍ୱ ଦେଉଥିଲେ।

ସହଯୋଗର ହାତ ବଢ଼ାଇଲେ କିପରି ଅସମ୍ଭବ କାର୍ଯ୍ୟ ସମ୍ଭବ ହୁଏ ତା'ର ଏକ ବଳିଷ୍ଠ ପ୍ରମାଣ ହେଉଛି ନିମ୍ନ ଉଦାହରଣ।

ଅତ୍ୟଧିକ ଶୀତରୁ ଉଦ୍ଧାର ପାଇବାକୁ ସାଇବେରିଆରୁ ଦଳ ଦଳ ପକ୍ଷୀ ଶୀତଦିନେ ଆସି ଚିଲିକା ହ୍ରଦରେ ଆଶ୍ରୟ ନିଅନ୍ତି। ସେମାନେ ସାଇବେରିଆରୁ ହିମାଳୟ ଉପରଦେଇ ବାଟରେ କୌଣସି ସ୍ଥାନରେ ବିଶ୍ରାମ ନ ନେଇ ଏତେବାଟ କିପରି ଆସି ପାରନ୍ତି ତାହା ଜାଣି ଆଶ୍ଚର୍ଯ୍ୟ ଲାଗେ। କିନ୍ତୁ ପ୍ରକୃତ କାରଣ ହେଉଛି ସେମାନଙ୍କର ମଧ୍ୟରେ ସହଯୋଗର ହାତ।

ଦଳେ ପକ୍ଷୀଙ୍କର ଉଡ଼ାନର ଶୈଳୀ ହେଉଛି Λ ଆକାରର। ପ୍ରଥମ ଧାଡ଼ିରେ ଏକ ପକ୍ଷୀ। ଏ ହେଉଛି ଦିଗ ନିର୍ଦ୍ଧାରକ ଓ ଦଳପତି। ଦ୍ୱିତୀୟ ଧାଡ଼ିରେ ଦୁଇଟି, ତୃତୀୟ ଧାଡ଼ିରେ ତିନୋଟି। ଏହିପରି ପଛକୁ ପଛ ଧାଡ଼ିମାନ ଥାଏ। ଦଳପତି ଚଢ଼େଇଟି ଉଡ଼ି ଉଡ଼ି ଥକା ହୋଇଗଲେ ସେ ପଛକୁ ଉଡ଼ି ଆସେ ଓ ପଛରୁ ଏକ ପକ୍ଷୀ ଯାଇ ଦଳପତି ଆସନ ଗ୍ରହଣ କରେ। ପଛ ଧାଡ଼ିର ପକ୍ଷୀମାନେ ନିଜ ନିଜର ପକ୍ଷୀର ଉଡ଼ାନ ଫଳରେ ପବନରେ ବେଗ ସୃଷ୍ଟି ହୋଇ ଅନ୍ୟ ପକ୍ଷୀର ବେଗକୁ ସାହାଯ୍ୟ କରେ। ଫଳରେ ପଛ ଧାଡ଼ିମାନଙ୍କର କୌଣସି ପକ୍ଷୀ ପୂର୍ଣ୍ଣ ଭାବରେ ନିଜର ଶକ୍ତି ଖର୍ଚ୍ଚ କରିପାରେ ନାହିଁ। ଏହି ଶକ୍ତି ସଂଚୟ ଦ୍ୱାରା ପକ୍ଷୀମାନେ ବିନା ବିଶ୍ରାମରେ ସାଇବେରିଆରୁ ଚିଲିକା ହ୍ରଦକୁ ଆସିପାରନ୍ତି।

ଏହିସବୁ କାରଣରୁ ସଂଘୀୟ ଜୀବନ ବହୁତ ଗୁରୁତ୍ୱପୂର୍ଣ୍ଣ। ସେଥିପାଇଁ ବୁଦ୍ଧ ଶିଷ୍ୟମାନଙ୍କୁ ସଂଘୀୟ ଜୀବନ ବିତାଇବାକୁ ଉପଦେଶ ଦେଉଥିଲେ। ଏହା ଦ୍ୱାରା ବୁଦ୍ଧଙ୍କ ପ୍ରବଚନ ଶୁଣିଲାପରେ ଶିଷ୍ୟମାନେ ପରସ୍ପର ମଧ୍ୟରେ ଆଲୋଚନା କରି ସନ୍ଦେହମୁକ୍ତ ହେଉଥିଲେ। ସେଥିପାଇଁ ସଂଘ ବୌଦ୍ଧଭୀକ୍ଷୁମାନଙ୍କ ପାଇଁ ଅତ୍ୟନ୍ତ ଆବଶ୍ୟକ।

ବୌଦ୍ଧଧର୍ମ ଗ୍ରହଣ କଲାବେଳେ ଉଚ୍ଚାରଣ କରିବାକୁ ହୁଏ:

"ସଂଘମ୍ ଶରଣମ୍ ଗଚ୍ଛାମି"

ବୁଦ୍ଧ ୪୫ ବର୍ଷକାଳ ପ୍ରବଚନ ଦେବାପରେ ବୈଶାଖ ପୂର୍ଣ୍ଣିମାରେ ଦେହ ତ୍ୟାଗ କଲେ।

ବୁଦ୍ଧଙ୍କ ଜନ୍ମ, ଜ୍ଞାନୋଦୟ ଓ ମହାପ୍ରୟାଣ ବୈଶାଖ ପୂର୍ଣ୍ଣିମାରେ ସଂଗଠିତ ହୋଇଥିବାରୁ ଏହି ପୂର୍ଣ୍ଣିମାକୁ ବୁଦ୍ଧ ପୂର୍ଣ୍ଣିମା କୁହାଯାଏ।

ପ୍ରକାଶଥାଉକି ସିଦ୍ଧାର୍ଥ ଯେତେବେଳେ ତପସ୍ୟା କରିବାକୁ ଗୃହତ୍ୟାଗ କଲେ ତାହାଥିଲା ମଧ୍ୟ ଏକ ପୂର୍ଣ୍ଣମୀର ରାତ୍ରି (କିନ୍ତୁ ବୈଶାଖ ପୂର୍ଣ୍ଣିମା ନୁହେଁ) ଏହା ରହସ୍ୟମୟ ଲାଗେ ଯେ କାହିଁକି ଓ କିପରି ବୁଦ୍ଧଙ୍କ ଜୀବନରେ ପୂର୍ଣ୍ଣମା ଏତେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା।

ବରୀ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀ ଗୋପବନ୍ଧୁ ଚୌଧୁରୀ ଓ ସନ୍ଥ ଭୀମଭୋଇ ମଧ୍ୟ ଜନ୍ମ ହୋଇଥିଲେ ବୁଦ୍ଧ ପୂର୍ଣ୍ଣିମାରେ ।

୮୦ ବର୍ଷ ବୟସରେ ବୁଦ୍ଧଙ୍କର ମହାପ୍ରୟାଣ ହୋଇଥିଲା।

ବୁଦ୍ଧ ପ୍ରାୟ ୪୫ ବର୍ଷକାଳ ପ୍ରବଚନ ଦେଇଥିଲେ; କିନ୍ତୁ କୌଣସି ପୁସ୍ତକ ରଚନା କରିନଥିଲେ। ତେଣୁ ସେ ପ୍ରବଚନଗୁଡ଼ିକୁ ଲିପିବଦ୍ଧ କରି ରଖିବାର ମୁଖ୍ୟ ଦାୟିତ୍ୱ ଥିଲା ତାଙ୍କର ଶିଷ୍ୟମାନଙ୍କ ଉପରେ। ସେଥିପାଇଁ ତିନୋଟି ସମ୍ମିଳନୀ ଆହୂତ ହୋଇଥିଲା।

ପ୍ରଥମ ସମ୍ମିଳନୀ ଆହୁତ ହେଲା ରାଜଗୃହରେ ଓ ଏଥିରେ ଅଧ୍ୟକ୍ଷତା କଲେ ବୌଦ୍ଧ ସନ୍ୟାସୀ ମହାକାଶ୍ୟପ। ସେ ଅଭିଧର୍ମ ପେଟିକା ପ୍ରସ୍ତୁତ କଲେ; ସନ୍ୟାସୀ ଉପାଳୀ, ବିନୟ ପେଟିକା ପ୍ରସ୍ତୁତ କଲେ; ଆଉ ସନ୍ୟାସୀ ଆବନ୍ଧ ପ୍ରସ୍ତୁତ କଲେ ସୂତ୍ର ପେଟିକା।

ଏହିପରି ଭାବରେ ପ୍ରଥମ ବୌଦ୍ଧ ସମ୍ମିଳନୀରେ ପ୍ରସ୍ତୁତ ହେଲା: ତ୍ରିପିଟକ। ଯେହେତୁ ଏହି ବୌଦ୍ଧ ସନ୍ୟାସୀମାନେ ବୁଦ୍ଧଙ୍କ ପ୍ରବଚନ ସହିତ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ, ଆଶା କରାଯାଏ ଯେ ତ୍ରିପିଟକ ଗ୍ରନ୍ଥମାନ ବୁଦ୍ଧଙ୍କ ପ୍ରବଚନର ସଠିକ୍ ସନ୍ଦେଶ ଦେଇଥିବ।

ଏହାର ଶହେ ବର୍ଷ ପରେ ଦ୍ୱିତୀୟ ବୌଦ୍ଧ ସମ୍ମିଳନୀ ସଂଗଠିତ ହେଲା। ଏହି ସମ୍ମିଳନୀରେ ତ୍ରିପିଟକେ ଗ୍ରନ୍ଥମାନଙ୍କ ଉପରେ ଆଲୋଚନା ହୋଇ ପରିମାର୍ଜିତ କରାଗଲା। ରାଜା କନିଷ୍କ ରାଜତ୍ୱ କାଳରେ କାଶ୍ମିରରେ ଏକ ବୌଦ୍ଧ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ୨୫୦୦ ଜଣ ବୌଦ୍ଧ ଭିକ୍ଷୁ ଯୋଗ ଦେଇଥିଲେ ଓ ବୁଦ୍ଧଙ୍କ ଦ୍ୱାରା ପ୍ରବଚନର ସଠିକତା ପ୍ରତିପାଦନ କରିଥିଲେ।

ତୃତୀୟ ବୁଦ୍ଧ ସମ୍ମିଳନୀ ଅନୁଷ୍ଠିତ ହେଲା ସମ୍ରାଟ ଅଶୋକଙ୍କ ରାଜତ୍ୱ କାଳରେ। ଅଶୋକଙ୍କ ରାଜତ୍ୱର ୧୭ ବର୍ଷ ପରେ ପାଟଳୀପୁତ୍ର (ଆଧୁନିକ ନାମ ପାଟନା)ରେ ଖ୍ରୀଷ୍ଟପୂର୍ବ ୨୫୦ ମସିହାରେ ପ୍ରାୟ ୧୦୦୦ ବୟସ୍କଙ୍କ ବୌଦ୍ଧ ପଣ୍ଡିତମାନଙ୍କ ଦ୍ୱାରା। ୯ ମାସଧରି ଏ ସମ୍ମିଳନୀ ଚାଲିଥିଲା ଓ ତ୍ରିପିଟକ ଶାସ୍ତ୍ରଗୁଡ଼ିକ ଉପରେ ଗୁରୁତର ଆଲୋଚନା ହୋଇଥିଲା। ଏହା ଖ୍ରୀଷ୍ଟପୂର୍ବ ୨୭ ମସିହାରେ ସିଂହଳୀୟ ରାଜା ଭାଟଗାମଣୀଙ୍କ ରାଜତ୍ୱ କାଳରେ ମୁଦ୍ରିତ ହେଲା।

ଏହାପରେ ଦାର୍ଶନିକ ନାଗାର୍ଜୁନ ବୁଦ୍ଧ ତତ୍ତ୍ୱ ଉପରେ ଗୁରୁତ୍ୱପୂର୍ଣ୍ଣ ତଥ୍ୟମାନ ଲିପିବଦ୍ଧ କଲେ। ବିଶେଷତଃ ବୁଦ୍ଧଙ୍କର ମଧ୍ୟମମାର୍ଗ ଉପରେ ନାଗାର୍ଜୁନଙ୍କ ବାଖ୍ୟା ବହୁ ପ୍ରଶଂସିତ।

ସମ୍ରାଟ ଅଶୋକ ଯେତେବେଳେ କଳିଙ୍ଗ ଅଭିଯାନ କଲେ ସେତେବେଳେ ଭୟଙ୍କର ଯୁଦ୍ଧ ହୋଇଥିଲା; ଏ ଯୁଦ୍ଧର ଭୟାବହତା ଓ ରକ୍ତପାତ ଲକ୍ଷ୍ୟକରି ସମ୍ରାଟ ଅଶୋକ, ଜୀବନରେ ଆଉ କଦାପି ଯୁଦ୍ଧ ନ କରିବାର ପ୍ରତିଜ୍ଞା କଲେ ଓ ବୌଦ୍ଧଧର୍ମ

ଗ୍ରହଣ କଲେ । ସେ ତାଙ୍କର ପୁତ୍ର ମହେନ୍ଦ୍ର ଓ କନ୍ୟା ସଙ୍ଘମିତ୍ରାଙ୍କୁ ବୌଦ୍ଧଧର୍ମ ପ୍ରଚାର କରିବାକୁ ସିଂହଳ ପଠାଇଥିଲେ । ବୁଦ୍ଧ ପ୍ରଥମେ ଚାରି ଆର୍ଯ୍ୟସତ୍ୟ ଓ ଧର୍ମଚକ୍ର ଉପରେ ସାରନାଥଠାରେ ପ୍ରବଚନ ଦେଇଥିବାରୁ, ଅଶୋକ ସେହି ସ୍ଥାନକୁ ସ୍ମରଣୀୟ କରାଇବା ନିମନ୍ତେ ସେହିଠାରେ ଏକ ସ୍ତମ୍ଭ ନିର୍ମାଣ କରାଇଥିଲେ ଓ ତାହା ବର୍ତ୍ତମାନ ଅଶୋକ ସ୍ତମ୍ଭ ନାମରେ ନାମିତ । ଏହି ସ୍ତମ୍ଭରେ ରହିଛି ଏସିଆ ମହାଦେଶର ଚାରୋଟି ସିଂହର ଛବି ଯାହା ଶକ୍ତି, ସାହସ, ସ୍ୱାଭିମାନ ଓ ଆତ୍ମ ବିଶ୍ୱାସର ପ୍ରତୀକ । ଏହି ଚାରି ପ୍ରକାର ଶକ୍ତିକୁ ଧାରଣ କରିଛି ବୁଦ୍ଧଙ୍କର ଧର୍ମ ଚକ୍ର । ଏହାର ତାତ୍ପର୍ଯ୍ୟ ହେଉଛି ଜଣେ ଧର୍ମ ଉପରେ ଦଣ୍ଡାୟମାନ ହେଲେ ତାହାର ଶକ୍ତି ଚାରିଗୁଣ ବୃଦ୍ଧି ପାଏ । ଧର୍ମ ଚକ୍ରର ବାଣୀ ହେଉଛି:

"ସତ୍ୟମେବ ଜୟତେ"

ଅଶୋକ ଚକ୍ରକୁ ସ୍ୱାଧୀନ ଭାରତର ଜାତୀୟ ପତାକାରେ ସ୍ଥାନିତ କରାଯାଇଛି । ଏହାଦ୍ୱାରା ଭାରତର ଐତିହ୍ୟ, ସଂସ୍କୃତି ଓ ବୁଦ୍ଧଙ୍କ ବାଣୀ ବିଶ୍ୱ ଦରବାରରେ ପ୍ରଚାର ଓ ପ୍ରସାର ଲାଭ କରିଛି ।



# ବିଶ୍ୱରୂପ ଦର୍ଶନ ଯୋଗ

## ୧. ପ୍ରାରମ୍ଭିକ ସୂଚନା

ମହାଭାରତ ଯୁଦ୍ଧର ପ୍ରାରମ୍ଭରେ ଆତ୍ମୀୟସ୍ୱଜନ, ବନ୍ଧୁ ପରିଜନମାନଙ୍କୁ ସମ୍ମୁଖରେ ଦେଖି ଅର୍ଜୁନଙ୍କ ମନ ମଧ୍ୟରେ ଭାବାନ୍ତର ସୃଷ୍ଟି ହେଲା । ବିଷାଦରେ ଭରିଗଲା ହୃଦୟ । ବିକଳତା ହେତୁ ଗାଣ୍ଡିବ ଧନୁକୁ ଉଠାଇବା ଅବସ୍ଥାରେ ସେ ନିଜକୁ ଶକ୍ତିହୀନ ମନେକଲେ; ପାର୍ଥଙ୍କର ଦୁର୍ବଳତାକୁ ଲକ୍ଷ୍ୟକରି ଏହାର ଦୂରିକରଣ ନିମନ୍ତେ ଶ୍ରୀକୃଷ୍ଣଙ୍କବାଣୀ ହିଁ ଭଗବତ୍ ଗୀତା ନାମରେ ପରିଚିତ । ଏହା ଶ୍ରୀକୃଷ୍ଣଙ୍କର ମୁଖ ନିସୃତ ବାଣୀ ଭାବରେ ବର୍ଣ୍ଣିତ ଏକ ସାମଗ୍ରିକ ଜୀବନ ଦର୍ଶନ ସମ୍ବଳିତ ଉପଦେଶ ବାଣୀ ।

ମହର୍ଷି ବ୍ୟାସଦେବ ମହାଭାରତ ଯୁଦ୍ଧକୁ ପ୍ରତ୍ୟକ୍ଷଭାବେ ଅବଲୋକନ କରି ତାହାର ଧାରା ବିବରଣୀ ସଂସ୍କୃତ ଭାଷାରେ ଲିପିବଦ୍ଧ କରିଛନ୍ତି । କୁହାଯାଏ ପ୍ରାଚୀନ ସନାତନ ଧର୍ମର ଦିଗ୍‌ଦର୍ଶକ ଜଟିଳ ଶ୍ରୁତି ସମୂହକୁ ମହର୍ଷି ବ୍ୟାସ ଚାରୋଟି ଭାଗରେ ଗଭୀର ଭାବରେ ବିଶ୍ଳେଷଣ କରି ଚାରୋଟି ବେଦରେ ସଜାଇ ରଖିଥିବାରୁ ସେ ବେଦବ୍ୟାସ ନାମରେ ଖ୍ୟାତ ।

ଭଗବତ ଗୀତା କେବଳ ଅର୍ଜୁନ ବା ଭାରତୀୟମାନଙ୍କ ପାଇଁ ନୁହେଁ; ଏହା ସମଗ୍ର ମାନବ ସମାଜ ପାଇଁ ଏକ କାଳଜୟୀ ଶାସ୍ତ୍ର । ଏହାର ସନ୍ଦେଶ କେବଳ ମହାଭାରତ ଯୁଦ୍ଧ ନିମନ୍ତେ ପ୍ରଜୁଯ୍ୟ ନୁହେଁ, ଏହା ସାମାଜିକ ଓ ଆଧ୍ୟାତ୍ମିକସ୍ତରରେ ଏକ ଯୁଗାନ୍ତକାରୀ ପରିପୂର୍ଣ୍ଣ ମାର୍ଗଦର୍ଶକ ଶାସ୍ତ୍ର। ଏହା ଯୁଗେ ଯୁଗେ ପ୍ରତ୍ୟେକ ମାନବ ତାହାର ଅନ୍ତଃଚେତନା ଓ ବହି ଚେତନାରେ ଅନେକ ଧର୍ମ ଶଙ୍କଟ, ଅନେକ ପ୍ରତିବନ୍ଧକ, ଅନେକ ପ୍ରଲୋଭନ, ଅନେକ ଦ୍ୱନ୍ଦ ଆଦିର ଜୀବନ ଯୁଦ୍ଧରେ ସମ୍ମୁଖୀନ ହେଲାବେଳେ ସେଥିରେ ମ୍ରିୟମାଣ ନ ହୋଇ ଆତ୍ମ ଦର୍ଶନର ଅନୁଭୂତି ନେଇ ଅଗ୍ରସର ହେବାପାଇଁ ଏହା ଏକ ସର୍ବକାଳୀନ ମାର୍ଗଦର୍ଶକ ।



ଶ୍ରୀକୃଷ୍ଣଙ୍କ ଯୋଗେଶ୍ୱର ରୂପ

ଭଗବତ ଗୀତାରେ ସର୍ବମୋଟରେ ଅଠରଟି ଅଧ୍ୟାୟ ଓ ସାତ ଶହଟି ଶ୍ଳୋକ ରହିଛି । ସେଥି ମଧ୍ୟରୁ ଶ୍ରୀକୃଷ୍ଣଙ୍କ ଦ୍ୱାରା ୫୭୪ ଶ୍ଳୋକ, ଅର୍ଜୁନଙ୍କ ଦ୍ୱାରା ୮୪ ଶ୍ଳୋକ, ସଞ୍ଜୟଙ୍କ ଦ୍ୱାରା ୪୧ ଶ୍ଳୋକ ଓ ଧୃତରାଷ୍ଟ୍ର କେବଳ ମାତ୍ର ଗୋଟିଏ (ପ୍ରଥମ ଶ୍ଳୋକ) ଶ୍ଳୋକ ଉଚ୍ଚାରଣ କରିଛନ୍ତି । ଭଗବତ୍ ଗୀତାରେ ଜ୍ଞାନ ବା ସାଂଖ୍ୟ ଯୋଗ, କର୍ମଯୋଗ, ଧ୍ୟାନ ଯୋଗ, ଭକ୍ତି ଯୋଗ, କ୍ରିୟା ବା ରାଜଯୋଗ ବିଷୟରେ ବିସ୍ତୃତ ବିବରଣୀ ରହିଛି । ସେଥିପାଇଁ ଶ୍ରୀକୃଷ୍ଣଙ୍କୁ ଯୋଗେଶ୍ୱର ବୋଲି କୁହାଯାଏ ।

ବିନ୍ଧ୍ୟ ଅଞ୍ଚଳରେ ଏକ କୁଟୀରରେ ଅବସ୍ଥାନ କରୁଥିଲେ ମୁନି ସନ୍ଦିପନୀ । ସମ୍ଭବତଃ ମୁନି ସନ୍ଦିପନୀଙ୍କ ଠାରୁ ଶ୍ରୀକୃଷ୍ଣ ବିଭିନ୍ନ ପ୍ରକାର ଯୋଗବିଦ୍ୟା ଶିକ୍ଷା କରିଥିଲେ ।

କିନ୍ତୁ କ୍ଷୋଭର ବିଷୟ ଏହି ଯେ ଏହି ଯୋଗବିଦ୍ୟା କାଳକ୍ରମେ କାଳର କରାଳ ଗର୍ଭରେ ଲୀନ ହୋଇଗଲା । ଅନେକ ବର୍ଷ ପରେ ବୁଦ୍ଧଦେବ (ଖ୍ରୀଷ୍ଟପୂର୍ବ ପାଞ୍ଚଶହ ଶତାବ୍ଦୀ) କ୍ରିୟାଯୋଗ ପରି ଏକ ବଳିଷ୍ଠ ଯୋଗର ମାର୍ଗ ଉଦ୍ଭାବନ କରିଥିଲେ, ଯାହାର ନାମ ବିପାସନା ଯୋଗବିଦ୍ୟା । ପରବର୍ତ୍ତୀ ସମୟରେ ଯୋଗୀ ପତଞ୍ଜଳୀ (ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀ) ଯୋଗ ବିଦ୍ୟାଗୁଡ଼ିକୁ ଅଧିକ ଶୃଙ୍ଖଳିତ ଓ ବିଜ୍ଞାନସମ୍ମତ କରି 'ଯୋଗସୂତ୍ର' ପୁସ୍ତକରେ ଲିପିବଦ୍ଧ କରିଥିଲେ ।

ଦ୍ରୌପଦୀଙ୍କୁ ପଣ ରଖି ଦ୍ୟୁତକ୍ରିଡ଼ାରେ ପାଣ୍ଡବମାନେ ପରାଜୟ ଲାଭ କରିଥିଲେ । ଦୁର୍ଯ୍ୟୋଧନର ଆଦେଶରେ ରାଜସଭାରେ ଦ୍ରୌପଦୀଙ୍କୁ ବିବସ୍ତ୍ର କରାଇବା ନିମନ୍ତେ ଦୁଃଶାସନ ଅନେକ ଚେଷ୍ଟା ଚଳାଇଲା । ରାଜସଭାରେ ଉପସ୍ଥିତ ରାଜା ଧୃତରାଷ୍ଟ୍ର, ପିତାମହ ଭୀଷ୍ମ, ଗୁରୁ ଦ୍ରୋଣାଚାର୍ଯ୍ୟ, ମନ୍ତ୍ରୀ ବିଦୁର ଓ ଅନେକ ଗୁରୁଜନ ସ୍ଥାନୀୟ ବ୍ୟକ୍ତିଙ୍କ ସମ୍ମୁଖରେ ଦ୍ରୌପଦୀଙ୍କର ବସ୍ତ୍ରହରଣ ଉପକ୍ରମରେ କାହାଠାରୁ ପ୍ରତିବାଦର ସ୍ୱର ଉତ୍ତୋଳନ ହେଲାନାହିଁ । ଶେଷରେ ସଖା ଶ୍ରୀକୃଷ୍ଣ ସଂପୂର୍ଣ୍ଣ ରୂପେ ସମର୍ପିତା ଦ୍ରୌପଦୀଙ୍କୁ କୋଟି ବସ୍ତ୍ର ଦାନ କରି ଲଜ୍ଜ୍ୟା ନିବାରଣ କରିଥିଲେ ।

ଏହା ଥିଲା ଏକ ଯୁଗାନ୍ତକାରୀ ଅଲୌକିକ ତାନ୍ତ୍ରିକ ଯୋଗବିଦ୍ୟାର ପ୍ରୟୋଗ । ଏହା ଦ୍ୱାରା ଦ୍ରୌପଦୀଙ୍କର ଯେ କେବଳ ଲଜ୍ଜ୍ୟା ନିବାରଣ ହେଲା, ତା' ନୁହେଁ, ଏହା ଥିଲା ଆର୍ଯ୍ୟବର୍ତ୍ତ ସମାଜର ଏକ କଳଙ୍କିତ ଅଧ୍ୟାୟରୁ ମୁକ୍ତି । ସେଦିନ ରାଜସଭାରେ ଦ୍ରୌପଦୀଙ୍କର ଉନ୍ମୁକ୍ତ କେଶ ଦୁଃଶାସନର ରକ୍ତରେ ବେଣୀବନ୍ଧନ କରିବାର ପ୍ରତିଜ୍ଞା କୌରବମାନଙ୍କୁ ଭୟଭୀତ କରାଇଥିଲା । ଏହା ପରେ ମହାଭାରତ ଯୁଦ୍ଧ ଥିଲା ଅବଶ୍ୟମ୍ଭାବି ।

ମହର୍ଷି ବେଦବ୍ୟାସ ମହାଭାରତ ଯୁଦ୍ଧରେ ବିଭିଷିକା ଦର୍ଶନ କରାଇବା ନିମନ୍ତେ ଜନ୍ମାନ୍ଧ ଧୃତରାଷ୍ଟ୍ର ଦିବ୍ୟଦୃଷ୍ଟି ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କଲେ । କିନ୍ତୁ ସେ ତାଙ୍କର ଅଙ୍ଗ ରକ୍ଷକ ସଞ୍ଜୟର ଦିବ୍ୟ ଦୃଷ୍ଟିରେ ଯୁଦ୍ଧର ଧାରା ବିବରଣୀ ଶୁଣିବାର ଇଚ୍ଛା ପ୍ରକଟ କଲେ । ତେଣୁ ମହର୍ଷି ବ୍ୟାସଦେବ ଧୃତରାଷ୍ଟ୍ରଙ୍କର ଏହି ମନୋକାମନା ପୂର୍ଣ୍ଣ କଲେ ।

ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ଦୁଇ ପକ୍ଷର ଯୋଦ୍ଧାମାନେ ଉପସ୍ଥିତ । ଯୁଦ୍ଧ ପାଇଁ ପ୍ରଥମେ ଶଙ୍ଖଧ୍ୱନୀ କଲେ ପିତାମହ ଭୀଷ୍ମ କୌରବମାନଙ୍କ ପକ୍ଷରୁ । ପାଣ୍ଡବମାନଙ୍କ ପକ୍ଷରୁ ଶଙ୍ଖଧ୍ୱନୀ କଲେ ଶ୍ରୀକୃଷ୍ଣ ତାଙ୍କର ପାଞ୍ଚଜନ୍ୟ ଶଙ୍ଖରେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଯୁଦ୍ଧ ଆରମ୍ଭ ହୋଇ ପାରୁନାହିଁ । ମହାଭାରତ ଯୁଦ୍ଧ ଭୂମିରେ ନିଜ ଜ୍ଞାତିଜନମାନଙ୍କୁ ନିଜ ସମ୍ମୁଖରେ ଦେଖି ଶକ୍ତିହୀନ ମନେକଲେ ପାର୍ଥ । ସାମାନ୍ୟ ରାଜ୍ୟ ନିମନ୍ତେ ସେ ଆତ୍ମୀୟ ସ୍ୱଜନଙ୍କୁ ହତ୍ୟା କରିପାରିବେ ନାହିଁ । ଏହି ନିଷ୍ପତ୍ତିରେ ଶ୍ରୀକୃଷ୍ଣ ସ୍ତମ୍ଭିଭୂତ ହୋଇଗଲେ ଓ ଅର୍ଜୁନଙ୍କୁ ବିଷାଦ ଯୋଗରୁ ମୁକ୍ତ କରିବା ନିମନ୍ତେ ବିଭିନ୍ନ ଉପାୟ ଚିନ୍ତା କରିବାକୁ ଲାଗିଲେ । ଶେଷରେ ସମସ୍ତ ପ୍ରକାର ଯୋଗ ଶିକ୍ଷା ଓ ନୀତିବାକ୍ୟରେ ଅର୍ଜୁନଙ୍କର ମୋହ ଭଙ୍ଗ ହେଲା । ଅର୍ଜୁନ ଅନୁଭବ କଲେ ଯେ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ପାର୍ଥିବ ବା ଅପାର୍ଥିବ, ଦୃଶ୍ୟମାନ ବା ଅଦୃଶ୍ୟମାନ ପ୍ରକଟିତ ବା ଅପ୍ରକଟିତ ବସ୍ତୁଗୁଡ଼ିକ ଓ ଶକ୍ତି ଏକ ରଜ୍ଜୁଦ୍ୱାରା ଛନ୍ଦିତ । କିନ୍ତୁ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ ଯେ ସେ କିପରି ସମସ୍ତ ସୃଷ୍ଟିର କାରଣ, ତାଙ୍କର ଅଧ୍ୟକ୍ଷତାରେ କିପରି ପ୍ରକୃତି ସଚରାଚର ଜଗତ ସୃଷ୍ଟିହେଉଛି; ତାଙ୍କଠାରୁ ଭିନ୍ନ ଅନ୍ୟକିଛି ପରମ କାରଣ ନାହିଁ । କିପରି ଏକ ମଣିମାଳା ସୂତାରେ ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ଓ ଜୀବଜଗତ ଗୁନ୍ଥା ହୋଇ ରହିଛି, ତାହା ନିଜର ସେହି ଶକ୍ତିକୁ, ସେହି ବିଶ୍ୱରୂପକୁ ସ୍ୱଚକ୍ଷୁରେ ଦର୍ଶନ କରିବାକୁ ଚାହିଁଲେ ।

୨. ବିଶ୍ୱରୂପ

ଭଗବତ୍ ଗୀତାର ଏକାଦଶ ଅଧ୍ୟାୟରେ ବିଶ୍ୱରୂପ ଦର୍ଶନ ଯୋଗ ଲିପିବଦ୍ଧ ହୋଇଛି । ଏହି ଅଧ୍ୟାୟରେ ୫୫ଟି ଶ୍ଳୋକ ରହିଛି । ସେଥି ମଧ୍ୟରୁ ୧୭ଟି ଶ୍ଳୋକରେ ବିଶ୍ୱରୂପର ବର୍ଣ୍ଣନା ରହିଛି ।

ପୂର୍ବ ଅଧ୍ୟାୟମାନଙ୍କରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇଥିଲେ ଯେ ସେ ସ୍ୱୟଂ ନିଜେ କିପରି ସମସ୍ତ ପାର୍ଥିବ ଓ ଅପାର୍ଥିବ ବସ୍ତୁ ଓ ପ୍ରାଣୀମାନଙ୍କ ମଧ୍ୟରେ ପ୍ରକଟିତ । ଏହା ସୂଚାଇଦେଉଛି ଯେ ବିଶ୍ୱର ସମସ୍ତ ବିବିଧତା ମଧ୍ୟରେ ସେ ହିଁ କେବଳ ଏକମାତ୍ର ସତ୍ତା । କିନ୍ତୁ ଏକାଦଶ ଅଧ୍ୟାୟରେ ସେ ଅର୍ଜୁନଙ୍କୁ ଚାକ୍ଷୁସ ପ୍ରମାଣ ଦେଉଛନ୍ତି ଯେ ସେ କିପରି ସମସ୍ତ ବିଶ୍ୱବ୍ରହ୍ମାଣ୍ଡର ଏକକ ବାସ୍ତବିକତା ।



ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ

ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହୁଛନ୍ତି:

ପଶ୍ୟ ମେ ପାର୍ଥ ରୂପାଣି ଶତ ଶୋଽଥ ସହସ୍ରଶଃ ।
ନାନା ବିଧାନି ଦିବ୍ୟାନି ନାନା ବର୍ଣ୍ଣାକୃ ତାନି ।।(୧୧.୫)

ଅର୍ଥାତ୍, ହେ ପାର୍ଥ ! ମୋର ଅନେକ ପ୍ରକାର ବର୍ଣ୍ଣ ଓ ଅନେକ ଆକୃତି ବିଶିଷ୍ଟ ଶହ ଶହ ହଜାର ହଜାର ଅଲୌକିକ ରୂପ ଦର୍ଶନ କର ।

ତତ୍ପରେ କହିଛନ୍ତି ଯେ ତମର ଚର୍ମ ଚକ୍ଷୁରେ ମୋର ବିଶ୍ୱରୂପକୁ ଦେଖିପାରିବ ନାହିଁ । ତେଣୁ ମୁଁ ଯୋଗ ବଳରେ ତୁମକୁ ଦିବ୍ୟଦୃଷ୍ଟି ପ୍ରଦାନ କରୁଛି । ଏହା ନିମ୍ନ ଶ୍ଳୋକରେ ଲିପିବଦ୍ଧ:

ନ ତୁ ମାଁ ଶକ୍ୟସେ ଦ୍ରିଷ୍ଟୁ ମନେ ନୈବ ସ୍ୱଚକ୍ଷୁଷା ।
ଦିବ୍ୟଂ ଦଦାମି ତେ ଚକ୍ଷୁଃ
ପଶ୍ୟ ମେ ଯୋଗ ଶୈଶ୍ୱରମ୍ ।।(୧୧.୮)

ଅର୍ଥାତ୍ ତୁମେ ନିଜ ଚକ୍ଷୁରେ ମୋତେ ଦେଖିପାରିବ ନାହିଁ । ତେଣୁ ମୁଁ ତୁମକୁ ମୋର ଯୋଗ ବିଦ୍ୟାରେ ଦିବ୍ୟଦୃଷ୍ଟି ପ୍ରଦାନ କରୁଛି ।

ତା'ପରେ ଅର୍ଜୁନଙ୍କୁ ଆଷ୍ଟର୍ଯ୍ୟମୟ ଅନନ୍ତ ରୂପଶାଳୀ ନିଜର ଦିବ୍ୟ ସ୍ୱରୂପକୁ ଦର୍ଶନ କରାଇଲେ; ଯାହାଙ୍କର ଅନେକ ମୁଖ, ଅନେକ ନେତ୍ର, ନାନା ପ୍ରକାର ଅଦ୍ଭୁତ ରୂପ ଓ ଅନେକ ଦିବ୍ୟ ଆଭୂଷଣ ରହିଛି, ହାତରେ ଦିବ୍ୟ ଆୟୁଧ ଓ ଗଳାରେ ଦିବ୍ୟମାଳା ଶୋଭା ପାଉଛି ଏବଂ ଯିଏ ଦିବ୍ୟ ବସ୍ତ୍ର ପରିଧାନ କରିଛନ୍ତି ତଥା ଯାହାଙ୍କର ଲଲାଟ ଓ ଶରୀର ଚନ୍ଦନ ଚର୍ଚ୍ଚିତ, ସେପରି ଅତି ଆଶ୍ଚର୍ଯ୍ୟମୟ ଅନନ୍ତ ରୂପଶାଳୀ ତଥା ସବୁ ଦିଗକୁ ମୁଖଥିବା ନିଜର ଦିବ୍ୟ ସ୍ୱରୂପକୁ ଦେଖାଇଲେ ।

ବିଶ୍ୱରୂପ ବା ଐଶ୍ୱରିକ ରୂପର ଜ୍ୟୋତି ବିଷୟରେ ଏକ ବର୍ଣ୍ଣନା ହେଉଛି:

ଦିବି ସୂର୍ଯ୍ୟସହସ୍ୟସ
ଭବେଦ୍ୟୁଗପଦୁତ୍‌ଥିତା ।
ଯଦି ଭାଃ ସଦୃଶୀ ସା
ସ୍ୟାଭାସସ୍ତସ୍ୟ ମହାତ୍ମନଃ ।।(୧୧.୧୨)

ଅର୍ଥାତ୍ : ଯଦି ଆକାଶରେ ଏକାବେଳେ ସହସ୍ର ସୂର୍ଯ୍ୟ ଉଦିତ ହୁଅନ୍ତି, ତଥାପି ସେମାନଙ୍କର ଜ୍ୟୋତି ମିଶି ଏହି ବିରାଟ ରୂପ ପରମାତ୍ମାଙ୍କ ଜ୍ୟୋତି ସହିତ ସମାନ ହୋଇ ପାରିବ ନାହିଁ ।

ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ଦର୍ଶନ କରି ଅର୍ଜୁନ ଅତ୍ୟନ୍ତ ଚକିତ ଓ ଆଶ୍ଚର୍ଯ୍ୟ ହୋଇଗଲେ ଓ କହିଲେ ଯେ ସେ ଶ୍ରୀକୃଷ୍ଣଙ୍କ ଶରୀର ମଧ୍ୟରେ ସମସ୍ତ ପ୍ରାଣୀବର୍ଗଙ୍କୁ

ଦେଖିପାରୁଛନ୍ତି ଓ ଅନେକ ବାହୁ, ଉଦର, ମୁଖ ଓ ନେତ୍ର ଥିବାର ଓ ବହୁଦିଗରେ ଅନନ୍ତରୂପ ଥବାର ଦେଖିପାରୁଛନ୍ତି । ମୁକୁଟ, ଗଦା, ଚକ୍ର ଧାରଣ କରିଥିବା ଦୃଶ୍ୟ, ତେଜରାଶି ଯୁକ୍ତ ସର୍ବଦିଗେ ଦୀପ୍ତିମନ୍ତ, ଦେଦିପ୍ୟମାନ ଅଗ୍ନି ଓ ସୂର୍ଯ୍ୟଙ୍କ ସଦୃଶ କାନ୍ତି ସମ୍ପନ୍ନ ସର୍ବଦିଗବ୍ୟାପ୍ତ ରୂପ ଦେଖି ପାରୁଛନ୍ତି ।

ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି ଯେ ସେ ତାଙ୍କୁ ଅନନ୍ତ ପ୍ରଭାବଶାଳୀ, ଅନନ୍ତ ଭୂଜ, ଚନ୍ଦ୍ର ଓ ସୂର୍ଯ୍ୟ ସ୍ୱରୂପ ନେତ୍ର, ପ୍ରଜ୍ୱଳିତ ଅଗ୍ନିସମ ଗୁଣ ବିଶିଷ୍ଟ ଓ ସ୍ୱତେଜରେ ସଂସାରକୁ ସଂନ୍ତାପିତ କରୁଥିବାର ଦେଖୁଛନ୍ତି ।

ବିଶ୍ୱର ଏପରି କୌଣସି ଘଟଣା ଭୌତିକ ଓ ଅଭୌତିକ ସ୍ତରରେ ସଂଗଠିତ ହୋଇବାହିଁ ଯାହା ବିଶ୍ୱରୂପ ଦର୍ଶନର ଚମତ୍କାରିତା ସଙ୍ଗେ ତୁଳନୀୟ । ବିଶ୍ୱ ରୂପଠାରୁ ଅଧିକ ରୋମାଞ୍ଚକର, ତାତ୍ପର୍ଯ୍ୟପୂର୍ଣ୍ଣ, ଅଧିକ ଭୟଙ୍କର, ଅଧିକ ଭୟାଭୟ ଘଟଣା ସଂଗଠିତ ହୋଇନାହିଁ; କିମ୍ବା ଅଧିକ ତାତ୍ତ୍ୱିକ ଓ ଅଧିକ ଦାର୍ଶନିକ ଭାବଧାରାରେ ସାରା ସଂସ୍କାରକୁ ଆଜିଯାଏ ପ୍ରଭାବିତ ଓ ଦ୍ରବିଭୂତ କରିନାହିଁ ।

ବିଭିନ୍ନ ବସ୍ତୁ ମଧ୍ୟରେ ଫାଙ୍କ ସ୍ଥାନ ପରସ୍ପରକୁ ପୃଥକ କରୁଛି । ଯଦି ଦୁଇ ବସ୍ତୁ ମଧ୍ୟରେ ସ୍ଥାନ ନ ଥାନ୍ତା, କିମ୍ବା ସମସ୍ତ ବସ୍ତୁମାନଙ୍କ ମଧ୍ୟରେ କୌଣସି ଫାଙ୍କ ସ୍ଥାନ ନ ଥାନ୍ତା ତାହାହେଲେ ସମସ୍ତ ବସ୍ତୁମାନେ ମିଶି ଏକାକାର ହୋଇଯାଇଥାନ୍ତେ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ମନରୁ ବିଭିନ୍ନ ବସ୍ତୁମାନଙ୍କ ମଧ୍ୟରେ ଦୂରତା ଦୂରକରି ଏକ ବିଶ୍ୱରୂପ ସୃଷ୍ଟି କଲେ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଛନ୍ତି:

ମୟା ପ୍ରସନ୍ନେନ ତ କାର୍ଜୁ ନେଦଂ
ରୂପଂ ପରଂ ଦର୍ଶିତ ମାତ୍ମ ଯୋଗାତ୍ ।
ତେଜୋମୟଂ ବିଶ୍ୱମନ୍ତ ମାଦ୍ୟଂ
ଯନ୍ମେ ତ୍ୱଦ ନ୍ୟେନ ନ ଦୃଷ୍ଟପୂର୍ବମ୍ ।। (୧୧.୪୭)

ଅର୍ଥାତ୍ ଶ୍ରୀକୃଷ୍ଣ କହୁଛନ୍ତି ତାଙ୍କର ଯୋଗଶକ୍ତି ବଳରେ ତାଙ୍କର ବିରାଟ ବିଶ୍ୱରୂପ, ଯାହା ଆଦି ଓ ଅସୀମ ସେ ଅର୍ଜୁନଙ୍କୁ ଦେଖାଇଲେ, ତାହା ଅର୍ଜୁନଙ୍କ ବ୍ୟତୀତ ଆଉ କେହି ଏହି ପ୍ରକାର ସଂପୂର୍ଣ୍ଣ ବିଶ୍ୱରୂପ ଦର୍ଶନ କରି ନାହାଁନ୍ତି ।

ତା'ପରେ ଭୀତତ୍ରସ୍ତ ଓ ଆଶ୍ଚର୍ଯ୍ୟାନ୍ୱିତ ଅର୍ଜୁନଙ୍କ ଅନୁରୋଧକ୍ରମେ ଶ୍ରୀକୃଷ୍ଣ ବିଶ୍ୱରୂପ ପରିହାର କରି ନିଜର ସୌମ୍ୟ ଚତୁର୍ଭୁଜ ଦେବ ରୂପ ଦେଖାଇଲେ । ତା'ପରେ ଅର୍ଜୁନ ନିଜର ସ୍ୱଭାବିକ ସ୍ଥିର ଚିତ୍ତ ଲାଭକଲେ ।

ଏହିପରି ଭାବରେ ବିଶ୍ୱରୂପ ଦର୍ଶନ ଯୋଗ ସମାପ୍ତ ହେଲା ।

ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ଦର୍ଶନରେ ଭାବ ବିହ୍ୱଳିତ ଅର୍ଜୁନ ଅନୁଭବ କଲେ

"ଓଁ ତତ୍ ସତ୍" (ବୈଦିକ୍ ସତ୍ୟ)

ଅର୍ଥାତ୍ ସେ ହେଉଛନ୍ତି ଏକମାତ୍ର ସତ୍ୟ । ବିବିଧତା ମଧ୍ୟରେ ପ୍ରକୃତି ଅଭିନ୍ନ ଓ ଅନନ୍ୟ । ଅର୍ଜୁନ ମଧ୍ୟ ଅନୁଭବ କଲେ ଯେ-

"ଅହଂ ବ୍ରହ୍ମୋସ୍ମି" (ବୃହଦାରଣ୍ୟକ ଉପନିଷଦ)

ଅର୍ଥାତ୍ ମୁଁ ହେଉଛି ବ୍ରହ୍ମ, ପ୍ରକୃତ ସତ୍ୟ, ଏକମାତ୍ର ସତ୍ୟ; ଉଭୟ ନିର୍ଗୁଣ ବ୍ରହ୍ମନ୍ ଓ ସଗୁଣ ବ୍ରହ୍ମନ୍, ଉଭୟ ଅଦୃଶ୍ୟ ଓ ନିରାକାର ଏବଂ ଦୃଶ୍ୟ ଓ ଆକାରଯୁକ୍ତ । ସୀମା ମଧ୍ୟରେ ଅସୀମଙ୍କୁ, ଅନ୍ତ ମଧ୍ୟରେ ଅନନ୍ତଙ୍କୁ ଅର୍ଜୁନ ଦର୍ଶନ କରି ଚକିତ ହେଲେ ।

ଅର୍ଜୁନ ଶ୍ରୀକୃଷ୍ଣଙ୍କ ଠାରୁ ଏହି ବ୍ରହ୍ମଜ୍ଞାନ ପ୍ରାପ୍ତକରି ଶ୍ରୀକୃଷ୍ଣ ଯେ ଯୋଗେଶ୍ୱର, ତା'ର ଚାକ୍ଷୁସ ପ୍ରମାଣ ପାଇଲେ ।

### ୩. ଦିବ୍ୟ ଦୃଷ୍ଟି କ'ଣ ?

ମହାଭାରତ ଯୁଦ୍ଧ ସମୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଦିବ୍ୟଦୃଷ୍ଟି ପ୍ରଦାନ କରିଥିଲେ ବିଶ୍ୱରୂପ ଦର୍ଶନ ନିମନ୍ତେ; ମହର୍ଷି ବେଦବ୍ୟାସ ମଧ୍ୟ ସଞ୍ଜୟଙ୍କୁ ମହାଭାରତ ଯୁଦ୍ଧର ଧାରା ବିବରଣୀ ରାଜା ଧୃତରାଷ୍ଟ୍ରଙ୍କୁ ଶୁଣାଇବା ପାଇଁ ଏହି ଦିବ୍ୟ ଦୃଷ୍ଟି ପ୍ରଦାନ କରିଥିଲେ । ଯାହା ଅନୁମାନ କରାଯାଏ ଅନେକ ଯୋଗୀ ନିଜର ଯୋଗ ସାଧନା ବଳରେ ଦିବ୍ୟଦୃଷ୍ଟି ଲାଭ କରିଛନ୍ତି ଓ ଅନ୍ୟମାନଙ୍କୁ ମଧ୍ୟ ପ୍ରଦାନ କରିଛନ୍ତି । ଶ୍ରୀକୃଷ୍ଣ ସ୍ୱୟଂ ଏକ ସିଦ୍ଧ ଯୋଗୀ । ସେ ଯୋଗ ବଳରେ ଅର୍ଜୁନଙ୍କୁ ନିଜର ବିଶ୍ୱରୂପ ଦେଖାଇଲେ ଓ କୁରୁ ରାଜସଭାରେ ପାଣ୍ଡବ ରାଣୀ ଦ୍ରୌପଦୀଙ୍କୁ ବିବସନା କରିବା ଅବସରରେ ତାଙ୍କୁ କୋଟୀବସ୍ତ୍ର ପ୍ରଦାନ କରିଥିଲେ ।

ଅନେକ ମନେ କରନ୍ତି ଏହା ଅଲୌକିକ ଘଟଣା । କିନ୍ତୁ ପ୍ରକୃତରେ କୌଣସି ଘଟଣା ଅଲୌକିକ ନୁହେଁ । ଏହାର ପ୍ରକୃତ କାରଣ ଆମର ଅଜ୍ଞତା ହେତୁ ଅନେକ ଘଟଣା ଅଲୌକିକ ପ୍ରତୀୟମାନ ହୁଏ । ଯାହା ଘଟୁଛି ତାହାର କାରଣ ରହିଛି । ବିନା କାରଣରେ କୌଣସି ଚମତ୍କାରିତା ଘଟିବା ଅସମ୍ଭବ । ଏହା ପ୍ରକୃତି ବା ସୃଷ୍ଟିର ନିୟମ । ଏହି ନିୟମର ନାମ Law of causation । ବୁଦ୍ଧଦେବ ଏହି ନିୟମକୁ କହୁଥିଲେ Dependent Origination । ଏହି ନିୟମକୁ ଶ୍ରୀକୃଷ୍ଣଙ୍କ ସମେତ ସମସ୍ତ ଯୋଗୀ ଋଷି, ବୁଦ୍ଧ, ସମସ୍ତ ବୈଜ୍ଞାନିକମାନେ ମଧ୍ୟ ଗ୍ରହଣ କରିଛନ୍ତି ।

ମନୁଷ୍ୟ ସମାଜର ଦୃଷ୍ଟି ଜଙ୍ଗଲର ପଶୁ ପକ୍ଷୀଙ୍କ ଠାରୁ ଭିନ୍ନ । ଆମେ ଅନ୍ଧାରରେ ଦେଖିପାରୁନାହିଁ । କିନ୍ତୁ ବାଘ, ସିଂହ ପ୍ରଭୃତି ଅନ୍ଧାର ମଧ୍ୟରେ ଦେଖିପାରନ୍ତି । ପେଚା ଦିନରେ ଦେଖିପାରେ ନାହିଁ କିନ୍ତୁ ରାତିରେ ଦେଖିପାରେ । ଆମ ଆଖିରେ ଏକ୍ସରେ ପରି ଶକ୍ତି ଥିଲେ ଆମେ ରକ୍ତ ମାଂସର ଶରୀର ପରିବର୍ତ୍ତେ କେବଳ ଅସ୍ଥି ଦେଖି ପାରିବା । କିନ୍ତୁ ଯୋଗ ବଳରେ ଦିବ୍ୟ ଦୃଷ୍ଟି ଲାଭ କଲେ ଆମେ ପ୍ରକୃତିର ସମସ୍ତ ରହସ୍ୟକୁ ଦର୍ଶନ କରିପାରିବା ସହିତ ହୃଦୟଙ୍ଗମ ମଧ୍ୟ କରିପାରିବା ।

ଯୋଗ ମାଧ୍ୟମରେ ଅନେକ ଋଷି ଦିବ୍ୟ ଦୃଷ୍ଟି ଲାଭ କରିବାର ପ୍ରମାଣ ଅଛି । ଯାଜ୍ଞବଲ୍କ, ବୁଦ୍ଧ, ପତଞ୍ଜଳୀ, ଆଦି ଶଙ୍କରାଚାର୍ଯ୍ୟ, ବାବାଜି, ଶ୍ରୀ ମୁକ୍ତେଶ୍ୱର, ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ଶ୍ରୀ ଅରବିନ୍ଦ, ପରମହଂସ ଯୋଗାନନ୍ଦ, ରାମଦେବ, ସଦ୍‌ଗୁରୁ ଓ ଏହିପରି ଅନେକ ସନ୍ଥ ଏହି ବିଦ୍ୟାକୁ ଆୟତ୍ତ କରିଛନ୍ତି । ହିମାଳୟ ପାଦଦେଶରେ ଅନେକ ଯୋଗ ଶିବିର ଓ ଯୋଗଗୁରୁମାନେ ଅଛନ୍ତି ଯେଉଁମାନେ କୌଣସି ପ୍ରକାର ପ୍ରଚାର ଧର୍ମରେ ବିଶ୍ୱାସ କରନ୍ତି ନାହିଁ । ପ୍ରକୃତରେ ଦେଖିବାକୁ ଗଲେ ଭାରତ ଏକ ଆଧ୍ୟାତ୍ମିକ ଦେଶ ଓ ଏହା ଯୋଗୀ ଋଷିମାନଙ୍କର ଦିଗ୍‌ଦର୍ଶନ ବଳରେ ଋଦ୍ଧିମନ୍ତ ହୋଇଛି ।

## ୪. ଯୋଗବିଦ୍ୟା

ଯୋଗ ବିଦ୍ୟା ସଂପର୍କରେ କିଞ୍ଚିତ ଆଭାସ ନିମ୍ନରେ ଦତ୍ତ:

### ଶକ୍ତିଚକ୍ର ବିଜ୍ଞାନ

ପ୍ରତ୍ୟେକ ମନୁଷ୍ୟ ଦେହରେ ମୁଖ୍ୟତଃ ସାତଗୋଟି ଶକ୍ତିଚକ୍ର ରହିଛି । ସେଗୁଡ଼ିକ ହେଲା:

୧. **ମୂଳାଧାର:** ଏହା ମଳଦ୍ୱାର ଓ ମୂତ୍ରଦ୍ୱାର ମଧ୍ୟରେ ଅବସ୍ଥିତ ।

୨. **ସ୍ୱାଧିସ୍ଥାନ:** ଏହା ମୂତ୍ରଧାରର ପ୍ରାୟ ଦୁଇ ଇଞ୍ଚ ଉପରେ ଅବସ୍ଥିତ ।

୩. **ମଣି ପୂରକ:** ଏହା ନାଭିକେନ୍ଦ୍ର ତଳେ ଅବସ୍ଥିତ ।

୪. **ଅନାହତ:** ହୃଦୟର ଅସ୍ଥି ତଳେ ଅବସ୍ଥିତ ।

୫. **ବିଶୁଦ୍ଧି:** ଏହା ତଣ୍ଟି ପାଖରେ ଅବସ୍ଥିତ ।

୬. **ଜ୍ଞାନଚକ୍ର:** ଦୁଇ ଆଖିପତାର ମଧ୍ୟସ୍ଥଳରେ ଅବସ୍ଥିତ ଓ ସିଧାସଳଖ ମସ୍ତିଷ୍କ ସହିତ ସଂପୃକ୍ତ ।

୭. **ସହସ୍ରାରଚକ୍ର ବା ବ୍ରହ୍ମଚକ୍ର:** ଏହା ମୁଣ୍ଡ ଉପରେ ଦୁକ୍‌ଦୁକି ଠାରେ ଅବସ୍ଥିତ ।

(୧)ରୁ (୬)କୁ ଯିବା ଅପେକ୍ଷାକୃତ ସହଜ କାରଣ ଏହା ୭୨,୦୦୦ ନାଡ଼ି ଦ୍ୱାରା ସଂପୃକ୍ତ । କିନ୍ତୁ (୬)ରୁ (୭) ଯିବା ଅତ୍ୟନ୍ତ କଷ୍ଟକର, କାରଣ ଏହା ମଧ୍ୟରେ କୌଣସି ନାଡ଼ି ନାହିଁ । ତେଣୁ (୬)ରୁ (୭) ଯିବା ପାଇଁ ଲମ୍ଫ ପ୍ରଦାନ କରିବାକୁ ପଡ଼ିଥାଏ । କେବଳ ଦକ୍ଷ ଗୁରୁଙ୍କ ସାହାଯ୍ୟରେ ମନୁଷ୍ୟ ତା'ର ଶକ୍ତି କେନ୍ଦ୍ରଗୁଡ଼ିକୁ ଜାଗ୍ରତ କରିପାରେ । ଯେଉଁ ଯୋଗୀଙ୍କର ଯେଉଁ ଶକ୍ତି କେନ୍ଦ୍ର ଅଧିକମାତ୍ରାରେ ଜାଗ୍ରତ, ସେମାନେ ସେହି ପ୍ରକାରେ ଶକ୍ତି ଆହରଣ କରିପାରନ୍ତି । ଆଦି ଶଙ୍କରାଚାର୍ଯ୍ୟ (ଖ୍ରୀଷ୍ଟାବ୍ଦ ୮୦୦)ଙ୍କର ଜ୍ଞାନଚକ୍ର ବହୁତ ପ୍ରଖର ଥିଲା । ଏହାକୁ ପ୍ରୟୋଗକରି ସେ ଅନେକ ପୁସ୍ତକ ସୃଷ୍ଟି କରିଛନ୍ତି ଓ ଅନେକ ପଣ୍ଡିତମାନଙ୍କୁ ନିଜର ଜ୍ଞାନ ବଳରେ ପରାସ୍ତ କରିଛନ୍ତି । ବୁଦ୍ଧଙ୍କର ସହସ୍ରାର ଚକ୍ର ପ୍ରଖର ଥିଲା; ଯାହା ଫଳରେ ସେ ସମସ୍ତ ଜ୍ଞାନର ଅଧିକାରୀ ହୋଇ ପାରିଥିଲେ । ଶ୍ରୀକୃଷ୍ଣଙ୍କର ଏକାଧାରରେ ସମସ୍ତ ଚକ୍ର ବଳିଷ୍ଠ ଭାବରେ ଜାଗ୍ରତ ହୋଇଥିଲା । ସେଥିପାଇଁ ସେ ଅନେକ ଅଲୌକିକ କାର୍ଯ୍ୟମାନ ଅନାୟସରେ କରିପାରୁଥିଲେ । ଉଦାହରଣ ସ୍ୱରୂପ ନିଜର ଶରୀରକୁ ଅତି ବୃହତ୍ ଓ ଅତି କ୍ଷୁଦ୍ର ନିମିଷକ ମଧ୍ୟରେ କରିପାରୁଥିଲେ, ଅର୍ଜୁନଙ୍କୁ ବିଶ୍ୱରୂପ ଦେଖାଇଥିଲେ ଓ ନିମିଷକ ମଧ୍ୟରେ ଦ୍ରୌପଦୀଙ୍କୁ କୋଟୀବସ୍ତ୍ର ଦେଇପାରିଥିଲେ ।

ଅନେକ ଯୋଗୀ ଅଛନ୍ତି ଯେଉଁମାନେ ଜଳ ଉପରେ ଚାଲି ପାରନ୍ତି; ଶୂନ୍ୟରେ ଭାସି ପାରନ୍ତି; ଏକ ସମୟରେ ଭିନ୍ନ ଭିନ୍ନ ସ୍ଥାନରେ ଦୃଶ୍ୟ ହୋଇପାରନ୍ତି; ଏକ ସ୍ଥାନରେ ଉପବେଶନ କରି ଓ ଧ୍ୟାନ କରି ଗ୍ରହ, ନକ୍ଷତ୍ର ସହ ବିଶ୍ୱବ୍ରହ୍ମାଣ୍ଡ ପରିକ୍ରମା କରି ଆସି ପାରୁଛନ୍ତି । ନିଜର ଓ ଅନ୍ୟମାନଙ୍କର ପୂର୍ବଜନ୍ମ ବିଷୟରେ ଅବଗତ ହୋଇପାରନ୍ତି । ସ୍ୱଇଚ୍ଛାରେ ଅନେକ ବର୍ଷ ବଞ୍ଚି ରହିପାରନ୍ତି ଓ ପ୍ରାଣତ୍ୟାଗ ମଧ୍ୟ କରିପାରନ୍ତି ।

ଏହିସବୁ ଅଲୌକିକ ଘଟଣା ଘଟୁଛି କିପରି ? ତଥାକଥିତ ଏହି ଅଲୌକିକ ଘଟଣାର ପ୍ରକୃତ କାରଣ ସମ୍ବନ୍ଧରେ ନ ଜାଣିଲେ ଏହା ଅଲୌକିକ ପ୍ରତୀୟମାନ ହୁଏ କିନ୍ତୁ ଏହାର ପ୍ରକୃତ କାରଣ ହେଉଛି ଯୋଗ, ବିଶେଷତଃ କ୍ରିୟା ଯୋଗ । କେବଳ ଦକ୍ଷ ଗୁରୁଙ୍କ ସାହାଯ୍ୟରେ ଏହା ଲାଭ କରାଯାଇପାରେ ।

ନିଜ ଶରୀରକୁ ଅଶାରୀରିରେ ପରିବର୍ତ୍ତନ କରିଦେବା ଓ ଅଶିରୀରକୁ ପୁନରାୟ ଶରୀରରେ ପରିବର୍ତ୍ତନ କରିଦେବା ଦ୍ୱାରା ଯୋଗୀମାନେ ଆଲୋକର ଗତିରେ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯାଇ ଆସି ପାରୁଛନ୍ତି । ଏହା କ୍ରିୟାଯୋଗ ଦ୍ୱାରା ସମ୍ଭବ । ଆଲୋକର ଗତିଠୁ କ'ଣ ବେଶୀ ବେଗ କାହାର ନାହିଁ ? କ'ଣ ମାନବିକ ଚେତନା ଆଲୋକର ଗତିଠାରୁ ବେଶୀ ବେଗଗାମୀ ନୁହେଁ ।

## ୫. ବିଶ୍ୱରୂପର ତାତ୍ପର୍ଯ୍ୟ

ଆଧୁନିକ ବିଜ୍ଞାନ ଦ୍ୱାରା ଆମେମାନେ ଏହିପରି କଥା ବର୍ତ୍ତମାନ ହୃଦୟଙ୍ଗମ କରିପାରୁଛୁ । ୧୯୦୫ ମସିହାରେ ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନ୍ ତାଙ୍କର Special Theory of Relativity ମାଧ୍ୟମରେ ପ୍ରମାଣ କଲେ ଯେ $E = mc^2$ । ଏଠାରେ E ହେଉଛି energy ବା ଶକ୍ତି; m ହେଉଛି mass ବା ବସ୍ତୁ; c ହେଉଛି ଆଲୋକର ଗତି । ତାହା ହେଉଛି 1,86,000 ମାଇଲ ଏକ ସେକେଣ୍ଡରେ । ଏଥିରୁ ସ୍ପଷ୍ଟ ଯେ ଏକ କ୍ଷୁଦ୍ର ବସ୍ତୁ ମଧ୍ୟରେ ବହୁ ପରିମାଣରେ ଶକ୍ତି ଅନ୍ତର୍ନିହିତ ହୋଇ ରହିଛି । ତେଣୁ ଆଲୋକ ହେଉଛି ସମସ୍ତ ସର୍ଜନାର ଆଧାର । ଏହି ଆଲୋକ ଶକ୍ତିକୁ ଉପଯୋଗ କରି ସାଧକ ମୁନି ଋଷିମାନେ ନିମିଷକ ମଧ୍ୟରେ କୌଣସି ବସ୍ତୁକୁ ଉତ୍ପନ୍ନ କରିପାରନ୍ତି; ବୃକ୍ଷ, ଶରୀର, ଔଷଧ ପ୍ରଭୃତି ସୃଷ୍ଟି କରିପାରନ୍ତି ଓ ଭକ୍ତର ଇଚ୍ଛାକୁ ମଧ୍ୟ ପୂରଣ କରିଦେଇ ପାରନ୍ତି । ଏହି ତତ୍ତ୍ୱକୁ ଉପଯୋଗ କରି ଶ୍ରୀକୃଷ୍ଣ କୃଷ୍ଣାଙ୍କୁ କୋଟି ବସ୍ତ୍ର ପ୍ରଦାନ କରିଥିଲେ ।

ଆଇନ୍‌ଷ୍ଟାଇନଙ୍କର ବସ୍ତୁ ଓ ଶକ୍ତି ଚିନ୍ତାଧାରାକୁ କେନ୍ଦ୍ରକରି ଆମେରିକା ସରକାର ଅଣୁ ବୋମା-ନିର୍ମାଣ କରିଥିଲା । ଏହାର ନିର୍ମାଣ ନିମନ୍ତେ ସେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ (ବରକ୍‌ଲେ କ୍ୟାମ୍ପସ)ର ପଦାର୍ଥ ବିଜ୍ଞାନ ପ୍ରଫେସର ରୋବର୍ଟ ଓପନହାମାରଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କଲେ । ସେ ଲସ୍‌ଆଲମସର ଏକ ଗୁପ୍ତ ସ୍ଥାନରେ ଆଣବିକ ବୋମା ପ୍ରସ୍ତୁତ କଲେ ଓ ପରୀକ୍ଷା କଲେ । ପରୀକ୍ଷା ଫଳକୁ ଦର୍ଶନ କରିବା ପାଇଁ ଓପନ୍‌ହାମର ଓ ତାଙ୍କର ସହଯୋଗୀମାନେ ପରିକ୍ଷଣ କେନ୍ଦ୍ରରେ ବହୁ ଦୂରରେ ବଙ୍କରମାନ ପ୍ରସ୍ତୁତ କରି ସେଠାରେ ଆଶ୍ରୟ ନେଲେ । ପରମାଣୁ ବୋମାର ତେଜସ୍କ୍ରିୟ ଶକ୍ତି ଏତେ ଉଜ୍ଜ୍ୱଳ ବିସ୍ଫୋରକ ଓ ଶକ୍ତିଶାଳୀ ଥିଲା ଯେ ଓପନହାମର୍ ଚଳିତ ଓ ବିହ୍ୱଳିତ ହୋଇଯାଇଥିଲେ ଯେ ହଠାତ୍ ନିଜ ଅଜାଣତରେ ଗୀତାର ବିଶ୍ୱରୂପର ଶ୍ଳୋକଗୁଡ଼ିକୁ ଆବୃତ୍ତି କରିବାକୁ ଲାଗିଲେ । ସେ ଅନୁଭବ କଲେ ଯେ ଏହି ଆଣବିକ ବୋମାର ବିସ୍ଫୋରଣ ସହସ୍ର ସୂର୍ଯ୍ୟର ତେଜ ଓ ଦୀପ୍ତି ସଙ୍ଗେ ସମାନ; ଠିକ୍ ଯେପରି ବର୍ଣ୍ଣନା ହୋଇଛି ବିଶ୍ୱରୂପ ଦର୍ଶନରେ ।

ପ୍ରକାଶଥାଉକି ଏହି କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ପାଠ୍ୟକ୍ରମ ପ୍ରଚଳିତ ଥିଲା । ତନ୍ମଧ୍ୟରେ ଭଗବତ ଗୀତା ଅଧ୍ୟୟନ କରାଯାଉଥିଲା । ଓପନହାମର ଏହିଠାରେ ସ୍ୱଇଚ୍ଛାରେ ଗୀତା ଅଧ୍ୟୟନ କରିଥିଲେ । ଏହି ପରମାଣୁ ବୋମାର ପ୍ରୟୋଗ ହେଲା ୧୯୪୫ ମସିହାରେ ଜାପାନର ନାଗାସାକି ଓ ହିରୋସିମା ସହରରେ । ଏହା ଫଳରେ

ହଜାର ହଜାର ମନୁଷ୍ୟମାନଙ୍କର ପ୍ରାଣହାନି ଘଟିବା ସହିତ ସହରଗୁଡ଼ିକ ସଂପୂର୍ଣ୍ଣ ଭାବରେ ଧ୍ୱଂସ ପାଇଗଲା । ଏହି ପରିପ୍ରେକ୍ଷୀରେ ଓପନହାମର ଅନୁତପ୍ତ ହେଲେ ଓ ଆଣବିକ ବୋମା ନିର୍ମାଣ କାର୍ଯ୍ୟକ୍ରମରୁ ନିବୃତ୍ତ ହେଲେ । ଆଇନ୍‌ଷ୍ଟାଇନ୍ ମଧ ଗଭୀର ଭାବରେ ଅନୁତପ୍ତ ହେଲେ ଯେ ତାଙ୍କ ଦ୍ୱାରା ଆବିଷ୍କୃତ ତତ୍ତ୍ୱ ଶେଷରେ ଏପରି ଧ୍ୱଂସ ଲୀଳା ସୃଷ୍ଟି କରବାରେ ନିୟୋଜିତ ହେଲା । ବର୍ତ୍ତମାନ ପୃଥିବୀର ଅନେକ ଦେଶ ଏହି ଶକ୍ତିଶାଳୀ ପରମାଣୁ ଅସ୍ତ୍ରର ଅଧିକାରୀ ।

ସୁଖର କଥା ଆଣବିକ ଶକ୍ତିରୁ ବର୍ତ୍ତମାନ ବୈଜ୍ଞାନିକମାନେ ଜନସମାଜର ହିତ ଓ କଲ୍ୟାଣ ସାଧନ ପାଇଁ ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରିପାରୁଛନ୍ତି ।

ଯୋଗୀ ଋଷିମାନେ ନିଜ ଶରୀରକୁ ଶକ୍ତିରେ ରୂପାନ୍ତରିତ କରି ପାରିବା ଘଟଣା କାହିଁକି ଆମକୁ ଅଲୌକିକ ଲାଗିବ ?

ଆଇନ୍‌ଷ୍ଟାଇନ Special Theory of Relativity ଆବିଷ୍କାର କରିବାର ପ୍ରାୟ ଦଶବର୍ଷ ପରେ General Theory of Relativity ଆବିଷ୍କାର କଲେ । ଏଥିରେ ସେ ସମୟ, ସ୍ଥାନ ଓ ମାଧ୍ୟାକର୍ଷଣ ଶକ୍ତିକୁ ସଂପୃକ୍ତ କଲେ । କିନ୍ତୁ ସେ ୧୯୩୩ ମସିହାରେ ଜର୍ମାନ୍ ତ୍ୟାଗକରି ଆମେରିକାର ପ୍ରିନ୍‌ସଟନ୍ ବିଶ୍ୱବିଦ୍ୟାଳୟରେ ଯୋଗ ଦେବା ପରେ ସେ Unified Field Theory ଉପରେ କାର୍ଯ୍ୟକଲେ ଓ ସ୍ଥାନ, ସମୟ, ମାଧ୍ୟାକର୍ଷଣ ଶକ୍ତି ସହିତ Electromagnetismକୁ ସଂପୃକ୍ତ କରାଇଲେ ।

ଏହି ସତ୍ୟଠାରୁ ଆହୁରି ବ୍ୟାପକ ସତ୍ୟ ଅଢ଼େଇ ହଜାର ବର୍ଷ ତଳେ ଗୌତମ ବୁଦ୍ଧ ଯୋଗ ବଳରେ ଆବିଷ୍କାର କରି ପାରିଥିଲେ । ସେ କହିଥିଲେ ଯେ ପ୍ରାୟ ୧୦,୦୦୦ ବିଶ୍ୱବ୍ରହ୍ମାଣ୍ଡ ରହିଛି । ସବୁ ବ୍ରହ୍ମାଣ୍ଡର ଜୀବନ ରହିଛି; ସବୁ ବ୍ରହ୍ମାଣ୍ଡ ପରସ୍ପର ମଧ୍ୟରେ ଜାଲପରି ଛନ୍ଦାଛନ୍ଦି ହୋଇ ରହିଛି । ସମସ୍ତ ପଦାର୍ଥ ଓ ସମସ୍ତ ଶକ୍ତି ପରସ୍ପର ସଂପୃକ୍ତ । ଅନେକ ବିଭିନ୍ନତା ସତ୍ତ୍ୱେ ପ୍ରକୃତି ସର୍ବଦା ପରିବର୍ତ୍ତନଶୀଳ ଅଥଚ ଅନନ୍ୟ ।

ପରମହଂସ ଯୋଗାନନ୍ଦଙ୍କ ମତରେ: [An Autobiography of a Yogi]

"The wonders of the motion pictures of radio, of television, of rader of the photo-electric cell, the amazing electronic eye of the atomic energies, are all based on electromagnetic phenomenon of light."

"Creation is light and shadow
both; else no picture is possible."

ତେଣୁ ଆମର ଦୂରଦର୍ଶନ, ମୋବାଇଲର କ୍ଷମତା Unified Field Theoryର ଅନୁଶୀଳନ ନୁହେଁ କି ?

ବିଶ୍ୱବିଖ୍ୟାତ ପଦାର୍ଥ ବିଜ୍ଞାନୀ Tony Rotman ଓ George Sudarsan ତାଙ୍କର ଲିଖିତ ପୁସ୍ତକ Doubt and Certainly, P.256, Sciention (2001)ରେ କହିଛନ୍ତି ।

"Arjun's cosmic vision is one of the most exalted passages of all the literature and if writers intended that the listner be humbled, they succeeded beyond qualification. The Bhagabat Gita expresses better than any scientist can something of awe and humility one experiences when faced with the beauty and order of the Universe."

ମହର୍ଷି ମହେଶଯୋଗୀଙ୍କ ଦ୍ୱାରା ପ୍ରଭାବିତ ହୋଇ ପ୍ରଫେସର J.S. Hagalin ମହେଶଯୋଗୀ ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନ ପ୍ରଫେସର ହେଲେ; ତାଙ୍କର ତତ୍ତ୍ୱ ଉପରେ ପର୍ଯ୍ୟବେସିତ ତାଙ୍କର ସନ୍ଦର୍ଭ ହେଉଛି "Consiousness and unified field, ସେଥିରେ ସେ ପ୍ରତିପାଦନ କରିଛନ୍ତି ଯେ ମାନବୀୟ ଯୌଗିକ ଚେତନା ଓ ବିଶ୍ୱ ଜାଗତିକ ଚେତନା ବା ବିଶ୍ୱରୂପ ମଧ୍ୟରେ ଏକୈକ ସଂପର୍କ ରହିଛି ।

ସ୍ୱାମୀ ବିବେକାନନ୍ଦଙ୍କ ମତରେ (Chicago lecture, 1895) "Science is nothing but the finding the Unity. As soon as science would reach perfect unity, it would stop from further progress."

ବ୍ରହ୍ମ ଯେ ଏକମାତ୍ର ସତ୍ୟ ଏହି ବିଷୟରେ ବେଦ, ବେଦାନ୍ତ, ଉପନିଷଦ, ଆଦି ଶଙ୍କରାଚାର୍ଯ୍ୟ, ଶ୍ରୀ ଅରବିନ୍ଦ ଓ ଅନ୍ୟାନ୍ୟ ଯୋଗୀମାନେ ଏହି ବାର୍ତ୍ତା ଦେଇ ଆସୁଛନ୍ତି ଯେ ନିର୍ଗୁଣ ବ୍ରହ୍ମନ ଏକ ମାତ୍ର ସତ୍ୟ । ଉଦାହରଣ ସ୍ୱରୂପ:

| | | |
|---|---|---|
| "ତତ୍ତ୍ୱ ମସି" | ବୃହଦାରଣ୍ୟକ | ଉପନିଷଦ |
| "ଇଦମ୍ ବ୍ରହ୍ମ" | ଛାନ୍ଦୋଗ୍ୟ | ଉପନିଷଦ |

ମହାଭାରତ ଯୁଦ୍ଧରେ ବ୍ରହ୍ମାସ୍ତ୍ର, ପାଶୁପତ ଅସ୍ତ୍ର ବ୍ୟବହାର ହୋଇଛି । ଏହା ପରମାଣୁ ବୋମା ପରି ବିଧ୍ୱଂସକାରୀ । ଅର୍ଜୁନ ଏ ଦୁଇ ଅସ୍ତ୍ରର ବ୍ୟବହାର ଜାଣିଥିଲେ । ଏ ବିଦ୍ୟା ନିଶ୍ଚୟ ଏକ ଯୋଗ ବିଦ୍ୟା । ଏହି ଯୋଗବିଦ୍ୟାକୁ ବ୍ୟବହାର କରି ଅସ୍ତ୍ରକୁ ମନ୍ତ୍ର ଦ୍ୱାରା ଆହ୍ୱାନ କରାଯାଏ । ହୁଏତ ଏ ବିଦ୍ୟା ବର୍ତ୍ତମାନ ଆମ ପାଖରେ ନାହିଁ । ଏହା ନିଶ୍ଚିତ ଭାବରେ ଏକ ତାନ୍ତ୍ରିକ ଯୋଗବିଦ୍ୟା । ଶୁଣାଯାଏ ଲଙ୍କାର ରାଜା ରାବଣ ପୁଷ୍ପକ ବିମାନ ବ୍ୟବହାର କରୁଥିଲେ । ଆମ ଯୋଗ ଶାସ୍ତ୍ରରେ ବିମାନ ବିଦ୍ୟାର କୌଶଳ ନିହିତ ଅଛି । ଏ ବିଷୟରେ ଯୋଗୀମାନେ ଓ ବୈଜ୍ଞାନିକମାନେ ହୁଏତ ସଠିକ୍ ଭାବରେ ଆଲୋକପାତ କରିପାରିବେ ।

ଯୋଗବିଦ୍ୟାରେ ତଥାକଥିତ ଅଲୌକିକ ଘଟଣା ଉତ୍ପନ୍ନ କରିବାକୁ ତାନ୍ତ୍ରିକ ଯୋଗବିଦ୍ୟା କୁହାଯାଏ । କିନ୍ତୁ ସଦ୍‌ଗୁରୁଙ୍କ ମତରେ ଯେଉଁ ତାନ୍ତ୍ରିକ ବିଦ୍ୟା ମନୁଷ୍ୟ

ସମାଜର ଅମଙ୍ଗଳ ବା କ୍ଷତି ପାଇଁ ଉଦ୍ଦିଷ୍ଟ ତାହା ବର୍ଜନୀୟ । ଯେଉଁ ଯୋଗବିଦ୍ୟା ଜନହିତକାରୀ ତାହା ହିଁ ଗ୍ରହଣୀୟ ।

### ୬. ଉପସଂହାର

ଆମର ଶିକ୍ଷା ସାଧାଣତଃ ବିଜ୍ଞାନ ଓ କାରିଗରୀ ବିଦ୍ୟା ଉପରେ ପର୍ଯ୍ୟବେସିତ । କିନ୍ତୁ ଏହା ସହିତ ଆଧାତ୍ମିକ ଶିକ୍ଷା ଅତ୍ୟନ୍ତ ଜରୁରୀ । ତାହାହେଲେ ଆମ ସମାଜ ଆଉ କେବେ ପରମାଣୁ ଅସ୍ତ୍ର ନିର୍ମାଣ ଯୋଜନାକୁ ଅନୁମୋଦିତ କରିପାରିବ ନାହିଁ ।

ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ଦର୍ଶନ ଏକ ଯୁଗାନ୍ତକାରୀ ଉଦାହରଣ । ଏହା ନିଶ୍ଚିତ ରୂପେ ଏକ ତାନ୍ତ୍ରିକ ଯୋଗବିଦ୍ୟା ଓ ଏହା ସମାଜର ହିତ ପାଇଁ ଉଦ୍ଦିଷ୍ଟ । କାରଣ ଏହା ଫଳରେ ଅର୍ଜୁନଙ୍କର ବିଷାଦଯୋଗ ସଂପୂର୍ଣ୍ଣ ଭାବେ ଦୂର ହୋଇଗଲା । ତେଣୁ ଦୁଷ୍ଟ ବିନାଶ ଓ ସନ୍ଥ ପାଳନ ଉଦ୍ଦେଶ୍ୟରେ ଅର୍ଜୁନଙ୍କ ଅସ୍ତ୍ର ଧାରଣ ଓ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟ ଧର୍ମ ସଂସ୍ଥାପନ ନିମନ୍ତେ ଏକ ବଳିଷ୍ଠ ପଦକ୍ଷେପ ହେଲା ।

ଗୀତାର ଚତୁର୍ଥ ଅଧ୍ୟାୟ, ଶ୍ଳୋକ ୮ରେ ଶ୍ରୀକୃଷ୍ଣଙ୍କର କାଳଜୟୀ ଶ୍ଳୋକଟି ହେଲା:

ଯଦା ଯଦାହି ଧର୍ମସ୍ୟ    ଗ୍ଳାନି ର୍ଭବତି ଭାରତ
ଅଭ୍ୟୁସ୍ଥାନମ୍ ଧର୍ମସ୍ୟ    ତଦା ସ୍ଥାନଂ ସୃଜାମ୍ୟହମ୍ ।
ପରିତ୍ରାଣାୟ ସାଧୁନାଂ    ବିନାଶୟ ଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥୟ    ସମ୍ଭବାମି ଯୁଗେ ଯୁଗେ ।।୮।।

ଅର୍ଥାତ୍ ଦୁଷ୍ଟ ସଂହାର ଓ ସନ୍ଥ ପାଳନ ପୂର୍ବକ ଧର୍ମ ସଂସ୍ଥାପନା ନିମନ୍ତେ ଯୁଗେ ଯୁଗେ ମୁଁ ପ୍ରକଟ ହୋଇଥାଏ ।





ପ୍ରଫେସର ଗୋକୁଳାନନ୍ଦ ଦାସ ଜଣେ ଆଗଧାଡ଼ିର ଗଣିତଜ୍ଞ। ସେ ଐତିହାସିକ ବରୀ ଅଞ୍ଚଳରୁ ପ୍ରାରମ୍ଭିକ ଶିକ୍ଷା ଆରମ୍ଭ କରି ରେଭେନ୍ସା ମହାବିଦ୍ୟାଳୟରୁ ଗଣିତରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ସ୍ନାତକୋତ୍ତର ଉପାଧି ହାସଲ କରିଥିଲେ। ସେ ୧୯୬୦ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପାଇଥିଲେ ସ୍ୱର୍ଣ୍ଣପଦକ।

ଗଣିତ ଅଧ୍ୟାପନକୁ ପେଶା ଭାବେ ଗ୍ରହଣ କରି ଗଙ୍ଗାଧର ମେହେର କଲେଜ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟ ଭଳି ନବ୍ୟ ଓ ପୁରାତନ ଶିକ୍ଷାନୁଷ୍ଠାନମାନଙ୍କରେ ଦୀର୍ଘ ୩୮ ବର୍ଷ ସେ କଲେ ଅଧ୍ୟାପନା। ଶିକ୍ଷା ପ୍ରଶାସକ ଭାବେ ସେ ପାଇଲେ ସ୍ୱୀକୃତି, ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବେ ତାଙ୍କୁ ନିଯୁକ୍ତି ଦିଆଗଲା ୧୯୯୮ ମସିହା ଅକ୍ଟୋବର ୯ ତାରିଖ ଦିନ। 'ଗଣିତ ଓ ପ୍ରୟୋଗ' ପ୍ରତିଷ୍ଠାନର ସେ ଥିଲେ ପ୍ରତିଷ୍ଠାତା ସଦସ୍ୟ। ୨୦୦୬ରୁ ୨୦୦୯ ପର୍ଯ୍ୟନ୍ତ ସେ ସେହି ଅନୁଷ୍ଠାନର ଚେୟାରମ୍ୟାନ୍ ଥିଲେ। ପାରମ୍ପରିକ ବିଷୟଗୁଡ଼ିକରେ ଶିକ୍ଷାଦାନର ଏଯାବତ୍ ଧାରା ପ୍ରବାହକୁ ଭିନ୍ନ ମୋଡ଼ ଦେବାର ପ୍ରଚେଷ୍ଟା ଆରମ୍ଭ ହେଲା ପ୍ରଫେସର ଦାସଙ୍କ ମାର୍ଗ ଦର୍ଶନରେ। ବହୁ ନୂତନ ବିଷୟରେ ଶିକ୍ଷାଦାନ ବ୍ୟବସ୍ଥା ବିଶ୍ୱବିଦ୍ୟାଳୟ ପରିସର ଭିତରେ ଆରମ୍ଭ ହେଲା। ଉତ୍କଳ ବିଶ୍ୱବିଦ୍ୟାଳୟରେ ଶିକ୍ଷାପ୍ରାପ୍ତିର ସୁଯୋଗ ବ୍ୟାପକ ହେଲା।

ପ୍ରଫେସର ଦାସଙ୍କର ଶିକ୍ଷା ନିଶା କିନ୍ତୁ ଗଣିତରେ ଗବେଷଣା। ଉଚ୍ଚତର ଗବେଷଣା ପାଇଁ ଯାଇଥିଲେ ଲଣ୍ଡନ ବିଶ୍ୱବିଦ୍ୟାଳୟ ଓ ପରିଦର୍ଶକ ପ୍ରଫେସର ଭାବେ ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ ଦ୍ୱାରା ହୋଇଥିଲେ ନିମନ୍ତ୍ରିତ। ତାଙ୍କର ବହୁ ଗବେଷଣାତ୍ମକ ନିବନ୍ଧ ପ୍ରକାଶିତ ହୋଇଛି ବହୁ ଜାତୀୟ, ଆନ୍ତର୍ଜାତୀୟ ଗବେଷଣାତ୍ମକ ପତ୍ରିକାରେ। ବହୁ ଛାତ୍ରଛାତ୍ରୀ ତାଙ୍କ ଅଧୀନରେ ଗବେଷଣା କରି ଉଚ୍ଚତର ଉପାଧି ହାସଲ କରିଛନ୍ତି। ସାମନ୍ତ ଚନ୍ଦ୍ରଶେଖର ପୁରସ୍କାର ଦ୍ୱାରା ଏଥିପାଇଁ ସେ ସମ୍ମାନିତ।

ଓଡ଼ିଶାର ଗଣିତ ଶିକ୍ଷା ଓ ଗବେଷଣାକୁ ବ୍ୟାପକ କରିବା ପାଇଁ ସମର୍ପିତ ପ୍ରଫେସର ଦାସ ପ୍ରାଥମିକ ସ୍ତରରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଗଣିତ ପାଠ୍ୟକ୍ରମକୁ ସୁଗଠିତ କରିବା ପାଇଁ ଅବିରତ ପ୍ରଚେଷ୍ଟାରତ।

ପ୍ରଫେସର ଦାସ ଜଣେ କଳାପ୍ରିୟ ବ୍ୟକ୍ତି। ଗଣିତ ବିଷୟ ନୁହେଁ ବ୍ୟକ୍ତିତ୍ୱ ପ୍ରତିପାଦିତ କରେ। ତାଙ୍କ ଦ୍ୱାରା ରଚିତ ସୁମଧୁର ସଙ୍ଗୀତ 'ଗଣିତ ରାଣୀ' ପ୍ରତ୍ୟେକ ଗଣିତ ସଭାରେ ଏକ ମାଙ୍ଗଳିକ ସଙ୍ଗୀତର ମର୍ଯ୍ୟାଦା ପାଇଛି।

ପୁସ୍ତକ 'ଶୂନ' ତାଙ୍କର ଗାଣିତିକ ସୃଜନଶୀଳତାର ଏକ ପରିପ୍ରକାଶ ହୋଇଥିବା ବେଳେ କବିତା ସଂକଳନ 'ମୋ ଗାଁ, ମୋ ଜହ୍ନ, ମୋ ମନ' ତାଙ୍କର କାବ୍ୟିକ ସୃଜନଶୀଳତାର ଅଭିବ୍ୟକ୍ତି।

ଉଭୟ ଗାଣିତିକ ସୃଜନଶୀଳତା ଓ କାବ୍ୟିକ ସୃଜନଶୀଳତାର ଆଧାର ଯେ ଆଧ୍ୟାତ୍ମିକତା ତାହା ସେ ପ୍ରତିପାଦନ କରିଛନ୍ତି। ତାଙ୍କର ଏହି ଆଧ୍ୟାତ୍ମିକ ପୁସ୍ତକରେ ସଂକଳିତ ଗଳ୍ପ ସମୂହରେ।